# ହାସ୍ୟରସର ନାଟକ

୧୯୮୨ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ

ଶ୍ରୀ ଗୋପାଳ ଛୋଟରାୟ

ଗ୍ରନ୍ଥ ମନ୍ଦିର

ପ୍ରକାଶକ :
ଅଭିରାମ ମହାପାତ୍ର
**ଗ୍ରନ୍ଥ ମନ୍ଦିର**
ବିନୋଦବିହାରୀ, କଟକ-୨
ଶାଖା : ମେନ୍‌ରୋଡ଼, ବ୍ରହ୍ମପୁର

ମୁଦ୍ରକ :
ଜୟରାମ ମହାପାତ୍ର
**ଗ୍ରନ୍ଥ ପ୍ରକାଶିନୀ**
ସୂତାହାଟ, କଟକ

ପ୍ରଥମ ମୁଦ୍ରଣ : ୧୯୮୧
ପୁନର୍ମୁଦ୍ରଣ : ୧୯୮୪

ମୂଲ୍ୟ : ଟ ୨୭.୦୦
ସାଦାବନ୍ଧେଇ : ଟ ୨୪.୦୦

କୁନମୁଅକୁ

ଯିଏ ବଢୁଛ

ସିଶ୍ୟୁସ୍ ବକ୍ଷ ପଡ଼େ—

ବାପା

ଓଡ଼ିଆ ନାଟ୍ୟସାହିତ୍ୟ ଓ ହାସ୍ୟରସର ନାଟକ—
ଏ ଦୁଇ କଥାକୁ ଭିନ୍ନ ଦୃଷ୍ଟିକୋଣରୁ ବିଚାର କରି
ଦେଖିଲେ ଏହା ସ୍ପଷ୍ଟ ପ୍ରତିପାଦିତ ହେବ ଯେ,
ହାସ୍ୟରସର ନାଟକ ରଚନା ଏକ ସୁଖପ୍ରଦ
ପରୀକ୍ଷାଧର୍ମୀ ପ୍ରଚେଷ୍ଟା । 'ହାସ୍ୟରସର ନାଟକ' ଏ
ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇପାରିବାର କିଞ୍ଚିତ ଆଶା
ଏ ଲେଖକର ରହିଛି ।

ଗୋପାଳ ଛୋଟରାୟ

## ଗୋପାଳ ଛୋଟରାୟଙ୍କର ଅନ୍ୟ ରଚନା :

**ନାଟକ :**

ଫେରିଆ
ସାଧନା
ପୂରପୂର ପାରିବାରିକ
ଭରସା
ଦଳବେହେରା
ପରକଲମ
ଅର୍ଦ୍ଧାଙ୍ଗିନୀ
ଅମଡ଼ାବାଟ
ଘଟକ
ଝିଅ ଜନ୍ମ? ଝନ୍‌ଜା
ଶଂଖା ସିନ୍ଦୂର
ମଲ୍ଲଜହ୍ନ
ପଥିକବନ୍ଧୁ
ପ୍ରତୀକ୍ଷା
ନଷ୍ଟହୃଦଶୀ
ଅଷ୍ଟରମ୍ଭାର ସ୍ୱର୍ଗ
ନୂଆବୋଉ
ଶାଖା-ପ୍ରଶାଖା
ପଦ୍ମାଳୟ
ଶ୍ରୀହରିଙ୍କ ସଂସାର
ସହଧର୍ମିଣୀ
ଶତରଞ୍ଜି

**ଗୀତିନାଟ୍ୟ :**

ସଂପୂର୍ଣ୍ଣ ରାମାୟଣ
ଗଣେଶ
ମହିଷମର୍ଦ୍ଦିନୀ
ଜନ୍ମାଷ୍ଟମୀ
ନପାହୁରାତ
ବୋଲେ ହୁଁ ଟି
ଶ୍ରୀମତୀ ସଂମାର୍ଜନୀ
ବିନ୍ଦୁସାଗର
ଶ୍ରୀଜଗନ୍ନାଥ
ଘରବର ଦେଖା
ସୀତା ଲବ କୁଶ



# ସୂଚୀ



□□□

# ବନ-ନାୟିକା

**ଚରିତ୍ର**

ଆନନ୍ଦ : କଲେଜ ଛାତ୍ର
ସୁକାନ୍ତ : କଲେଜ ଛାତ୍ର—ଆନନ୍ଦର ବନ୍ଧୁ
ସଦାଶିବ : ମଧ୍ୟବିତ୍ତ ଗୃହସ୍ଥ—ମଧ୍ୟବୟସ୍କ
ଡାକ୍ତର : ସଦାଶିବଙ୍କ ସମବୟସ୍କ ବନ୍ଧୁ,
ରାଧାମୋହନ : ଆନନ୍ଦର ପିତା
ପାର୍ବତୀ : ସଦାଶିବଙ୍କ ସ୍ତ୍ରୀ
ନିରୁ : ସଦାଶିବଙ୍କ ଝିଅ—କଲେଜ ଛାତ୍ରୀ

ସୁକାନ୍ତ : ନାକ ।

ଆନନ୍ଦ : ନାକ !! ମାନେ—ଏଇ ଦୁଇପୁଡ଼ାବିଶିଷ୍ଟ...

ସୁକାନ୍ତ : ହଁ, ହଁ ନାକ—ନାସିକା—Nose...

ଆନନ୍ଦ : ଓ ! ନାକ । ବୁଝିଲି ।

ସୁକାନ୍ତ : କଣ ବୁଝିଲୁ ?

ଆନନ୍ଦ : ଏ ଭଳି ପ୍ରବନ୍ଧ ନାଁ ଶୁଣି ଯାହା ବୁଝିବାର କଥା ସେଇଆ ବୁଝିଲି ।

ସୁକାନ୍ତ : ମୁଁ ସେଇଥିପାଇଁ କହୁଥିଲି, ଏଥିରେ ହୃଦୟର ଦରକାର । ତୋ'ପରି ହୃଦୟହୀନ ଲୋକ...

ଆନନ୍ଦ : ଟିକିଏ ଶୁଣ ସୁକାନ୍ତ ! ନାକ ସହିତ ମଥାର ସମ୍ପର୍କ ରହିପାରେ; କିନ୍ତୁ ନାକ ସହିତ ହୃଦୟର ଯେ କି ସମ୍ପର୍କ—

ସୁକାନ୍ତ : ଯୁଗ ଯୁଗ ଧରି ସମସ୍ତ ମାନବଜାତି ନାକ ପ୍ରତି ଯେଉଁ ଅବହେଳା ଦେଖାଇ ଆସିଛି, ସେ କଥା ତୋପରି ହୃଦୟହୀନ ଲୋକ ବୁଝିବ କେମିତି ?

ଆନନ୍ଦ : (ଟିକିଏ ଚିନ୍ତିତ ହେଲାଭଳି) ନାକ...ପ୍ରତି...ଅବହେଳା ! ଓହୋ, ବୁଝିଲି, ବୁଝିଲି । ଏହାହିଁ ତେବେ ତୋ ପ୍ରବନ୍ଧର ମୂଳକଥା ?

ସୁକାନ୍ତ : ହଁ ।

ଆନନ୍ଦ : ଧତେ ସୁକାନ୍ତ, ମୁଁ...ମୁଁ ଯେମିତି କିଛି କଳ୍ପନା କରିପାରୁନଥିଲି ।

ସୁକାନ୍ତ : ସେଇଥିପାଇଁ କହୁଛି, ବିଦାୟ ନେ ।

ଆନନ୍ଦ : ବିଦାୟ ନେବି ? ନା ଭାଇ, ଏମିତି ଏକ ନୂତନ ପରିକଳ୍ପନାର ସୂଚନା ନପାଇ ମୋର ତ ଯିବାକୁ ଇଚ୍ଛା ହେଉନି ।...ଟିକିଏ ଆଲୋଚନା କର; ହୁଏତ ମୁଁ କିଛି ସାହାଯ୍ୟ କରିପାରେ ।

ସୁକାନ୍ତ : ଆଲୋଚନା ପାଇଁ ବେଳ ନାହିଁ । କାଲି ଭିତରେ ପ୍ରବନ୍ଧଟି ସମ୍ପାଦକଙ୍କ ନିକଟ ନ ପହଞ୍ଚିଲେ ଏ ସଂଖ୍ୟା କାଗଜରେ ଛପା ହୋଇ ପାରିବ ନାହିଁ ।

ଆନନ୍ଦ : ତୁ ବୁଝିପାରୁନୁ । ଆଗେ ବିଶଦ ଭାବରେ ଆଲୋଚନା ହୋଇଗଲେ ଲେଖିବା ପାଇଁ ଖୁବ୍ କମ୍ ସମୟ ଲାଗିବ ।...କହ, କୋଉଠୁ ଆରମ୍ଭ କରିବୁ ?

ସୁକାନ୍ତ : କବି ଓ କବିତାରୁ ଆରମ୍ଭ । ସେଇ ଭଞ୍ଜଙ୍କ ଯୁଗରୁ ଧରାଯାଉ । ନୀଳୋତ୍ପଳ ନୟନ, କୁନ୍ଦ ଦନ୍ତ, ବିମ୍ବୋଷ୍ଠ, ରକ୍ତଜବା ଅଧର, ନୀଳ-ଭୁଜଙ୍ଗ-ଭ୍ରୂ... ମୁଖମଣ୍ଡଳର ଏଇସବୁ ଅଂଶୀଦାରମାନଙ୍କ ପାଇଁ ଉପମା ପ୍ରୟୋଗରେ କବିମାନେ ଶତମୁଖ ହୋଇଉଠିଛନ୍ତି । କିନ୍ତୁ ସେଇ ମୁଖମଣ୍ଡଳର ଆଉ ଏକ ଅଂଶୀଦାର ନାକ—ଯାହାକୁ ବାଦ୍ ଦେଲେ ମୁଖମଣ୍ଡଳର କଳ୍ପନା ପୂରା କରିହେବନାହିଁ । ସେଇ ନାକ ପାଇଁ କବିମାନଙ୍କର ଉପମା କଣ ଜାଣୁ ?

ଆନନ୍ଦ : ଜାଣେ । ଖଣ୍ଡା...ଖଣ୍ଡାଧାର ପରି ନାକ ।

ସୁକାନ୍ତ : ନାକ ।

ଆନନ୍ଦ : ନାକ !! ମାନେ—ଏଇ ଦୁଇପୁଡ଼ାବିଶିଷ୍ଟ...

ସୁକାନ୍ତ : ହଁ, ହଁ ନାକ—ନାସିକା—Nose...

ଆନନ୍ଦ : ଓ ! ନାକ । ବୁଝିଲି ।

ସୁକାନ୍ତ : କଣ ବୁଝିଲୁ ?

ଆନନ୍ଦ : ଏ ଭଳି ପ୍ରବନ୍ଧ ନାଁ ଶୁଣି ଯାହା ବୁଝିବାର କଥା ସେଇଆ ବୁଝିଲି ।

ସୁକାନ୍ତ : ମୁଁ ସେଇଥିପାଇଁ କହୁଥିଲି, ଏଥିରେ ହୃଦୟର ଦରକାର । ତୋ'ପରି ହୃଦୟହୀନ ଲୋକ...

ଆନନ୍ଦ : ଟିକିଏ ଶୁଣ ସୁକାନ୍ତ ! ନାକ ସହିତ ମଥାର ସମ୍ପର୍କ ରହିପାରେ; କିନ୍ତୁ ନାକ ସହିତ ହୃଦୟର ଯେ କି ସମ୍ପର୍କ—

ସୁକାନ୍ତ : ଯୁଗ ଯୁଗ ଧରି ସମସ୍ତ ମାନବଜାତି ନାକ ପ୍ରତି ଯେଉଁ ଅବହେଳା ଦେଖାଇ ଆସିଛି, ସେ କଥା ତୋପରି ହୃଦୟହୀନ ଲୋକ ବୁଝିବ କେମିତି ?

ଆନନ୍ଦ : (ଟିକିଏ ଚମକିତ ହେଲଭଳି) ନାକ...ପ୍ରତି...ଅବହେଳା ! ଓହୋ, ବୁଝିଲି, ବୁଝିଲି । ଏହାହିଁ ତେବେ ତୋ ପ୍ରବନ୍ଧର ମୂଳକଥା ?

ସୁକାନ୍ତ : ହଁ ।

ଆନନ୍ଦ : ସତେ ସୁକାନ୍ତ, ମୁଁ...ମୁଁ ଯେମିତି କିଛି କଳ୍ପନା କରିପାରୁନଥିଲି ।

ସୁକାନ୍ତ : ସେଇଥିପାଇଁ କହୁଚି, ବିଦାୟ ନେ ।

ଆନନ୍ଦ : ବିଦାୟ ନେବି ? ନା ଭାଇ, ଏମିତି ଏକ ନୂତନ ପରିକଳ୍ପନାର ସୂଚନା ନପାଇ ମୋର ତ ଯିବାକୁ ଇଚ୍ଛା ହେଉନି ।...ଟିକିଏ ଆଲୋଚନା କର; ହୁଏତ ମୁଁ କିଛି ସାହାଯ୍ୟ କରିପାରେ ।

ସୁକାନ୍ତ : ଆଲୋଚନା ପାଇଁ ବେଳ ନାହିଁ । କାଲି ଭିତରେ ପ୍ରବନ୍ଧଟି ସମ୍ପାଦକଙ୍କ ନିକଟ ନ ପହଞ୍ଚିଲେ ଏ ସଂଖ୍ୟା କାଗଜରେ ଛପା ହୋଇ ପାରିବ ନାହିଁ ।

ଆନନ୍ଦ : ତୁ ବୁଝିପାରୁନୁ । ଆଗେ ବିଶଦ ଭାବରେ ଆଲୋଚନା ହୋଇଗଲେ ଲେଖିବା ପାଇଁ ଖୁବ୍ କମ୍ ସମୟ ଲାଗିବ ।...କହ, କୋଉଠୁ ଆରମ୍ଭ କରିବୁ ?

ସୁକାନ୍ତ : କବି ଓ କବିତାରୁ ଆରମ୍ଭ । ସେଇ ଭଞ୍ଜଙ୍କ ଯୁଗରୁ ଧରାଯାଉ । ନୀଳୋତ୍ପଳ ନୟନ, କୁନ୍ଦ ଦନ୍ତ, ବିମ୍ବୋଷ୍ଠ, ରକ୍ତଜବା ଅଧର, ନୀଳ-ଭୁଜଙ୍ଗ-ଭ୍ରୂଲୁ... ମୁଖମଣ୍ଡଳର ଏଇସବୁ ଅଂଶୀଦାରମାନଙ୍କ ପାଇଁ ଉପମା ପ୍ରୟୋଗରେ କବିମାନେ ଶତମୁଖ ହୋଇଉଠିଚନ୍ତି । କିନ୍ତୁ ସେଇ ମୁଖମଣ୍ଡଳର ଆଉ ଏକ ଅଂଶୀଦାର ନାକ—ଯାହାକୁ ବାଦ୍ ଦେଲେ ମୁଖମଣ୍ଡଳର କଳ୍ପନା ସୁଦ୍ଧା କରିହେବନାହିଁ । ସେଇ ନାକ ପାଇଁ କବିମାନଙ୍କର ଉପମା କଣ ଜାଣୁ ?

ଆନନ୍ଦ : ଜାଣେ । ଖଣ୍ଡା...ଖଣ୍ଡାଧାର ପରି ନାକ ।

ସୁକାନ୍ତ : କି କଦର୍ଯ୍ୟ କୁତ୍ସିତ ଉପମା କହିଲୁ ? ଏ କବିମାନଙ୍କର ବିସ୍ମର-ଶକ୍ତି କଣ ଲୋପପାଇଥିଲା ?

ଆନନ୍ଦ : ଆଶ୍ଚର୍ଯ୍ୟ ସୁକାନ୍ତ ! କି ଗମ୍ଭୀର ତୋର ଚିନ୍ତାଧାରା !

ସୁକାନ୍ତ : ଏମାନଙ୍କ କଥା ଥାଉ, ମହର୍ଷି ବାଲ୍ମୀକି ମଧ୍ୟ ନାକ ପ୍ରତି ଅବିଚାର କରିବାକୁ ଭୁଲିନାହାନ୍ତି ।
( ବେଳକୁ ବେଳ ଆନନ୍ଦ ଅଧିକରୁ ଅଧିକ ଆମୋଦ ଅନୁଭବ କରୁଥାଏ । )

ଆନନ୍ଦ : ସତେ ତ ! ରାମାୟଣରେ ନାକର ସ୍ଥାନ କଥା ବିଚାରି କଲାବେଳକୁ ଆମ ଆଖି ଆଗରେ ଆସି ଠିଆ ହୁଏ ଶ୍ରୀମତୀ ସୂର୍ପଣଖା—ଗୋଟାଏ ଅସୁରୁଣୀ । ତା' ପ୍ରେମର ପ୍ରତିଦାନ ଦେବାକୁ ଯାଇ ରଘୁପତି ରାମଚନ୍ଦ୍ର ନାକଟାକୁ କଟାଇଦେଲେ । —ଆହା—ହା…

ସୁକାନ୍ତ : ସେଇ କଥା ମୁଁ ବୁଝିପାରୁନି ଆନନ୍ଦ—ଏଥିରେ ସୂର୍ପଣଖାର ନାକ କି ଦୋଷ କରିଥିଲା ? ସେ ହୁଏତ ତା' ଭ୍ରୂଲତା ନଚାଇ—କଟାକ୍ଷ ହାଣି—ଦାନ୍ତରେ ଅଧର ଦଂଶନ କରି କମ୍ପିତ ସ୍ଫୁରିତ ଅଧର ଓ କୁନ୍ଦଦନ୍ତ ବିକଶିତ କରି ରାମଚନ୍ଦ୍ରଙ୍କୁ ତା'ର ପ୍ରେମ ନିବେଦନ କରିଥିବ । ଏଥିରେ ନାକର ଦୋଷ ରହିଲା କୋଉଠି ?

ଆନନ୍ଦ : ସତେ ସୁକାନ୍ତ; ବିଚରା ନିରୀହ ନିରପରାଧ ନାକ, ସୂର୍ପଣଖାର ପ୍ରେମ-ବ୍ୟାପାରରେ ସେ ନିର୍ଜୀବ ସ୍ଥାଣୁ ପରି ବସିରହିଥିବ । ଅଥଚ ରାମଚନ୍ଦ୍ର ତା' ନାକଟାକୁ କଟାଇ-ଦେଲେ !

ସୁକାନ୍ତ : ଏହା ସତ୍ତ୍ୱେ ଆଜି ରାମଚନ୍ଦ୍ରଙ୍କୁ ଆଦର୍ଶ ଶାସକ ବୋଲି ସମ୍ମାନ ଦିଆଯାଉଚି !

ଆନନ୍ଦ : ହାୟ୍ ହାୟ୍ ସୁକାନ୍ତ ! ତୋ' ଚିନ୍ତାଧାରା କି ମୌଳିକ—କି ସମ୍ବେଦନମୟ ! —ହଁ, ଆରବ୍ୟ ଉପନ୍ୟାସର ସେ ନାକ କଥା ତୋର ମନେଅଛି ? ଲୋକଟାର ସମସ୍ତ ଅଙ୍ଗ ଆଉ ଅବୟବ ଥାଉ ଥାଉ ହଠାତ୍ ମାଇଲ୍ ମାଇଲ୍ ଧରି ତା ନାକଟା ହିଁ ବଢ଼ିଚାଲିଲା !

ସୁକାନ୍ତ : ଓଃ ! ସେ ନାକ କଥା ଭାବିଲାବେଳକୁ ମୋ ଦେହ ଶୀତେଇ ଉଠୁଚି ।

ଆନନ୍ଦ : ବାସ୍ତବିକ ! ଏପରି ଗୋଟାଏ ଅସଭ୍ୟ ନାକର କଳ୍ପନା କଲେ ଏ ଯୁଗର ଗୋଟାଏ ସରଳ ପ୍ରାଣା ତରୁଣୀ ହୁଏତ ଆତଙ୍କରେ ମୂର୍ଚ୍ଛାଯିବ ।

ସୁକାନ୍ତ : ଏଇ ଆଧୁନିକା ନାରୀମାନେ ତ କିଛି କମ୍ ନୁହନ୍ତି । କି ଅବହେଳିତ ଅବସ୍ଥାରେ ସେମାନେ ନାକକୁ ରଖିଛନ୍ତି କହିଲୁ ? ଓଠ ପାଇଁ ସେମାନଙ୍କର ଦରକାର ଲିପ୍‌ଷ୍ଟିକ୍, ଦାନ୍ତ ପାଇଁ ଟୁଥ୍‌ପେଷ୍ଟ—ଗାଲ ପାଇଁ ରୁଜ୍—ଆଖି ପାଇଁ ଅଞ୍ଜନ—କପାଳ ପାଇଁ

କୁଙ୍କୁମ । କିନ୍ତୁ ନାକ ପାଇଁ ? ନାକ ପାଇଁ କଣ ଜାଣୁ—ଗୋଟାଏ ଖିବ୍ର କଡ଼ାଗନ୍ଧଯୁକ୍ତ ଶ୍ୱାସାସ୍ୱନକ ଦ୍ରବ୍ୟ—ସ୍ମେଲିଂ ସଲ୍ଟ୍ !

ଆନନ୍ଦ : ଧନ୍ୟ ସୁକାନ୍ତ, ଧନ୍ୟ ତୋର ଆବିଷ୍କାର !

ସୁକାନ୍ତ : ହାସ୍ୟରେ ନାକ, ପୁରୁଷ ମଧ୍ୟ ତୋ' ପାଇଁ ବିରୂପ । ନାସିମୁଖ ଚୁମ୍ବନ ବ୍ୟାପାରରେ ସେ ନାକଟାକୁ ଏକାବେଳକେ ବାଦ୍ ଦେଇଦେଇଛ ।

ଆନନ୍ଦ : ସାଧୁ ସାଧୁ ସୁକାନ୍ତ ! ନାକ ପାଇଁ ତୋର ଏ ଦର୍ଶନବୋଧ···

ସୁକାନ୍ତ : ଖାଲି ଦର୍ଶନ-ବୋଧରେ ମୁଁ ତୃପ୍ତ ନୁହେଁ ଆନନ୍ଦ ! ନାକ ଉପରେ ପୁରୁଷ ଓ ନାରୀର ମିଳିତ ଅତ୍ୟାଚାରର କବଳରୁ ମୁଁ ତାକୁ ଉଦ୍ଧାର କରିବି । ଏ ଦିଗରେ ମୋର ପ୍ରଥମ ପଦକ୍ଷେପ କଣ ଜାଣୁ ?

ଆନନ୍ଦ : କଣ ?

ସୁକାନ୍ତ : ନାକ ପାଇଁ ଏକ ସୁନ୍ଦର ଓ ଲୋଭନୀୟ ଉପମାର ଆବିଷ୍କାର ।

ଆନନ୍ଦ : କରିଚୁ ?

ସୁକାନ୍ତ : ନା, କରିଛି । କବି ଓ କାବ୍ୟର ଚିରଉପେକ୍ଷିତ ନାକ ପାଇଁ ମୁଁ ଏକ ସମ୍ମାନିତ ଆସନ ସୃଷ୍ଟି କରିଛି । ମୋ ସୃଷ୍ଟିରେ ନାକର ଉପମା ଯେମିତି ଅଭିନବ—ସେମିତି ଅଭାବନୀୟ ।

ଆନନ୍ଦ : ଯଥା ?

ସୁକାନ୍ତ : "ବନ-ନାସିକା" ।

ଆନନ୍ଦ : ବନ-ନାସିକା ! ଆହା-ହା ! ଚମତ୍କାର ! ଉପମା-ରାଜ୍ୟରେ ସାମ୍ରାଜ୍ଞୀ ହେବାର ଯୋଗ୍ୟ । ଶବ୍ଦଯୋଜନାରେ ବିଶେଷତ୍ୱ ଅଛି । ସରଳ ଅଥଚ ସୁନ୍ଦର । ବନ-ନାସିକା ! ବହୁବ୍ରୀହି ସମାସ—ଅର୍ଥାତ୍ ବନପରି ନାସିକା ଯାହାର, ସେ··· (ଟିକିଏ ରହିଯାଇ) ଏଁ, ଏ କଣ ହେଲା ! ବନପରି ନାସିକା—ଅର୍ଥାତ୍ ଜଙ୍ଗଲ ପରି । ପ୍ରଥମରୁ ତ ଏ କଥାଟାକୁ ମୁଁ ଠିକ୍ ଧରିପାରି ନ ଥିଲି ।

ସୁକାନ୍ତ : ଆଃ, ତୁ କି ଭୁଲ୍ କରୁଛୁ ଆନନ୍ଦ ! ପ୍ରତ୍ୟେକ କଥାକୁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଦେଇ ବିଚାର କଲେ ତ ଚଳିବ ନାହିଁ । ଅବଶ୍ୟ ଏଇଟା ବହୁବ୍ରୀହି ସମାସ; କିନ୍ତୁ ଏଥିରେ ଟିକେ ସୂକ୍ଷ୍ମ ପ୍ରୟୋଗ ରହିଛି ।

ଆନନ୍ଦ : ସମାସ-ବ୍ୟାଖ୍ୟା କର୍ ।

ସୁକାନ୍ତ : ବନବାଲାଙ୍କ ନାସିକା ପରି ନାସିକା ଯାହାର, ସେ ହେଉଛନ୍ତି "ବନନାସିକା" । ···ଉପମିତ ବହୁବ୍ରୀହି ।

ଆନନ୍ଦ : କିନ୍ତୁ କିଏ ତୋର ଏଇ ବନବାଲା ?

ସୁକାନ୍ତ : ଏ ଦେଶର ବିଖ୍ୟାତ ଚିତ୍ରାଭିନେତ୍ରୀ—ଫିଲ୍ମଷ୍ଟାର୍ । ତାଙ୍କ ନାକଟା ହିଁ ତାଙ୍କ ସୌନ୍ଦର୍ଯ୍ୟର ସବୁଠୁ ବଡ଼ ଉପାଦାନ । ହଲିଉଡ୍‌ରେ ଜନ୍ମ ହୋଇଥିଲେ ତାଙ୍କ

ନାକ ବନ୍ଧ ମୂଲ୍ୟରେ insured ହୋଇପାରିଥାନ୍ତା । ସେଇଥିପାଇଁ ମୁଁ ଫୁଲ, ଗନ୍ଧ, ମେଘ, ବିଜୁଳି ପ୍ରଭୃତି ଜଡ଼ ପଦାର୍ଥମାନଙ୍କୁ ବାଦ୍ ଦେଇ ଏଇ ଜୀବନ୍ତ ନାରୀ-ଅଙ୍ଗରୁ ମୋର ଉପମା ସଂଗ୍ରହ କରିଚି ।

ଆନନ୍ଦ : ତା'ହେଲେ ଏଣିକି କବିମାନେ କବିତା ଲେଖିଲାବେଳେ ଏଣୀନୟନା, ଚନ୍ଦ୍ର-ବଦନା ପରି ଲେଖିବେ—"ବନନାସିକା ରୁ ନାସିକା ଫୁଲାଇ, ରୋଷଭରେ ଆଉ ବସନାରେ ।"

ସୁକାନ୍ତ : ଖାଲି କବିମାନେ କାହିଁକି—ଝିଅମାନେ ମଧ୍ୟ କମଳାକାନ୍ତ କିମ୍ବା କନକପ୍ରଭା ପରି ସେମାନଙ୍କର ନାମ ରଖିବେ—ବନନାସିକା । ଏଣୁ ଧର, ବନନାସିକା ମହାପାତ୍ର ଆଉ ଅବିବାହିତ ପୁରୁଷମାନେ ଖବରକାଗଜରେ 'ପାତ୍ରୀ ଦରକାର' ବିଜ୍ଞାପନ ଦେଲାବେଳେ ବନନାସିକାର ସୁଯୋଗ ନେଇପାରିବେ ।

ଆନନ୍ଦ : ଯୁଗ ଯୁଗ ଧରି ଅବହେଳିତ ଏଇ ନାସିକା ସମସ୍ୟାର ତୁ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିଛୁ ସୁକାନ୍ତ ! ଏ ଜାତି ତୋର ଏ ଋଣ ଏ ଜନ୍ମରେ ଶୋଧ କରିପାରିବ ନାହିଁ ।

ସୁକାନ୍ତ : ବର୍ତ୍ତମାନ ତା'ହେଲେ ପ୍ରବନ୍ଧଟା ଲେଖାଯାଉ ।

ଆନନ୍ଦ : ପ୍ରବନ୍ଧ ତ ଲେଖାହେବ, ତା' ପୂର୍ବରୁ 'ପାତ୍ରୀ ଦରକାର' ବିଜ୍ଞାପନଟା ଲେଖାଯାଉ ।

ସୁକାନ୍ତ : ବିଜ୍ଞାପନ ? କାହା ପାଇଁ ?

ଆନନ୍ଦ : ତୁ ନିଜେ ତ ଏପର୍ଯ୍ୟନ୍ତ ବିବାହ କରିନୁ । ତେଣେ ତୋ ବାପା ତୋ ପାଇଁ କନ୍ୟା ଖୋଜିବାରେ ବ୍ୟସ୍ତ ।

ସୁକାନ୍ତ : କିନ୍ତୁ ମୁଁ ତ ଏତେ ଚଞ୍ଚଳ ବିବାହ କରିପାରିବ ନାହିଁ ।

ଆନନ୍ଦ : ବୁଝିଲି । ଆଗେ ତୋ ପାଇଁ ଏକ ବନନାସିକା କନ୍ୟା ଖୋଜି ବାହାର କରିବାକୁ ହବ—ତା' ନହେଲେ ତୋ'ର ଆଦର୍ଶ ରହିବନାହିଁ—ଏଇଆ ନା ?

ସୁକାନ୍ତ : (ରହି ରହି) ହଁ...

ଆନନ୍ଦ : ସେଇଥିପାଇଁ ମୁଁ କହୁଚି, ଆଜ ବିଜ୍ଞାପନଟା ଦେଇ ଦେ' । ଏକ ସାଥିରେ ଦୁଇଟି କାମ ହେବ । ତୁ ବନନାସିକା କନ୍ୟା ପାଇବୁ—ଆଉ ସେଇ ସାଙ୍ଗେ ସାଙ୍ଗେ ତୋ ଆଦର୍ଶର ପ୍ରଚାର ମଧ୍ୟ ହେବ ।

ସୁକାନ୍ତ : କିନ୍ତୁ...

ଆନନ୍ଦ : ଆଉ 'କିନ୍ତୁ'ର ବେଳ ନାହିଁ । ତେଣେ ତୋ ବାପା ଯଦି ତୋ' ପାଇଁ କୋଉଠୁ ଏକ ବେ-ନାସିକା କିମ୍ବା ଗୋନାସିକା କନ୍ୟା ଖୋଜି ଆଣନ୍ତି, ତା'ହେଲେ ତୋ'ର ଏ ଆଦର୍ଶ ଓ ଉପମାକୁ ତୁ ଏ ଜୀବନରେ ଖୋଜି ପାଇବୁନାହିଁ । ଖଣ୍ଡେ କାଗଜ ଦେଲୁ, ମୁଁ ଲେଖେଁ ।...ହୁଁ, (ଲେଖିଲା) ପାତ୍ରୀ ଦରକାର । ଧନୀ ପରିବାରର ଶିକ୍ଷିତ ଓ ସୁନ୍ଦର ପାତ୍ର ପାଇଁ ସମ୍ଭ୍ରାନ୍ତ କୁଳର ଗୋଟିଏ ସୁନ୍ଦରୀ,

ଶିକ୍ଷିତା ଓ ସ୍ୱାସ୍ଥ୍ୟବତୀ ପାତ୍ରୀ ଦରକାର । ଅନ୍ୟାନ୍ୟ ସଦ୍‌ଗୁଣ ସହିତ ପାତ୍ରୀଟି 'ବନନାସିକା' ହେବା ଏକାନ୍ତ ପ୍ରୟୋଜନ । ଫଟୋ ସହିତ ଶୀଘ୍ର ଆବେଦନ କରନ୍ତୁ । ...ବିଶେଷ ଦ୍ରଷ୍ଟବ୍ୟ...(ଲେଖି ଚାଲିଥାଏ)

ସୁକାନ୍ତ : ବିଶେଷ ଦ୍ରଷ୍ଟବ୍ୟ ପୁଣି କଣ ?

ଆନନ୍ଦ : ମୋ'ପରି ଯଦି ବନନାସିକାର କେହି ଭୁଲ ଅର୍ଥ ବାହାର କରି ବସେ—ସେଇଥି-ପାଇଁ ବିଶେଷ ଦ୍ରଷ୍ଟବ୍ୟରେ ବନ-ନାସିକାର ସମାସ-ବ୍ୟାଖ୍ୟା କରି ଦେଇଚି ।...ହଁ, ଏ ବିଜ୍ଞାପନଟା ମୁଁ ଆଜି କାଗଜକୁ ପଠାଇଦେଉଚି । ତୋ' ବାପାଙ୍କ ନିକଟକୁ ତୁ ଖଣ୍ଡେ ଚିଠି ଲେଖିଦେ ଯେ ତୋ'ର ମନୋମତ ପାତ୍ରୀକୁ ହିଁ ତୁ ବିବାହ କରିବୁ । ଅଚ୍ଛା, ବର୍ତ୍ତମାନ ତୁ ପ୍ରବନ୍ଧ ଲେଖା ଆରମ୍ଭ କର । ମୁଁ ଚାଲିଲି ।

( ଆନନ୍ଦର ପ୍ରସ୍ଥାନ )

[ ସଦାଶିବ ବାବୁଙ୍କ କଟକ ସହରସ୍ଥ ବାସଗୃହର ଗୋଟିଏ କୋଠରି । ସମୟ—ଅପରାହ୍ଣ । ମଧ୍ୟବୟସ୍କ ସଦାଶିବବାବୁ ଗୋଟିଏ ଆରାମଚୌକିରେ ବସି ଗୋଟିଏ ମାସିକ ପତ୍ର ପଢ଼ୁଚନ୍ତି । ତାଙ୍କ ସ୍ତ୍ରୀ ପାର୍ବତୀ ଦେବୀ ଆସିଲେ । ]

ପାର୍ବତୀ : ନାକରେ ତେଲ ପକେଇ କଣ ଏମିତି ଶୋଇଥିବ ?

ସଦାଶିବ : ( ପତ୍ରିକା ବନ୍ଦ କରି ସ୍ତ୍ରୀଙ୍କ ମୁହଁକୁ ଚାହିଁ) ଆଶ୍ଚର୍ଯ୍ୟ ! Co-incidence !

ପାର୍ବତୀ : କଣ ଏମିତି କହୁଚ ମ ?

ସଦାଶିବ : ସ୍ୱାକୁଇ କହନ୍ତି Co-incidence ! ତା' ନହେଲେ ମୋ ମନରେ ଖେଳୁ-ଥିବା କଥାଟା ତମ ମନରେ ଆଲୋଡ଼ନ ଆଣନ୍ତା କାହିଁକି ?

ପାର୍ବତୀ : ତମ ନାକ ଆଗରେ ଗୋଟାଏ ବରୁଣ ଉଠିଚି ।

ସଦାଶିବ : ବରୁଣ ? ହଁ, ଉଠିଚି ତ !

ପାର୍ବତୀ : ( ଦୀର୍ଘଶ୍ୱାସ ସହ ) ଶେଷକୁ ଏ ନାକ ପୁଣି ଆମର ଏମିତି କାଳ ହେଲା ?

ସଦାଶିବ : ଏଁ ! ନାକ ଆମର କାଳ ହେଲା ? କଣ କହୁଚ ତମେ ? ଏଇ ପତ୍ରିକାରେ ନାକ ସମ୍ବନ୍ଧରେ ଗୋଟାଏ ପ୍ରବନ୍ଧ ବାହାରିଚି । ପଢ଼ୁ ପଢ଼ୁ ବିଚରା ନାକ ପ୍ରତି ମୋ' ପ୍ରାଣରେ ଦରଦ ଉଛୁଳି ଉଠୁଥିଲା; ଅଥଚ ମୋରି ନାକ ଉପରେ ବରୁଣ ଉଠିଲା ।

ପାର୍ବତୀ : ଓଃ, ତମ ନାକ କଥା ପଚାରୁନାହିଁ ମ !

ସଦାଶିବ : ଆଉ କାହା ନାକ ?

ପାର୍ବତୀ : ଅଛା, ବନବାଳା କିଏ ?

ସଦାଶିବ : ବଡ଼ମୁସ୍କିଲ ! କିଓ, ବନବାଳାଙ୍କଠାରେ ତୁମର ଦରକାର କଣ ?

ପାର୍ବତୀ : ଦରକାର ଅଛି । ତମେ କୁହ, ସେ କିଏ ?

ସଦାଶିବ : ସେ ଜଣେ ସିନେମା ଅଭିନେତ୍ରୀ । କଲିକତାରେ ଥା'ନ୍ତି ।

ପାର୍ବତୀ : ତାଙ୍କୁ କିଏ କେମିତି ଦେଖନ୍ତି ।

ସଦାଶିବ : କହୁଚି ପରା ସେ କଲିକତାରେ ଥାନ୍ତି ।

ପାର୍ବତୀ : ମନ, ଲଙ୍କାରେ ଥିଲେ ଲୋକ ଲୋକଙ୍କୁ ଦେଖୁଚ, କଲିକତା କଣ ବଡ଼ କଥା !

ସଦାଶିବ : କି ମୂର୍ଖଲି ! ତାଙ୍କ ଫଟୋ ଦେଖିଲେ ଚଳିବ ?

ପାର୍ବତୀ : ଫଟୋ···କାହିଁ ?

ସଦାଶିବ : ଏଇ, ଏଇ ପତ୍ରିକାରେ ତ ବାହାରିଚି । (ପତ୍ରିକା ପୃଷ୍ଠା ଓଲଟାଇ) ଏଇ ଦେଖ—ଶ୍ରୀମତୀ ବନବାଳା । କଣ ଦେଖୁଚ ?

ପାର୍ବତୀ : ନାକ ।

ସଦାଶିବ : ନାକ ! ! ସତେତ—ସମସ୍ତେ ଛବିଟାରେ ଶ୍ରୀମତୀଙ୍କର ନାକଟା ହିଁ ଦେଖିବାର କଥା ।

ପାର୍ବତୀ : ଉଃ !! ଦେଖିବାର କଥା ! ମନ ହଉଚି ପୋଡ଼ାମୁହିଁର ନାକଟାକୁ କାଟି ସୂର୍ପଣଖା କରି ଛାଡ଼ିଦିଅନ୍ତି ।

ସଦାଶିବ : କଥା କଣ ? ନାକ ପ୍ରତି ମୋର ସରାଗ ଅଛି ତମର ବିରାଗ ? ଆମ ଦୁହିଁଙ୍କର ଆଜି ହୋଇଚି କଣ କହିଲ—ମୁଁ କିଛି ବୁଝିପାରୁନାହିଁ ।

ପାର୍ବତୀ : (ଚିଠି ଖଣ୍ଡେ ଦେଇ) ଏଇ ଚିଠି ପଢ଼, ସବୁ ବୁଝିପାରିବ ।

ସଦାଶିବ : ଚିଠି ? କିଏ ଦେଇଚି ?

ପାର୍ବତୀ : ଶ୍ରୀରାମଚରଣ । ତମ ଝିଅ ବାହାଘର ପାଇଁ ଯିଏ ଭଲ୍ଲୋକ ହୋଇଚି । ପଢ଼ ।

ସଦାଶିବ : (ପଢ଼ିଲେ) ଓଁ, ମା' କାଳୀ—ବାଲେଶ୍ୱର—ମାନନୀୟ ସଦାଶିବବାବୁ, ଜାଣିବେ । ଆପଣଙ୍କ ଝିଅ ନିରୁପମା ପାଇଁ ଗୋଟିଏ ଭଲ ବରପାତ୍ରର ସନ୍ଧାନ ମିଳିଥିଲା; କିନ୍ତୁ ପାତ୍ରଟି କହିଲା ଯେ, ଯିଏ ବନବାଳାଙ୍କ ନାକପରି ନାକ ଥିବା ଝିଅକୁ ବିବାହ କରିବ । ତେଣୁ ଏଠି ସମ୍ବନ୍ଧ ଭାଙ୍ଗିଗଲା । ଅନ୍ୟପାତ୍ର ଦେଖୁଚି । ଇତି । ଆପଣଙ୍କର ଶ୍ରୀରାମଚରଣ ।

ପାର୍ବତୀ : ବୁଝିଲ ?

ସଦାଶିବ : ବୁଝିଲି । ନିରୁର ନାକ ଟିକିଏ ଚେପ୍‌ଟା ।

ପାର୍ବତୀ : ସେଇଥିପାଇଁ ମୁଁ କହୁଥିଲି, ଏ ନାକ ପୁଣି ଏମିତି କାଳ ହେଲା ?

ସଦାଶିବ : ଏଇ ସାମାନ୍ୟ କଥାକୁ ଏମିତି ଦୁଃଖ ! ଏମିତି ସହଜରେ ଆଖିରେ ଧରା ପଡ଼ିଲା ଭଳିକି ଚେପ୍‌ଟା ନାକ ନିରୁର ନୁହେଁ ।

ପାର୍ବତୀ : ନାହିଁ ନାହିଁ, ସେ ସବୁ ମନରଖା କଥା ନୁହେଁ । ତମେ ଆଜଠୁ କିଛି ଗୋଟାଏ ଉପାୟ କର ।

ସଦାଶିବ : ଉପାୟ ଆଉ କଣ କରିବ ? ନାକ ଉପରେ ଆଉ ଗୋଟିଏ ନାକ ଆଣି ଯୋଡ଼ିବ ?

ପାର୍ବତୀ : ମନ୍ଦ, ତମେ ନିଜେ ଯାଇକି ବରପାତ୍ର ଖୋଜିବ ।

ସଦାଶିବ : ଆଚ୍ଛା, ମୁଁ ନିଜେ ଖୋଜିବି । ହେଲେ ଏତେ ବ୍ୟସ୍ତ କାହିଁକି ?

ପାର୍ବତୀ : ତମେ ମୋଟେ ବୁଝିପାରୁନ । ଏମିତି ଦେଖୁ ଦେଖୁ ଝିଅ ମୋର ଶେଷକୁ ବାସନ୍ଦ ହୋଇ ରହିବ । ତମେ ଆଉ ହେଳା କରନା । ଖାଲି ଭଦ୍ରଲୋକ ମୁହଁକୁ ଅନାଇଁ ବସିଲେ ଚଳିବନାହିଁ ।

ସଦାଶିବ : କିନ୍ତୁ ମୋ' ନିଜଦ୍ୱାରା କଣ କିଛି ହେଲେ ହୋଇପାରିବ ? ମୁଁ ଯାଏ...

ପାର୍ବତୀ : କୋଉଠିକି ?

ସଦାଶିବ : ଆଉ କୋଉଠିକି ? ମୋର ବନ୍ଧୁ, ଉପଦେଷ୍ଟା ଆଉ ପଥପ୍ରଦର୍ଶକ ଡାକ୍ତର ଜଗନ୍ନାଥଙ୍କ ପାଖକୁ । ସେଇ ଏକମାତ୍ର ଭରସା ।

( ଠିକ୍ ଏତିକିବେଳେ ଡାକ୍ତରଙ୍କ ସ୍ୱର ବାହାରୁ ଶୁଣାଗଲା । )

ଡାକ୍ତର : (ବାହାରୁ) ସଦାଶିବ ଘରେ ଅଛ ? ସଦାଶିବ...

ସଦାଶିବ : ଏଇ ଦେଖିଚ, କଥା ପଡ଼ୁ ପଡ଼ୁ ଡାକ୍ତର ନିଜେ ଆସି ପହଞ୍ଚିଲେଣି । ତମେ ଯାଅ—ଚା'ର ବନ୍ଦୋବସ୍ତ କର ।
( ପାର୍ବତୀ ଚାଲିଗଲେ । ପ୍ରାୟ ସଙ୍ଗେ ସଙ୍ଗେ ଆସିଲେ ଡାକ୍ତର । ସେ ସଦାଶିବଙ୍କ ସମବୟସ୍କ । )
ବସ ଡାକ୍ତର ବସ ! ବର୍ତ୍ତମାନ ତମ କଥା ପଡ଼ିଥିଲା ।

ଡାକ୍ତର : ମୋ କଥା କଣ ପଡ଼ିଥିଲା ? ତମର ସବୁ ଭଲ ତ ?

ସଦାଶିବ : ସବୁ ଭଲ ହେଲେ ତମ କଥା ପଡ଼ନ୍ତା କାହିଁକି ?

ଡାକ୍ତର : କଣ ହେଲା ? ତମରୁ ବୋଉର ପୁଣି ଡିସ୍‌ପେପ୍‌ସିଆ ?

ସଦାଶିବ : ନା ।

ଡାକ୍ତର : ତେବେ କଣ ତମର ସେଇ ସାଇଟିକା ?

ସଦାଶିବ : ନାହିଁ ବାବୁ, ଆମର କାହାର କିଛି ହୋଇନି ।

ଡାକ୍ତର : ତେବେ କାହାର କଣ ହୋଇଚି ?

ସଦାଶିବ : ହୋଇଚି ତ ଏକ ସାଙ୍ଘାତିକ ରୋଗ ।

ଡାକ୍ତର : ସାଙ୍ଘାତିକ ରୋଗ !! କଣ ଟାଇଫଏଡ଼ ନା ନିଉମୋନିଆ ?

ସଦାଶିବ : ଫମୋନିଆ ନୁହେଁ ଡାକ୍ତର—ନୋଜ୍‌ମାନିଆ ।
ଡାକ୍ତର : ନୋଜ୍‌ମାନିଆ !! ସେ' ପୁଣି କି ରୋଗ ?
ସଦାଶିବ : ଅତି ଅଦ୍ଭୁତ ରୋଗ ସେ' ଡାକ୍ତର ।
ଡାକ୍ତର : କାହାକୁ ହୋଇଚି ?
ସଦାଶିବ : ଆମ ଦେଶର ବରପାତ୍ରଗୁଡ଼ାକଙ୍କୁ । ସେଇମାନଙ୍କୁ ନୋଜ୍‌ମାନିଆ ହୋଇଚି ।
ଡାକ୍ତର : ବରପାତ୍ର ! କାହା କଥା ତୁମେ କହୁଚ ? ମୁଁ କିଛୁ ବୁଝିପାରୁନ ।

( ଏତିକିବେଳେ ସଦାଶିବଙ୍କ ଝିଅ ନିରୁ ଦୁଇକପ୍ ଚା' ଆଣି ଦେଇଗଲା । )

ସଦାଶିବ : ନିରୁକୁ ଦେଖିଲ ତ ଡାକ୍ତର ।
ଡାକ୍ତର : ପିଲାଟିଦିନରୁ ଦେଖିଆସିଚି, ଆଜି ଆଉ ପୁଣି ଦେଖିବି କଣ ?
ସଦାଶିବ : ନିରୁ ଯେ ସୁନ୍ଦରୀ ଏ କଥା ତମେ ନିଶ୍ଚୟ ସ୍ୱୀକାର କରିବ ?
ଡାକ୍ତର : ତାକୁ ଅସୁନ୍ଦରୀ ବୋଲି କହୁଚି କିଏ ?
ସଦାଶିବ : ନିରୁ ଖାଲି ସୁନ୍ଦରୀ ନୁହେଁ—ବୁଦ୍ଧିମତୀ—ସ୍କଲରସିପ୍ ନେଇ ବି· ଏ· ପଢ଼ୁଚି । ରଙ୍ଗ ବାଛିବାକୁ ହବନାହିଁ; ସମସ୍ତ ଘରକରଣା କାମରେ ଧୂରନ୍ଧର ।
ଡାକ୍ତର : ତମର ଆଜି ହୋଇଚି କଣ ସଦାଶିବ ?
ସଦାଶିବ : ତମେ ଜାଣିପାରୁନ କଣ ହୋଇଚି ?
ଡାକ୍ତର : ନା, ଖାଲି ଯାହା ତମର ଏଇ ନାକ···
ସଦାଶିବ : ସେଇ ନାକ, ଡାକ୍ତର, ନାକ । ଏତେ ଗୁଣ ଥାଉ ଥାଉ ଦୋଷ ଭିତରେ ନିରୁର ନାକଟା ଟିକିଏ ଚେପ୍‌ଟା ।
ଡାକ୍ତର : ଚେପ୍‌ଟା !! ଅବଶ୍ୟ ସେ ଦୋଷ ତା'ର ଟିକିଏ ରହିଚି ।
ସଦାଶିବ : ଆଉ ସେଇଥିପାଇଁ ବିବାହ ବଜାରରେ ତା'ର ମୂଲ୍ୟ ତଳକୁ ଖସି ଆସୁଚି । ବୁଝିଲ ତ ଏବେ ?
ଡାକ୍ତର : ବୁଝିଲି । ଏଇ ତେବେ ତମ ନୋଜମାନିଆ ?
ସଦାଶିବ : ତମେ କହିଲ ଡାକ୍ତର ଏଇ ସାମାନ୍ୟ କଥା ଯୋଗୁଁ···
ଡାକ୍ତର : ନା ସଦାଶିବ, ଏ ସାମାନ୍ୟ କଥା ନୁହେଁ ।

( ଜଣାଗଲା, ଡାକ୍ତର କଥାଟାକୁ ଟିକିଏ ଗୁରୁତର ଭାବେ ଗ୍ରହଣ କରିଚନ୍ତି । )

ସଦାଶିବ : ଡାକ୍ତର !
ଡାକ୍ତର : ତମେ ବୁଝିପାରୁନ ସଦାଶିବ । ଦୋଷଟା ଯେତେବେଳେ ବରପାତ୍ରମାନଙ୍କ ଆଖିକୁ ଆସିଲାଣି, ସେତେବେଳେ ତାକୁ ସାମାନ୍ୟ କହି ଉଡ଼େଇ ଦେଇ ହେବନାହିଁ ।

ସଦାଶିବ : ତେବେ ଉପାୟ ?

ଡାକ୍ତର : ସେଇ କଥା ତ ଭାବୁଚି । ଦାନ୍ତ ଦ'ଟା ବାହାଡ଼ା ହୋଇଥିଲେ ଉପାଡ଼ି ଦେଇ ପଥର ଦାନ୍ତ ବସାଇ ଦେଇ ହୁଅନ୍ତା କିମ୍ବା ଆଖିରେ ଫୁଲ ପଡ଼ିଥିଲେ ଅପରେସନ୍ ଦ୍ୱାରା ସୁଧାର ନେଇ ହୁଅନ୍ତା । କିନ୍ତୁ ଚେପ୍ଟା ନାକକୁ···

ସଦାଶିବ : ତମ ଫିଜିଓଲଜିରେ ଏମିତ କିଛୁ ହଟଚମଟ ବିଦ୍ୟା ନାହିଁ ଡାକ୍ତର, ଯୋଉଥିରେ ନାକର ଲେଭେଲ୍‌ଟାକୁ ଆଉର ଟିକିଏ ଉପରକୁ ଉଠାଇ ଦେଇ ହୁଅନ୍ତା !

ଡାକ୍ତର : କଣ ଯେ ତୁମେ କହ ସଦାଶିବ···

ସଦାଶିବ : ମୋ ଅବସ୍ଥା ତମେ ବୁଝିପାରୁନ । ଜାଣିଶୁଣି ବାପା ସେତେବେଳେ ଗୋଟାଏ ଚେପ୍‌ଟାନାକୀ ଝିଅକୁ ତାଙ୍କ ବୋହୂ କରି ଘରକୁ ଆଣିଲେ । ତାର ଫଳ ଏବେ ମୁଁ ଭୋଗୁଚି । ପେଣ୍ଡି ପେଟରୁ ଶୁଆ ଜନ୍ମ ହେବ କେମିତ ?

ଡାକ୍ତର : ତମ କଥା ଶୁଣି ମଣିଷ ନ ହସି ରହିପାରୁନ । .

ସଦାଶିବ : ତମେ ତମର ହସୁଥାଅ—ମୁଁ କିନ୍ତୁ ଏଠୁ ଘରଦ୍ୱାର ଛାଡ଼ି ଚାଲିଯିବି ।

ଡାକ୍ତର : କୋଉଁଠିକୁ ଯିବ ?

ସଦାଶିବ : ନେପାଳ । ସେଠି ଝିଅକୁ ପାଇଁ ବରପାତ୍ର ଅଭାବ ରହିବନାହିଁ ।

ଡାକ୍ତର : ଅଜବ ତ ଲୋକ ତମେ : ଶୁଣ, ତମର ବ୍ୟସ୍ତ ହେବା ଦରକାର ନାହିଁ । ସବୁ ଠିକ୍ ହୋଇଯିବ । ଝିଅକୁ ପାଇଁ ମୁଁ ଉପଯୁକ୍ତ ବରପାତ୍ର ଠିକଣା କରିଦେବି ।

ସଦାଶିବ : ସତ କହୁଚ ଡାକ୍ତର, ଝିଅକୁ ପାଇଁ ଉପଯୁକ୍ତ ପାତ୍ର ମିଳିବେ ?

ଡାକ୍ତର : ମିଳିବେ ! କିନ୍ତୁ ଟିକିଏ···

ସଦାଶିବ : କଣ ?

ଡାକ୍ତର : ଟିକିଏ ବ୍ଲାକ୍‌ରେ କାରବାର କରିବାକୁ ପଡ଼ିବ ।

ସଦାଶିବ : ବ୍ଲାକ୍‌ରେ ମାନେ ? ବରପକ୍ଷ କନ୍ୟା ଦେଖିବାକୁ ଆସିଲାବେଳେ ଝିଅର ମୁହଁଟା ଯେମିତ ଟିକିଏ ଅନ୍ଧାରୁଆ ହୋଇ ରହିପାରିବ···

ଡାକ୍ତର : କି ବୋକା ତୁମେ ! ସାରା ଦେଶ ବର୍ତ୍ତମାନ ବ୍ଲାକ୍‌ରେ ଚାଲିଚି, ତମେ କହୁଚ କଣ ନା···

ସଦାଶିବ : ସତେ ଡାକ୍ତର, ତମ ବ୍ଲାକ୍ କାରବାର କଥା ମୁଁ କିଛି ବୁଝିପାରୁନି ।

ଡାକ୍ତର : ଥାଉ । କିଛି ବୁଝିବା ଦରକାର ନାହିଁ । ସେ ବ୍ୟବସ୍ଥା ମୁଁ କରିବି ।···ଆଚ୍ଛା, ମୁଁ ବର୍ତ୍ତମାନ ଉଠେ । ରୋଗୀ ଦେଖି ଯାଉ ଯାଉ ଏତେ ସମୟ ଅଟକିଗଲି ।
( ଡାକ୍ତର ବିଦାୟ ନେଲେ )

ସଦାଶିବ : (ଦୀର୍ଘଶ୍ୱାସ ସହ) ଭଗବାନ୍ ! ପୃଥିବୀରେ ଏତେ ଭୂମିକମ୍ପ ହେଉଛି । ଝରୁର ନାକ ତଳେ ଗୋଟିଏ ଗ୍ରେଟ ଭୂମିକମ୍ପ କରାଇ ତା' ନାକଟାକୁ ଦୁଇ ସେଣ୍ଟିମିଟର ଉପରକୁ ଉଠେଇ ଦେଇ ପାରୁନ ପ୍ରଭୁ !!

[ ସୁକାନ୍ତର ପ୍ରୁଫର ସେଇ କୋଠରି । ଟେବୁଲ୍ ଉପରେ ଗୁଡ଼ାଏ ଚିଠି ଜମା ହୋଇଛି । ସମସ୍ତ ପୁର୍ବାହ୍ନ । ସୁକାନ୍ତକୁ ଦେଖିଲେ ଜଣାଯାଏ ସେ ଯେମିତି ଏକାବେଳକେ ଖର୍ଙ୍ଗି ପଡ଼ିଛି । ]

ଆନନ୍ଦ : ମୁଁ ଆଗେ ଚିଠିଗୁଡ଼ାକ ସଜେଇ ରଖେ—ତା'ପରେ ଗୋଟି ଗୋଟି କରି ପଢ଼ାଯିବ ।

ସୁକାନ୍ତ : କ୍ଷମାକର ଭାଇ ! ଏ ଚିଠି ସବୁକୁ ପଢ଼ିବାର କି ସଜେଇ ରଖିବାର ସ୍ପୃହା ମୋର ଆଦୌ ନାହିଁ । ସେ ସବୁକୁ ତୁ ଦିଆସିଲିମାରି ଜଳେଇ ଦେ ।

ଆନନ୍ଦ : ଏତିକରେ ତୁ ଧୈର୍ଯ୍ୟ ହରାଇ ବସିଲୁ ? ଗୋଟାଏ ନୂଆ କିଛି କରିବାକୁ ହେଲେ ଏମିତି ଉପହାସ ପରିହାସ ସହିବାକୁ ପଡ଼େ ।

ସୁକାନ୍ତ : କିନ୍ତୁ କି କଦର୍ଯ୍ୟ ମନୋବୃତ୍ତି ଏଇ ଝିଅମାନଙ୍କର ତୁ କହିଲୁ ଆନନ୍ଦ ? ଏସ୍‌ଥେଟିକ୍ ସେନ୍ସ କଣ ଏମାନଙ୍କର ଆଦୌ ନାହିଁ ? ନାକ ସମ୍ବନ୍ଧରେ ଏଇ ଦାର୍ଶନିକ ସିଦ୍ଧାନ୍ତରେ ପହଞ୍ଚିବା ପାଇଁ ମୁଁ କି ସାଧ ସାଧନା ନ କରିଛି ! ଜନ୍ମସ୍ତୁରେ ସାମାନ୍ୟ ଟିକେ ସହାନୁଭୂତି ସୁଦ୍ଧା ମୁଁ କାହାରଠୁ ପାଇଲିନି ।

( ସୁକାନ୍ତର ଅଲକ୍ଷ୍ୟରେ ଆନନ୍ଦ ଏଥିରୁ ଆମୋଦ ଅନୁଭବ କରୁଥାଏ । )

ଆନନ୍ଦ : ତା'ର ବେଳ ଆସୁଛି ସୁକାନ୍ତ । ଯେଉଁମାନେ ଆଜି ତୋତେ ବିଦ୍ରୂପ କରୁଛନ୍ତି, ସେମାନଙ୍କର ନିଶ୍ଚୟ କିଛି ଦୁର୍ବଳତା ରହିଛି । ହୁଏତ ସେମାନେ ଚେପ୍‌ଟାନାକୀ, ନାଇଁ ତ ଗ୍ରହଣଖଣ୍ଡୀ । ସେମାନଙ୍କୁ ତୁ ତ କ୍ଷମା କରିବୁ ।

ସୁକାନ୍ତ : କ୍ଷମା ! ଏଇ ସବୁ ଚିଠି ପାଇସାରିଲା ପରେ ? ଅସମ୍ଭବ ! ! ଏଇ—ଏଇ ଚିଠି ଖଣ୍ଡିକ ତୁ ପଢ଼ିଲୁ !

ଆନନ୍ଦ : (ପଢ଼ିଲା) "ପ୍ରିୟ ସୁକାନ୍ତବାବୁ ! ଆମ ପଡ଼ାରେ ଗୋଟିଏ ଝିଅ ଅଛି । ତାଗୀ ଶୁଣ୍ଢ ଢଆଣରେ ଯେଉଁ ନକ୍ସା ଦରକାର ହୁଏ, ବିଧାତା ଭୁଲରେ ସେଇ

ନକ୍‌ସାରେ ତା' ନାକଟିକୁ ଗଢ଼ିଚନ୍ତି । ଆପଣ ସବୁ ଅବୟବ ଅପେକ୍ଷା ନାକକୁ ପ୍ରିଫରେନ୍‌ସ ଦେଇଥିବାରୁ ଏଇ ଝିଅଟି କଥା ଆପଣ ସୁବିଚାର କରି ତା'ର ପାଣିଗ୍ରହଣ କରିବେ ବୋଲି ମୁଁ ଜାମସେଦ୍‌ପୁର ଓଡ଼ିଆ ନାଗରିକସଂଘ ତରଫରୁ ଆପଣଙ୍କୁ ଅନୁରୋଧ କରୁଚି । ଝିଅଟିର ଫଟୋ ଓ ଦରଖାସ୍ତ ଏଥି ସହିତ ପଠାଇଲି ।—ଆପଣଙ୍କର ସୁଧା ମହାନ୍ତି ।"

ସୁକାନ୍ତ : ସ୍ତ୍ରୀ'ପରେ ଏମାନଙ୍କୁ କ୍ଷମା କରିବାପାଇଁ ତୁ ମତେ କହୁଚୁ ? ଏଇ ସୁଧା ମହାନ୍ତି ନାଁରେ ମୁଁ କେସ୍ କରିବି ।...ଏଇ...ଏ ଚିଠିଟା ପଢ଼ ।

ଆନନ୍ଦ : (ପଢ଼ିଲା) "ମୁଁ ଜଣେ ପ୍ରାର୍ଥୀ ହେବାକୁ ଚାହେଁ ଏବଂ ମୁଁ ବଳନାସିକା ବୋଲି ମୋର ବିଶ୍ୱାସ । କିନ୍ତୁ ଶ୍ରୀମତୀ ବନବାଳାଙ୍କ ନାକର ମାପଟା ମୁଁ ଜାଣେ ନାହିଁ ବୋଲି ଦରଖାସ୍ତ କରିପାରୁନି । ଦୟାକରି ତାଙ୍କଠୁ ମାପଟା ଆଣି ପଠାଇବେ । ଇତି । ଆପଣଙ୍କର ଗୁଣମୁଗ୍‌ଧା—ରମା ଦାସ ।—ପୁନଶ୍ଚ । ଖବରକାଗଜରୁ ଦେଖିଲି ଶ୍ରୀମତୀ ବନବାଳା ବାୟୁପରିବର୍ତ୍ତନ ପାଇଁ ତିନି ମାସ ସକାଶେ ରାଞ୍ଚି ଯାଇଛନ୍ତି । ମୋର ଅନୁରୋଧ, ଆପଣ ନିଜେ ରାଞ୍ଚି ଯାଇ ମାପଟା ପଠାନ୍ତୁ । କିନ୍ତୁ ସାବଧାନ, ରାଞ୍ଚିରେ ଆପଣଙ୍କ ସାଙ୍ଗ ସାଥୀମାନଙ୍କ ନିକଟକୁ ଯିବେନାହିଁ । ଆପଣଙ୍କଠାରେ ଆକୃଷ୍ଟ ହୋଇ ସେମାନେ ହୁଏତ ଆପଣଙ୍କୁ ଅଟକାଇ ରଖିବେ ।"

ସୁକାନ୍ତ : ଏ ଚିଠି ପଢ଼ି ଲୋକ ପାଗଳ ନ ହୋଇ ରହିପାରେ ? ଆଉ କିଛି ନ ହେଲେ ଟିକିଏ ଭଦ୍ରତା ଜ୍ଞାନ ଏଇ ରମା ଦାସଟାର ନାହିଁ !...ପୁଣି ଦେଖ୍ ଏ ଚିଠିଟା— ଏଇ ଜଣଙ୍କର ନୁହେଁ—ଏକାବେଳକେ ପାଞ୍ଚ ଜଣଙ୍କର !

ଆନନ୍ଦ : (ପଢ଼ିଲା) "ଆପଣଙ୍କ ପ୍ରବନ୍ଧ ଓ ବିଜ୍ଞାପନ ପଢ଼ିଲୁ । ନାକ ସମ୍ବନ୍ଧରେ ଆପଣଙ୍କର ଗଭୀର ଗବେଷଣା ପାଇଁ ଆପଣଙ୍କୁ ନାକରେ Doctorate ବା ନାସିକାଚାର୍ଯ୍ୟ ଉପାଧିରେ ଭୂଷିତ କରିବାପାଇଁ ଆମେମାନେ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ କରିବା ସଙ୍ଗେ ସଙ୍ଗେ ଆପଣଙ୍କର ବିରାଟ ବ୍ୟକ୍ତିତ୍ୱ ପ୍ରତି ଆମମାନଙ୍କର ସମ୍ମିଳିତ ନାସିକା କୁଞ୍ଚନ ଜଣାଇଲୁ । ଗ୍ରହଣ କରି ବାଧିତ କରିବାହେବେ । ଇତି । ମିନତି, ଆରତି, ପ୍ରଣତି, ସୁମତି, ବିନତି ।"

ସୁକାନ୍ତ : ଥାଉ ଆନନ୍ଦ, ବନ୍ଦ୍ କର, ଅଉ ପଢ଼ନା । ସେ ସବୁ ଚିଠି ମତେ ଦେ—ମୁଁ ଏଇକ୍ଷଣି ନିଆଁ ଲଗେଇ ପୋଡ଼ିଦିଏ ।

( କବାଟରେ ଠକ୍ ଠକ୍ ଶବ୍ଦ )

ଆନନ୍ଦ : କିଏ ଡାକୁଚି ?

ସୁକାନ୍ତ : ମୁଁ ଦେଖୁଚି ।

( କବାଟ ଖୋଲି ବାହାରକୁ ଗଲା )

ଆନନ୍ଦ : ( ମନକୁମନ ହସି ) ଏଇଥର ବୋଧହୁଏ ତୋ ପାଗଳାମିର ଶେଷ ହେବ ସୁକାନ୍ତ । ଭଗବାନ ! ଆଜ ଏମିତ ଦଶ ପାଞ୍ଚ ଖଣ୍ଡ ଚିଠି ଆସୁ । (ସୁକାନ୍ତ ଫେରିଲ) ସେ କଣ ?

ସୁକାନ୍ତ : ଖଣ୍ଡେ ରେଜେଷ୍ଟ୍ରି ଚିଠି ?

ଆନନ୍ଦ : କିଏ ଦେଇଚ ?

ସୁକାନ୍ତ : ଶ୍ରୀମତୀ ବନବାଳା ଦେବୀ ସ୍ୱୟଂ ।

ଆନନ୍ଦ : ବନବାଳା ଦେବୀ !! କଣ ଲେଖିଚନ୍ତି । ଖୋଲିକରି ପଢ଼ ।

ସୁକାନ୍ତ : ପଢ଼ିବାର ସାହସ ମୋର ଆଉ ନାହିଁ ଆନନ୍ଦ ।

ଆନନ୍ଦ : ଆଚ୍ଛା, ମତେ ଦେ, ମୁଁ ପଢ଼େ ।

ସୁକାନ୍ତ : ତୁ ପଢ଼ିବୁ, ଆଚ୍ଛା ନେ, ପଢ଼ । କିନ୍ତୁ ଏଠି ନୁହେଁ—ତୋ' ଘରକୁ ଯା—ସେଇଠି ପଢ଼ିବୁ ।

ଆନନ୍ଦ : ତୁ ଏତେ ଡରୁଚୁ କାହିଁକି ? ମୁଁ ଆଗେ ଖୋଲିକରି ଦେଖେଁ, ଚିଠିରେ କଣ ଅଛି ।

ସୁକାନ୍ତ : ନା ଭାଇ, ତୋତେ ଅନୁନୟ କରୁଚି ଏ ଚିଠି ନେଇ ତୁ ଏଠୁ ଯା'—ଯା' ଆନନ୍ଦ—ସେ ଚିଠିରେ ଯାହା ଲେଖାଅଛି ମୁଁ ଜାଣେ । ମୁଁ ତାକୁ ଆଦୌ ପଢ଼ିବ ନାହିଁ, ଏ ଚିଠି ନେଇ ତୁ ଏଠୁ ଯା ।

( ଏକପ୍ରକାର ଜୋର୍ କରି ଆନନ୍ଦକୁ ସେଠୁ ତଡ଼ି ଦେଇ ନିଜେ କବାଟ ବନ୍ଦକରି ଖଟ ଉପରେ ଶୋଇପଡ଼ିଲ । )

[ ସଦାଶିବଙ୍କର ପୂର୍ବର ସେଇ ଘର । ସୁନ୍ଦର ଭାବେ ସଜ୍ଜିତ । ଡାକ୍ତର ଆସିଲେ । ]

ସଦାଶିବ : ଆସ ଡାକ୍ତର !

ଡାକ୍ତର : ତମର Ready ତ ?

ସଦାଶିବ : ହଁ, ସବୁ ଠିକ୍ ହୋଇଯାଇଚ ।

ଡାକ୍ତର : ଏଇ ଘରେ ସେମାନେ ବସିବେ ତ ? ଭଲ···ଭଲ ସଜାହୋଇଚ ।

ସଦାଶିବ : ସେମାନେ କିଏ କିଏ ଆସିବେ ?

ଡାକ୍ତର : ମୋଟେ ଦୁଇଜଣ—ବରକର୍ତ୍ତା ଓ ବରର ଜଣେ ବନ୍ଧୁ ।

ସଦାଶିବ : ନଚେତ ବର ଆସିବ ନାହିଁ ?
ଡାକ୍ତର : ନା – କର୍ତ୍ତାଙ୍କ ଘରେ ବରର ଘର । ଅଚ୍ଛା, ନବୁ କାହିଁ ?
ସଦାଶିବ : ଆଜି ସକାଳଠୁ ଖାଲି କାନ୍ଦୁଚି ।
ଡାକ୍ତର : କାନ୍ଦୁଚି ? କାହିଁକି ?
ସଦାଶିବ : କଚ୍ଛ ପିଲ ତ ନୁହେଁ—ମୋ ଅବସ୍ଥା ଦେଖି ସେ ବୁଝି ପାରୁଚି । ସେଇ ଦୁଃଖରେ···
ଡାକ୍ତର : ନା, ନା, ତାକୁ ମନାକରିଦିଅ—ସେମାନଙ୍କ ପାଖରେ ଯେମିତି ନ କାନ୍ଦେ । ହଁ, ସେମାନଙ୍କର ଆସିବାର ବେଳ ପ୍ରାପ୍ତ ହୋଇଗଲା—ନବୁ ଲୁଗାପଟା ପିନ୍ଧି ସାରିଚି ତ ?
ସଦାଶିବ : ସେ ସବୁ କାମ ସରିଚି; କିନ୍ତୁ ଡାକ୍ତର, ତମ ବ୍ଲାକ୍ କଥାଟା କଣ ମୁଁ ତ ଜାଣିପାରିଲିନାହିଁ ।
ଡାକ୍ତର : ସେଇକଥା କହୁଚି ।
ସଦାଶିବ : କୁହ ।
ଡାକ୍ତର : ଏଇ ଚଷମା—( ପକେଟରୁ ଗୋଟିଏ ଚଷମା ବାହାରକଲେ )
ସଦାଶିବ : ଚଷମା ! କଣ ହେବ ?
ଡାକ୍ତର : ନବୁ ପିନ୍ଧିବ ।
ସଦାଶିବ : ନବୁ ଚଷମା ପିନ୍ଧିବ—କାହିଁକି ? ତା' ନାକ ସିନା ଟିକିଏ ଚେପ୍‌ଟା—କିନ୍ତୁ ଆଖି ତ ଖରାପ ନୁହେଁ !
ଡାକ୍ତର : ଆଖିର କଥା ନୁହେଁ । ଏଇଠାରେ ମୋଟେ ପାଓ୍ୱାର ନାହିଁ ।
ସଦାଶିବ : ତେବେ ପିନ୍ଧିବ କାହିଁକି ?
ଡାକ୍ତର : ଏଇ ତ ବ୍ଲାକ୍ !! ଏ ଚଷମାଟା ପିନ୍ଧିଲେ ତା' ନାକର ଚେପ୍‌ଟା ଅଂଶ ଅନେକଟା ଢାଙ୍କି ହୋଇଯିବ ।
ସଦାଶିବ : କିନ୍ତୁ ନବୁ ଯଦି ରାଜି ନହୁଏ ?
ଡାକ୍ତର : ଆଃ —ରାଜି କରାଇବାକୁ ହେବ । ତମ ଝିଅ ଯେ—ଏଇ ସାମାନ୍ୟ କଥାରେ ତତେ ତାକୁ ରାଜି ନ କରାଇଲେ ଚଳିବ କେମିତି ? ତା ଛଡ଼ା ଚଷମା ଦେବା ତ ଏବେ ଝିଅମାନଙ୍କର ଗୋଟାଏ ଫେସନ୍ । ତମେ ଯାଅ, ତାକୁ ଚଷମାଟା ପିନ୍ଧାଅ —ମୁଁ ତେଣେ ସେମାନଙ୍କ ଅପେକ୍ଷାରେ ବାହାରେ ରହୁଚି ।

( ଡାକ୍ତର ବାହାରକୁ ଗଲେ । )

ସଦାଶିବ : ହରହେ—ବିପଦ ବାରଣ—ତମେଇ ଭରସା । ହଇଓ, କୁଆଡ଼େ ଗଲ ?
( ପାର୍ବତୀ ଆସିଲେ । )

ପାର୍ବତୀ : କଣ କହୁଚ ?
ସଦାଶିବ : ଆସ । ( ଡାକଲେ ) ନରୁ—ନରୁ ! (ନରୁ ଆସିଲା)
ନରୁ : କଣ ବାପା ?
ସଦାଶିବ : କାନ୍ଦୁଥିଲୁ ତ ?
ନରୁ : କାନ୍ଦିବ କାହିଁକି ?
ସଦାଶିବ : ଏଇତ, ଏ ଯାଏଁ ଲୁହର ଦାଗ ଲିଭିନି । ଛି, ମା ! ଯାହା ହେଉଚ ତୋର ଭଲ ପାଇଁତ ହେଉଚ । ଏଇ ଶାଢ଼ି ପିନ୍ଧିଲୁ ତ ! ହଁ ମା'—ଏ ଶାଢ଼ିଟି ତତେ ବେଶ୍ ଦେଖାଯାଏ । କାହା ଭାଗ୍ୟରେ ଅଛୁ କେଜାଣି···ତୋ ପରି ରତ୍ନକୁ ତା' ଘରକୁ ନେବ !
ନରୁ : ମତେ ଆଉ କଣ କହିବ ବାପା ?
ସଦାଶିବ : ହଁ ମା—ଏଇ ଚଷମାଟା—କେମିତି ହେଇଚ କହିଲୁ ? ତୋ ପସନ୍ଦକୁ ଆସୁଚ ? (ନରୁ ଚଷମା ନେଲା )
ନରୁ : ଭଲ ହେଇଚ ତ—ସୁନ୍ଦର ରୋଲଡ୍ ଗୋଲଡ୍ ଫ୍ରେମ୍ ! କାହାର ଏ ଚଷମା ? ବୋଉର ? ବୋଉ ଆଖି କଣ ଖରାପ ହେଲାଣି ?
ପାର୍ବତୀ : ମୋ' ଆଖି କାହିଁକି ଖରାପ ହେବ ? ତେ ' ବାପାଙ୍କ ଆଖି ଖରାପ ହେଇଥିବ । ହଇଓ, ତମରି ପାଇଁ ଏ ଚଷମା ଆସିଚ ? ତମ ଆଖି କଣ···
ସଦାଶିବ : ଓହୋ —କାହାରି ଆଖି ଖରାପ ହେଇନି—ଆଖି ପାଇଁ ଏ ଚଷମା ଅସିନାହିଁ । ତୁ କହିଲୁ ନରୁ, ତୋ' ମନକୁ ଏ ଚଷମଟା ପାଉଚ କି ନାହିଁ ?
ନରୁ : କହିଲି ତ; ଚଷମାଟା ବେଶ୍ ସୁନ୍ଦର ହେଇଚ ।
ସଦାଶିବ : ଟିକଏ ପିନ୍ଧିକରି ଦେଖିଲୁ ମା—ତୋ' ମୁହଁକୁ କେମିତି ଦେଖାଯାଉଛି । ( ନରୁ ଚଷମା ପିନ୍ଧିଲା । ) ବାଃ—ବାଃ—ବାଃ—କି ସୁନ୍ଦର ! ଦେଖୁଚ ପାର୍ବତୀ, ଚଷମାଟା ନରୁକୁ କି ସୁନ୍ଦର ମାନିଚ ! ଥାଉ ମା—ଥାଉ—ପିନ୍ଧିଥା ।
ନରୁ : ପିନ୍ଧିଥିବ ? କାହିଁକି ବାବା ? ମୁଁ ଚଷମାଟା କାହିଁକି ପିନ୍ଧିବ ?
ସଦାଶିବ : କାହିଁକି ଆଉ କଣ ? ଆଖିକି ସୁନ୍ଦର ଦିଶିବ, ପିନ୍ଧିବୁ । ଆଜକାଲି ତ ସେ୍ୱ ଗୋଟାଏ ଫେସନ୍ ହେଲାଣି । ସେମାନେ ଆସି ଦେଖନ୍ତୁ, ମୋ ଝିଅ କେମିତି ଚଷମା ଦେଇଚ ।
ନରୁ : ମୁଁ ବୁଝିଚି ବାପା—ତମର ଉଦ୍ଦେଶ୍ୟ—
ସଦାଶିବ : ତୁ ଯେବେ ବୁଝିଥାଉ ମା—ମୋର ଆଉ କଣ କହିବାର ଅଛି ?
ନରୁ : ଏମିତି ଭାବରେ ଏ ସବୁ ପାଗଳାମିକୁ ପ୍ରଶ୍ରୟ ନ ଦେଲେ କଣ ଚଳନ୍ତା ନାହିଁ ?
ସଦାଶିବ : ଦେଖ୍ ମା, ତୋର ଶିକ୍ଷା ଅଛି, ବୁଦ୍ଧି ଅଛି । ଜୋର୍ କରି କୌଣସି କାମ ମୁଁ କରାଇନେବାକୁ ଚାହେଁନା ।

ଡାକ୍ତର : ( ବାହାରୁ ) ସଦାଶିବବାବୁ !

ସଦାଶିବ : ଏଇ ସେମାନେ ଆସିଗଲେ ! ···ହଁ ହେ, ବିପଦବାରଣ···

[ ପାର୍ବତୀ ଓ ନିରୁ ଭିତରକୁ ଚାଲିଗଲେ । ଟିକିଏ ପରେ ଡାକ୍ତରଙ୍କ ସହିତ ଆସିଲେ ରାଧାମୋହନ ଓ ଆନନ୍ଦ । ]

ଡାକ୍ତର : ସଦାଶିବ, ଏଇ ହରିଚନ୍ଦ୍ର ବରପିତା ରାଧାମୋହନବାବୁ···

ସଦାଶିବ : ନମସ୍କାର ଆଜ୍ଞା !

ରାଧାମୋହନ : ନମସ୍କାର···ନମସ୍କାର ।

ସଦାଶିବ : ଆସନ୍ତୁ ଆଜ୍ଞା—ବସିବା ହୁଅନ୍ତୁ । ( ଡାକଲେ ) ଆରେ ଚନ୍ଦ୍ରା !

ରାଧାମୋହନ : ବ୍ୟସ୍ତ ହୁଅନ୍ତୁ ନାହିଁ ସଦାଶିବବାବୁ—ଇଏତ ମୋର ଘର ପରି ।

ସଦାଶିବ : ମୋର ଆଜ ବହୁଭାଗ୍ୟ !! ( ଚାକର ଆଣି ପାନ ସିଗ୍ରେଟ୍ ରଖିଗଲା । )

ରାଧା : ବାଃ, ବେଶ୍ ପବନ ତ ଏ ଘରକୁ ହେଉଚି 'ସ୍ତେ' କ'ଣ ସଦାଶିବବାବୁ, ଗୋଟାଏ ବାହାଘରର ପାନ ସିଗ୍ରେଟ୍ ଆପଣ ଯୋଗାଡ଼ କରିଚନ୍ତି । ବସନ୍ତୁ ଡାକ୍ତର ବାବୁ । ବସ ବାବୁ ତମେ ବସ । ବୁଝିଲେ ଡାକ୍ତର ବାବୁ, ଏ ବାବୁ ହେଲେ ଚନ୍ଦ୍ର ଆମ ବାବୁଙ୍କର ବନ୍ଧୁ । ସ୍ୱାଙ୍କ ମତାମତ ଉପରେ—ସ୍ତେ' କଣ—ସଙ୍ଗେ ସଙ୍ଗେ ଚା'··· ( ଚା' ଆସିଲା ।)

ସଦାଶିବ : ନାହିଁ ଆଜ୍ଞା—ଏ ସବୁ ତ ମାମୁଲି କଥା ।

ରାଧା : ଆଚ୍ଛା, ଆଚ୍ଛା, ଚା' ଖିଆଯାଉ ଆଉ ସଙ୍ଗେ ସଙ୍ଗେ···ହଁ ଶୁଣନ୍ତୁ ସଦାଶିବବାବୁ, ମୁଁ ଏଠି ଅନ୍ୟ କୌଣସି ପ୍ରସଙ୍ଗ ଉଠାଇବାକୁ ଚାହେଁନା । ମୁଁ ଆପଣଙ୍କର ଓ ଆପଣଙ୍କ ବଂଶ ପରମ୍ପରାର ପରିଚୟ ପାଇଚି । ମୁଁ ଖାଲି ଝିଅଟିକୁ ଦେଖିବାକୁ ଚାହେଁ । କଣ କହୁଚନ୍ତି ଡାକ୍ତର ବାବୁ ?

ଡାକ୍ତର : ହଁ ଯାଅ ସଦାଶିବ, ନିରୁକୁ ଏଠିକି ଆଣ···ହଁ ଯାଅ । (ସଦାଶିବ ଭିତରକୁ ଗଲେ ) ବୁଝିଲେ ଆଜ୍ଞା—ନିରୁକୁ ଦେଖି ଆପଣ ସନ୍ତୁଷ୍ଟ ହେବେ ନିଶ୍ଚୟ । ଆଉ ଅନ୍ୟାନ୍ୟ କଥା ମାନେ, ତା'ର ଭଲ ମନ୍ଦ ଗୁଣ—ଘରକରଣା ବୁଦ୍ଧି ସେ ସବୁତ ଆପଣ ବଳେ ଜାଣିବେ, କହିକି ଲାଭ କଣ ? ( ସଦାଶିବ ସହିତ ନିରୁ ଆସିଲା । ତା' ଆଖିରେ ଚଷମା )

ରାଧା : ଏଇତ; ଆସ ମା, ଆସ—ବସ । ମା'ତ ମୋର ସାକ୍ଷାତ୍ ଲକ୍ଷ୍ମୀ । ହୁଁ, କୁହତ ମା' ତମ ନାଁ କଣ ?

ନିରୁ : ନିରୁପମା ।

ରାଧା : ନିରୁପମା ! କଣ ପଢ଼ୁଚ ?

ନିରୁ : ବି. ଏ. ।

ରାଧା : ବେଶ୍—ବେଶ୍ । ଆଉ କଣ ସଦାଶିବବାବୁ—ବେଶ୍ ଝିଅଟି ଆପଣଙ୍କର । ମୁଁ

ଋଷି । ହଁ, ତମେ ଯାଅ ମା' ଯାଅ । ଆଚ୍ଛା ଟିକଏ ଶୁଣ···ତମେ ଚଷମା ଦେଇଛ କାହିଁକି କୁହତ ? କୁହ ! ( ନନ୍ଦୁ କିଛି କହୁ ନ ଥାଏ )

ଡାକ୍ତର : ସେ କିଛି ନୁହଁ ରାଧାମୋହନ ବାବୁ—ଚଷମା ସେ ଏମିତି ଦେଇଚ ।

ରାଧା : କ'ଣ ଆଖି କିଛି ଖରାପ ଅଛି ?

ଡାକ୍ତର : ଆଖି ? ନା ସେମିତି କିଛି ନୁହେଁ । ଏଇ ସାମାନ୍ୟ···

ରାଧା : ବାଃ ! ଆପଣ ଡାକ୍ତର ହୋଇ ସାମାନ୍ୟ ବୋଲି କହୁଚନ୍ତି ! ଏଇ ପିଲାଦିନୁ ଯଦି ତା ଆଖି ଖରାପ ହୁଏ···ସଦାଶିବ ବାବୁ ଚାଲି ଯାଉଚନ୍ତି ଯେ !

ସଦାଶିବ : ମୁଁ ଆସୁଚି ଆଜ୍ଞା ! (ଭିତରକୁ ଚାଲିଗଲେ)

ରାଧା : ସଦାଶିବବାବୁ—ଏଣେ ଟିକଏ ଆସନ୍ତୁ । ହଁ ମା'—ଚଷମାଟା ଖୋଲି ଏଇ କାଗଜଟା ପଢ଼ିଲ । ବଡ଼ ମୁସ୍କିଲ କଥା—ଆଖିର ଦୋଷ କାହିଁକି ହେଲା ! ହଁ ମା, ଚଷମାଟା ଖୋଲିଦିଅ ।

ସଦାଶିବ : ହରି ହେ କପଦବାରଣ, ତମେଇ ଭରସା ! (ଗୁଣୁ ଗୁଣୁ ହୋଇ ସଦାଶିବ ଆସିଲେ)

ରାଧା : ଚଷମାଟା ମତେ ଦେଲ ମା···ଏଇଟାକୁ ତମେ ପଢ଼ ।

ନନ୍ଦୁ : (କାନ୍ଦପକାଇ) ମିଛ—ସବୁ ମିଛ, ମୋ ଆଖି ମୋଟେ ଖରାପ ନୁହେଁ !

ରାଧା : ଆଖି ଖରାପ ନୁହେଁ ! ତେବେ ତ ଭଲ କଥା । କିନ୍ତୁ ତମେ କାନ୍ଦୁଚ କାହିଁକି ? କଣ ହେଲା ତମର ? ଆଚ୍ଛା ଆଚ୍ଛା, ତମେ ଯାଅ, ଭିତରକୁ ଯାଅ । (ନନ୍ଦୁ ଭିତରକୁ ଗଲା) ସଦାଶିବ ବାବୁ, କଥା କଣ କୁହନ୍ତୁ ତ ? ମା' ମୋର କାନ୍ଦିଲା କାହିଁକି ? ମୋର କଣ କିଛି ବ୍ୟବହାର ଭୁଲହେଲା ?

ସଦାଶିବ : ନାହିଁ ଆଜ୍ଞା, ଭୁଲ ଆପଣଙ୍କର ନୁହେଁ, ଭୁଲ ମୋର ।

ରାଧା : ଆପଣଙ୍କର ଭୁଲ୍ ! ମୁଁ ତ କିଛି ବୁଝିପାରୁନି !

ସଦାଶିବ : ନନ୍ଦୁର ନାକର ଦୋଷଟା ଢାଙ୍କିବା ପାଇଁ ମୁଁ ତାକୁ ଚଷମା ପିନ୍ଧିବାକୁ ଦେଇଥିଲି ।

ରାଧା : ନାକର ଦୋଷ ! ନାକର ଦୋଷ ପୁଣି କଣ ? ହଇ ହେ ଆନନ୍ଦ ବାବୁ—କଥା କଣ ?

ଆନନ୍ଦ : (ଚୁପାଗଲାରେ) ନନ୍ଦୁର ନାକଟା ସାମାନ୍ୟ ଚେପ୍‌ଟା···

ରାଧା : ଏଁ ! ନାକଟା ଟିକଏ···କାଇଁ ମୁଁ ତ ସେମିତି କିଛି ଲକ୍ଷ୍ୟ କରିପାରିନି ! ତେବେ ଏଇ କଥାକୁ···(ହୋ-ହୋ କରି ହସିଉଠିଲେ) ଆପଣ ଧନ୍ୟ ସଦାଶିବବାବୁ ! କଣ ଯେ ମୁଁ ଆପଣଙ୍କୁ କହିବି ? କିନ୍ତୁ ଗୋଟାଏ ମଜା କଥା ଶୁଣନ୍ତୁ—ମୋର ଏଇ ପୁଅ ସୁକାନ୍ତ, ଯାହାପାଇଁ ମୁଁ ଆଜି ଏଠିକି କନ୍ୟା ଦେଖି ଆସିଚି—ତାର କୀର୍ତ୍ତି କଣ ଜାଣନ୍ତି ? ଖବରକାଗଜରେ ବିଜ୍ଞାପନ ଦେଲା ଯେ ସେ ବନ-ନାସିକା କନ୍ୟାକୁ ବିବାହ କରିବ ।

ସଦାଶିବ : ବନ-ନାସିକା କନ୍ୟା !! ସେ ପୁଅ ଆପଣଙ୍କର ?

ରାଧା : ହଁ ଆଜ୍ଞା—ମୋର ପୁଅ ସେ । କିନ୍ତୁ ବିଜ୍ଞାପନର ଫଳ କଣ ହେଲା ସେ କଥା ତାଙ୍କ ବନ୍ଧୁ ଏଇ ଆନନ୍ଦବାବୁଙ୍କ ମୁହଁରୁ ଶୁଣନ୍ତୁ ।

ଆନନ୍ଦ : ବିଜ୍ଞାପନ ପଢ଼ି ଅନେକ ଝିଅ ତ ଭଦ୍ରରୂପ କରି ଚିଠି ଲେଖିଲେ, ଶେଷକୁ କିଏ ବନବାଳା ସୂକାନ୍ତ ଉପରେ ରେଜେଷ୍ଟ୍ରି ନୋଟିସ୍ ଜାରି କଲେ । ନୋଟିସ୍‌ର ମର୍ମ ହେଉଛି ଏଇ ଯେ ବନବାଳାଙ୍କ ନାକର ସୁଯୋଗ ନେଇ ସୂକାନ୍ତ ସେଥିରୁ ଲାଭ ଉଠାଉଛନ୍ତି ।

ଡାକ୍ତର : ତା'ପରେ ?

ରାଧା : ତା'ପରେ ସବୁ ଅଣ୍ଡା । ବାବୁଙ୍କର ବନ-ନାସିକା ସ୍ୱପ୍ନ ଏଇଠୁ ତୁଟିଲା । ତା'ପରଠୁଁ ସୁକାନ୍ତ ପାଇଁ କନ୍ୟା ଠିକ୍ କରିବାର ସବୁ ଦାୟିତ୍ୱ ରହିଲା ମୋ' ଉପରେ ଓ ତାର ଏଇ ବନ୍ଧୁ ଆନନ୍ଦଙ୍କ ଉପରେ । ନିରୁର ସଦ୍‌ଗୁଣ ସବୁ ଶୁଣି ମୁଁ ଏଠିକି ଧାଇଁ ଆସିଲି । ଅଥଚ···

ସଦାଶିବ : ଅଥଚ କି ଯୋଗାଯୋଗ ଦେଖନ୍ତୁ ତ ! ଭଦ୍ରଲୋକଠାରୁ ସୂକାନ୍ତବାବୁଙ୍କର ଏଇ ବନ-ନାସିକା ପଣ କଥା ଶୁଣି ନିରୁ ପାଇଁ ମୁଁ ହତାଶ ହୋଇପଡ଼ିଥିଲି । କିନ୍ତୁ ମୁଁ କଣ ଜାଣିଥିଲି ଯେ ସେଇ ସୂକାନ୍ତବାବୁଙ୍କ ବାପା ରାଧାମୋହନ କାନୁନ୍‌ଗୋ କନ୍ୟା ଦେଖି ଆସିବେ !

ରାଧା : କିନ୍ତୁ ସଦାଶିବବାବୁ, ସୂକାନ୍ତ ପରି ଆପଣ ମଧ୍ୟ କଣ ପାଗଳ ହୋଇଥିଲେ ? ଏମିତ ଲକ୍ଷ୍ମୀ ପ୍ରତିମା ଝିଅକୁ ଆପଣ ଗୋଟାଏ ଚଷମା ପିନ୍ଧାଇ—ଛି—ଛି···କିଏ ଆପଣଙ୍କୁ ଏ ବୁଦ୍ଧି ଦେଲା ? ଆପଣଙ୍କ ପରି ସାଦାସିଧା ଲୋକର କାମ ତ ଇଏ ନୁହେଁ ।

[ ଏ ଭିତରେ ଡାକ୍ତର ସନ୍ତର୍ପଣରେ ଉଠି ବାହାରକୁ ଚାଲିଗଲେ । ]

ଆରେ ଡାକ୍ତରବାବୁ, ଚାଲିଯାଉଛନ୍ତି ଯେ ? ଶୁଣନ୍ତୁ ଶୁଣନ୍ତୁ···ଏଁ ! ଶୁଣିଲେ ନାହିଁ—ଚାଲିଗଲେ ! ଇଏ ତେବେ କଣ ଆମ ଡାକ୍ତର ବାବୁଙ୍କ ବୁଦ୍ଧି··· ଛାଡ଼ନ୍ତୁ ! ସଦାଶିବବାବୁ, ଚୁପ୍ ହୋଇ ବସିଲେ କାହିଁକି ? ନିରୁକୁ ଡାକନ୍ତୁ । ଆଶୀର୍ବାଦ କରିବ ନାହିଁ ? ଡାକନ୍ତୁ ।

[ ସଦାଶିବ ଉଠିଯାଇ ପ୍ରାୟ ସଙ୍ଗେ ସଙ୍ଗେ ନିରୁକୁ ଆଣି ଆସିଲେ । ]

ଆ' ମା, ଆ । (ମୁଦି ପିନ୍ଧାଇଦେଇ) ମୁଁ କଲ୍ୟାଣ କରୁଚି, ତୋ ମଥାରେ ସିନ୍ଦୂର ଉଜ୍ଜ୍ୱଳ ରହୁ ।···ଆରେ ସେ' କଣ ? ଦୁଆରମୁହଁ ପର୍ଦ୍ଦାଟା ହଲୁଚି କାହିଁକି ? ପର୍ଦ୍ଦା ସେ ପାଖରେ କିଏ ? ସମୁଦୁଣୀ ନା ? ଭିତରକୁ ଆସ । ଆଉ ଗୋଟାଏ ଲୁଚିଲୁଚି କଣ ?

[ ହାତରେ ମିଠେଇ ଥାଳ ଧରି ପାର୍ବତୀ ଆସିଲେ । ]

ବାଃ—ବାଃ—ବାଃ—ହାତରେ ମିଠେଇ ଥାଳ ! ପକ୍କା ଗୃହିଣୀ ତୁମେ ! ଆସ ସମୁଦି, ଆନନ୍ଦବାବୁ ଆଉ ଡେରି କାହିଁକି ? ବଡ଼ଲୋକମାନେ କହିଯାଇଚନ୍ତି— 'ମଧୁରେଣ ସମାପୟେତ୍' ।

□□□

# ଶେଷପର୍ଯ୍ୟନ୍ତ

## ଚରିତ୍ର

ମାନସ } ସ୍ୱାମୀ ସ୍ତ୍ରୀ । ମାନସର ବୟସ ପ୍ରାୟ
ଗୀତା } ସତେଇଶ ବର୍ଷ : ଗୀତାର ତେଇଶ ।

ସୁକାନ୍ତ } ସ୍ୱାମୀ ସ୍ତ୍ରୀ । ସୁକାନ୍ତର ବୟସ ପ୍ରାୟ
ଶ୍ରଦ୍ଧା } ଅଠେଇଶ । ଶ୍ରଦ୍ଧାର ସତେଇଶ ।

ଏମାନେ ସମସ୍ତେ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀ ଅନ୍ତର୍ଭୁକ୍ତ

[ ଏକ ସହରେ । ମାନସ ଓ ସୀତାର ବାସଗୃହର ଏକ କୋଠରୀ । ସୋଫା ଓ ଅନୁରୂପ ଆସବାବପତ୍ର ଦ୍ୱାରା ସୁସଜ୍ଜିତ

କାଳ—ବର୍ତ୍ତମାନ

ସମୟ—ଅପରାହ୍ଣ

ମାନସ ସୋଫା ଉପରେ ବସି ମନଧ୍ୟାନ ସହ ଗୋଟିଏ ବଡ଼ ସ୍କେଲ ସାହାଯ୍ୟରେ ନିଜ ପ୍ୟାଣ୍ଟର ମହୁରୀ ବା ତଳ ଘେରକୁ ମାପୁଛି ।···ହାତରେ ଖଣ୍ଡେ ଖୋଲା ଚିଠି ଧରି ଖୁବ୍ ଫୁର୍ତ୍ତିରେ ସୀତା ଆସିଲା ।···ମାନସ ଓ ସୀତା ଦୁହେଁ ଶିକ୍ଷିତ ତଥା ଆଧୁନିକ ରୁଚି ଓ ସ୍ୱଭାବସମ୍ପନ୍ନ ]

ସୀତା : ଚିଠି···ଚିଠି···ଚିଠି ଆସିଗଲା । ଅପ୍ରତ୍ୟାଶିତ ଭାବେ ବହୁ ପ୍ରତ୍ୟାଶିତ ଏ ଚିଠି ଆଜି ଏଇ ଡାକରେ ଆସି ପହଞ୍ଚିଲା । ଅପ୍ରତ୍ୟାଶିତ କହୁଛି ଏଇଥିପାଇଁ ଯେ ଏତେ ଚଞ୍ଚଳ ଚିଠିଟା ଆସିବ ବୋଲି ମୋର ଆଶା ନ ଥିଲା—ଅଥଚ ଚିଠିଟା କେବେ ଆସିବ ବୋଲି ଆମେ ଦିନ ଗଣୁଥିଲୁ । ଏବେ ଆସିଗଲା···ଆରେ ! କହୁଛି ପରା ଚିଠି ଆସିଲା । କଣ କରୁଛ ଏଠି ? ହେଇ ବାବୁ—ଏଠି ଏ କ ପାଳ ଖେଳୁଛ ? କଣ କରୁଛ ?

ମାନସ : (ମୁହଁ ନଉଠାଇ) କଣ କରୁଛି ?

ସୀତା : ହଁ !! କଣ କରୁଛ ?

ମାନସ : ଦେଖିପାରୁନ ?

ସୀତା : ଦେଖୁଛି ।

ମାନସ : ବୁଝିପାରୁନ ?

ସୀତା : କାର୍ଯ୍ୟଟା ହୁଏତ ବୁଝିଛି—କିନ୍ତୁ କାରଣଟା ।

ମାନସ : ତା ଅର୍ଥ ?

ସୀତା : କେଉଁ କାହାକୁ ବୁଝେଇଲା ଭଳି କିଛି କାର୍ଯ୍ୟ ଏଠି ହଉଛି ବୋଲି ମୁଁ ଜାଣି-ପାରୁନି ।

ମାନସ : ହାତରେ ମୋର ଏଇଟା କଣ ?

ସୀତା : କେଉଁଟା ?

ମାନସ : ଏଇଟା । ( ସ୍କେଲ୍‌ଟା ଦେଖାଇଲା )

ସୀତା : ସେଇଟା ?

ମାନସ : ହଁ, ଏଇଟା କଣ ?

ସୀତା : ସେଇଟା କଣ କହିଦେଲେ ସବୁ ବୁଝାଶୁଝା ଏଠି ହେଇଯିବ ?

ମାନସ : ଆଗେ କୁହ ଏଇଟା କଣ ?

ସୀତା : ସେଇଟା ହଉଚି ସେଇ ଜିନିଷ—ଯେଉଁଥିରେ ବାପାଙ୍କଠୁ ଆରମ୍ଭ କରି ସାର୍‌ଙ୍କ ପର୍ଯ୍ୟନ୍ତ ପିଲାଦିନେ ଆମକୁ ଚଟ୍‌ଚଟ୍ ପିଟୁଥିଲେ । ସେଇଟା ହଉଚି ସେଇ ଜିନିଷ, ଯେଉଁଥିରେ ପିଠିପାଖ, ଅର୍ଥାତ୍ ହାତ ଯୋଉଠିକି ନ ପାଏ, ସେଭଳି କୌଣସି ସ୍ଥାନରେ ଯଦିମିଶ କୁଣ୍ଡିଆ ଗଲ୍ ହେଲେ କୁଣ୍ଡା ହୁଏ । ଆଉ ପୁଣି ସେଇଟା ହଉଚି ସେଇ ଜିନିଷ, ଯୋଉଥିରେ ଟେବୁଲଫ୍ୟାନ୍ ସକ୍ ମାରୁଥିଲେ ଫ୍ୟାନ୍‌ର ସୁଇଚ୍‌ଟାକୁ ଆସ୍ତେ ଠେଲି ଦିଆହୁଏ ।

ମାନସ : ହୁଁ ! ବାଜେ—ବାଜେ—ପିଲାଳିଆ ପ୍ରବୋଧୋକାଳିଆ ଉତ୍ତର । ଗୋଟାଏ ଅତି ସାଦା କଥାକୁ ଏମିତି ଖୁବ୍ ବେଶି ବୁଲେଇ ବାଙ୍କେଇ କହିବାରେ ଆଜିକାଲି ସେମିତି କିଛି ବାହାଦୂରି ନାହିଁ ସୀତା ।

ସୀତା : ଆଉ ବାହାଦୂରି ଅଛି ନିଜ ସ୍ତ୍ରୀକୁ ଗୋଟିଏ ତିନି ବର୍ଷର କୁନି ପିଲା ମନେକରି, ନାକ ଦେଖେଇ ଏଇଟା କଣ—କାନ ଦେଖେଇ ଏଇଟା କଣ—ଏଇ ପ୍ରଶ୍ନ ପଚାରିବାର ନା ?

ମାନସ : ଅଛି ସୀତା, ବାହାଦୂରି ଅଛି । ତେଇଶି ଚବିଶି ବର୍ଷର ତରୁଣୀ ବୋଲି ତମ 'ସୁପରିୟାର୍‌ଟି'କୁ ତମେ ଯେତେ ଜାହିର୍ କଲେ ବି ମୋ ପାଖରେ ତମେ ତିନି ବର୍ଷର—କୁନି । କାରଣ ଏ ଘରେ ତମର ଆବିର୍ଭାବ ମୋଟେ ତିନି ବର୍ଷ ହେଲା ହେଇଚି—ଯେହେତୁ ଆମର ବିବାହ ହବାର ହେଲା ସେଇ ତିନି ବର୍ଷ । କଣ ?? ମୁହଁ ଶୁଖିଯାଉଚି କାହିଁକି ? ବୁଝିଲ ସୀତା, ଏ ଯୁଗର ଶିକ୍ଷିତା ଝିଅ ତମେ—Rebuff କରିବା ତମର ଲଜ୍ଜା ସଙ୍କୋଚ ଭଳି ଗୋଟାଏ ନାଷ୍ଟୁରାଲ ଧର୍ମ । ମୋ କଥାରେ ଯଦି ତମର Rebuff କରିବାର ଥିଲା, ତେବେ ମୁଁ ଯେତେବେଳେ ତମକୁ ଏ ସ୍କେଲ୍‌ଟାକୁ ଦେଖେଇ ପଚାରିଲି—ଏଇଟା କଣ—ତମେ ଝଟ୍ କିନା ଗଳାରେ କହିଥାନ୍ତ—ସେଇଟା ଗୋଟାଏ ବାରଇଞ୍ଚିଆ ସ୍କେଲ; ମାତ୍ର ହେ ବାବୁ, ତମେ ତ ବଢ଼େଇ ନୁହଁ କି ମିସ୍ତ୍ରି ନୁହଁ କି ଦର୍ଜି ନୁହଁ କି ଜ୍ୟାମିତି ପରିମିତି ଭୂଗୋଳ ବିଦ୍ୟାର ଛାତ୍ର ନୁହଁ—ହାତରେ ତମର ଏ ଅସ୍ତ୍ର କାହିଁକି ?

ସୀତା : ସେଇଠୁ ?

ମାନସ : ସେଇଠୁ ମୁଁ କହିଥାନ୍ତି—କହିଥାନ୍ତି—ସୀତା, My dear ! ସା ରେ ଗା ମା ପା ଧା ନି ସା ର ସା'ଟା ଗୋଟାଏ ସା' କି' ଦିଟା ସା' ଏତିକି ନ ଜାଣି ବେଳେବେଳେ ଅଡ଼ୁଆରେ ପଡ଼ିଯାଇ ତମେ ଯେମିତି ବିଲମ୍ବିତ ରାଗର ଧ୍ରୁପଦ

ଗାୟକଙ୍କୁ ବାଧ୍ୟହୋଇ ମନ ପ୍ରାଣ ଦେଇ ଶୁଣିବସ—ମୁଁ ସେମିତି ଅଡୁଆରେ ପଡ଼ି ବାଧ୍ୟ ହୋଇ ଏ ଅସ୍ତ୍ର ଧରିଛି ।

ଗୀତା : ହୁଁ ! ତା'ପରେ !

ମାନସ : ତାପରେ ତମେ କହୁଥା'ନ୍ତ—କଣ ? କି ଅଡୁଆ ? ପୁରୁଣା ପ୍ୟାଣ୍ଟର ମହୁଗାଣ୍ଠାକୁ ସ୍କେଲ୍ ଧରି ମାପୁଛ କାହିଁକି ?

ଗୀତା : ଆଚ୍ଛା, ଆଚ୍ଛା, ହେଲା ଏବେ । ମୁଁ ବର୍ତ୍ତମାନ ସେଇ କଥାଟି ପଚାରୁଛି । କୁହ— ଉତ୍ତର ଦିଅ ।

ମାନସ : ନିଶ୍ଚୟ ଉତ୍ତର ଦେବି ।...ତା' ଆଗରୁ ତମେ ମତେ କୁହତ, ମୋର ଏ ପ୍ୟାଣ୍ଟଟା କେବେ ତିଆରି ହୋଇଥିଲା ?

ଗୀତା : ଗତବର୍ଷ ଏଇ ସମୟରେ ।

ମାନସ : ଏଇ ସମୟରେ ଅର୍ଥ ଗତବର୍ଷ ଆମ ବିବାହ ବାର୍ଷିକୀ ଉତ୍ସବରେ ମୁଁ ଏଇଟାକୁ ପିନ୍ଧିଥିଲି ?

ଗୀତା : ମୁଁ ତ ସେଇ ଅଡୁଆରେ ପଡ଼ିଛି । ପ୍ୟାଣ୍ଟଟାକୁ ପ୍ରାୟ ଗୋଟାଏ ବର୍ଷ ପିନ୍ଧି ସାରିଲା ପରେ ମାପୁଛ କାହିଁକି ? ଏଥର ତ ନୂଆ ପ୍ୟାଣ୍ଟଟାଏ କରୁଛ ।

ମାନସ : ମୋର କାହିଁକି ମନେହେଲା ପ୍ୟାଣ୍ଟଟା ଟିକିଏ ଢିଲା ହୋଇଯାଇଛି ।

ଗୀତା : ଏମିତି ମନେହବାର କାରଣ ?

ମାନସ : ପ୍ରାୟ ଦୁଇମାସ ହବ ଏ ପ୍ୟାଣ୍ଟଟା ମୁଁ ପିନ୍ଧିନଥିଲି ।

ଗୀତା : ଜାଣେ ।

ମାନସ : ଦୁ' ମାସ ପରେ ଆଜି ଏଇଟା ପିନ୍ଧି ବାହାରକୁ ଗଲି ।

ଗୀତା : ଜାଣେ—ଜାଣେ ।

ମାନସ : ରାସ୍ତାରେ ଦେଖିଲି, ବହୁ ଯୁବକ ମୋ ପ୍ୟାଣ୍ଟର ମହୁଗାଣ୍ଠାକୁ ଲକ୍ଷ୍ୟ କରୁଚନ୍ତି ।

ଗୀତା : ଏମିତି ବି ହୋଇପାରେ—ତମ ପ୍ୟାଣ୍ଟଟା ଯେତିକି ଢିଲା ହବାର କଥା, ତା'ଠୁ କମ୍ ଢିଲା ହୋଇଛି, ଅଭ ସେଥିପାଇଁ ସେମାନେ ଲକ୍ଷ୍ୟ କରୁଚନ୍ତି ।

ମାନସ : ତା' ହୋଇଥିଲେ ସେମାନଙ୍କର ଗୃହିଁବାର ଢଙ୍ଗଟା ଭିନ୍ନ ହୋଇଥାନ୍ତା ।

ଗୀତା : କିନ୍ତୁ କାହିଁ ? ମୁଁ ତ କିଛି ସେମିତି ଦେଖିପାରୁନାହିଁ । ହାତ ପାଦ ଉଚାଇନ୍ ଥିଲା ପ୍ୟାଣ୍ଟଟା ଯେମିତି ଥିଲା ସେମିତି ଅଛି । ଢିଲା ହବ କାହିଁକି ?

ମାନସ : ହୁଏତ ହେଇଛି । ତେବେ ମୋ ଗୋଡ଼ ନଳିଟା ସରୁ ହୋଇଛି କି ପ୍ୟାଣ୍ଟଟା ଢିଲା ହୋଇଛି, ସେଇଟା ହିଁ ମାପି ଦେଖୁଥିଲି ।

ଗୀତା : କଣ ଦେଖିଲି ?

ମାନସ : ବିଶେଷ କିଛି ଜାଣି ହେଲା ନାହିଁ । ଗତବର୍ଷ ମୋ ଗୋଡ଼ ନଳିଟା କେତେ ଥିଲା ମାପ କରିହେଉନ କି ତିଆରି ହେଲା ବେଳେ ଏ ପ୍ୟାଣ୍ଟର ମହୁଗାଣ୍ଠା କେତେ ଥିଲା ତା'ର ହିସାବ ଦର୍ଜି ମତେ ଦେଇନି ।

ସୀତା : କଣ ତେବେ ହବ ?

ମାନସ : ସେଇଆ ତ ଭାବୁଚ । କଣ ବା' ଆଉ କର ହବ ? ତେବେ, ଏଥର ଏ ଘୋଡ଼ ପ୍ୟାଣ୍ଟ ତଆର ହଉଚ—ଦର୍ଜିକୁ କହ ଚାର ସବୁ ମାପ ନୋଟ୍ କର ରଖିବ । ଗୋଡ଼ ନଳର ଘେର କେତେ—ପ୍ୟାଣ୍ଟ ନଳର ଘେର କେତେ···

ସୀତା : ହଉ ନଅ ।

ମାନସ : କଣ ?

ସୀତା : ଏତେ ବଡ଼ ପାଟିରେ ଏତେ କଥା କହୁ କହୁ ଆସିଲ—ଜାଣିପାରିଲ ନାହିଁ ?··· ଚିଠି ।

ମାନସ : ଚିଠି ! କିଏ ଦେଇଚ ?

ସୀତା : 'ଦେଇଚ' ନୁହେଁ—ଦେଇଚନ୍ତି ।

ମାନସ : କିଏ ସେଇ 'ଇନ୍ତି' ?

ସୀତା : ଯାହାଙ୍କ ଚିଠିକୁ ତମେ ଅପେକ୍ଷା କର ରହୁଥିଲ—ବାପା । ବାପା ଗାଁରୁ ଚିଠି ଦେଇଚନ୍ତି ।

ମାନସ : ପଢ଼ିଚ ?

ସୀତା : ହଁ ।

ମାନସ : କଣ ଲେଖିଚନ୍ତି ?

ସୀତା : ତମେ ନଅ—ପଢ଼ ।

ମାନସ : ତମେ ପଢ଼ିଚ ପର ?

ସୀତା : ତମ ନାଁରେ ଆସିଚ—ତମେ ନଅ ପଢ଼ ।

ମାନସ : ମୋ ନାଁରେ ଯେତେବେଳେ ଫିଲ୍ମ ମେଗାଜିନ୍ ଆସେ—ରାଶିଫଳ ପତ୍ରିକା ଆସେ, ହୃଦୟିମାନଙ୍କର ଲେଖା ଆସେ, ସେ ସବୁକୁ ମୋ ହାତରୁ ଝାମ୍ପି ନେଇ ତମେ ପଢ଼ିଚ ! ···ଏବେ ଚିଠିଟା ପଢ଼ିବାକୁ ବାଧୁଚ କାହିଁକି ?

ସୀତା : ମୁଁ ତ ପଢ଼ିଚ ।

ମାନସ : ବେଶ୍ ତ ! ଚିଠି ଆସିବାର ଥିଲା—ଆସିଗଲା । ତମେ ପଢ଼ିଚ । କଣ ଲେଖିଚନ୍ତି ଜଷ୍ଟଟା ମତେ କହିଦଅ ।

ସୀତା : ପୁରା ଚିଠିଟା ପଢ଼ିବ ନାହିଁ ?

ମାନସ : ଦର୍କାର କଣ ? କଣ ଲେଖିଚନ୍ତି ମୋଟାମୋଟି ମତେ କହିଦଅ । ···ମୁଁ ବରଂ ଇତ୍ୟବସରରେ ଆଉ ଥରେ ମାପି ଦେଖେ । (ମାପରେ ମନ ଦେଲା)

ସୀତା : (ଚିଠିରେ ଆଖି ବୁଲେଇ) ବାପା···

ମାନସ : ଭଲ ଅଛନ୍ତି ତ ?

ସୀତା : ହଁ, ଭଲ ଅଛନ୍ତି ବୋଲି ତ ଲେଖିଚନ୍ତି ।

ମାନସ : ଗୁଡ୍ ।

ସ୍ୱିତା : ଆଶା କରୁଚନ୍ତି, ପରମେଶ୍ୱରଙ୍କ କୃପାରୁ ଆମେ ସବୁ ଏଠି ଭଲରେ ଥିବୁ ।

ମାନସ : ଥିବୁ ନୁହେଁ—ଅଛୁ । ବେଶ୍ ଭଲରେ ଅଛୁ ।

ସ୍ୱିତା : ସେଇଠୁ ଲେଖିଚନ୍ତି···ଲେଖିଚନ୍ତି···

ମାନସ : ଅସୁବିଧାଟା କଣ ହେଉଚ୍ଛ ଜାଣ ସ୍ୱିତା ?

ସ୍ୱିତା : ସେ କଥା ସବୁ ସେ ଚିଠିରେ ଲେଖିଚନ୍ତି···

ମାନସ : ଲୁଗା ଦୋକାନ ମିଟର୍ ମାପରେ କନା ମାପି ବିକୁଚ—ଆଉ ଦର୍ଜି ଇଞ୍ଚ ମାପରେ ସେଇ କନାକୁ କାଟି ସାର୍ଟ, ପ୍ୟାଣ୍ଟ୍ ତିଆରି କରୁଚ ।

ସ୍ୱିତା : ଆଉ ସେଇଥିପାଇଁ ତମ ପ୍ୟାଣ୍ଟର ମହୁରିଟା ତଳ ହୋଇଯାଇଚ ?

ମାନସ : ଇଞ୍ଚଟା କେତେ ମିଟର୍ କି ସ୍ୱିତା ?

ସ୍ୱିତା : କଣ—କଣ କହୁଲ ? ଇଞ୍ଚଟା କେତେ ମିଟର୍ ?

ମାନସ : ଓ ! Sorry । ମିଟର୍ଟା କେତେ ଇଞ୍ଚ ?

ସ୍ୱିତା : ତମେ ତେବେ ଏଇ ଅସୁବିଧାରେ ପଡ଼ିଚ ?

ମାନସ : ତମେ ଆଉ କ ଅସୁବିଧା କଥା କହୁଚ ?

ସ୍ୱିତା : ଏ ଚିଠି । ବାପାଙ୍କ ଅସୁବିଧା । ମୁଁ ସବୁ ଚିଠି ପଢ଼ି ତୁମକୁ କଷ୍ଟ କହୁଚ ।

ମାନସ : ଓ ! ଆଚ୍ଛା । ଏ ସବୁ ଥାଉ ତା'ହେଲେ । ଚିଠି କଥା କହ ।

ସ୍ୱିତା : ଲେଖିଚନ୍ତି···

ମାନସ : ରହ—ରହ । ମୁଁ ଟିକିଏ ଆରାମରେ ବସେ । ସିଗ୍ରେଟ୍ ପାକେଟ୍ଟା କଣ ହେଲା ? (ସିଗ୍ରେଟ୍ ଧରାଇ) ହୁଁ । ହଁଅ, ଆରମ୍ଭ କର । (ସ୍ୱିତା ମାନସକୁ ଚାହିଁରହିଲା) କଣ ହେଲା ? ଏମିତି ଥମ ହୋଇ ଠିଆ ହୋଇ ରହିଲ ଯେ ?

ସ୍ୱିତା : ତମେ ଏ ହାତରେ ସିଗ୍ରେଟ୍ ଧରି, ସେ ହାତରେ ମୁଣ୍ଡବାଳ ଆଉଁସି ଏମିତି ଗୋଡ଼ ଉପରେ ଗୋଡ଼ ପକେଇ ସୋଫାରେ ବସିବ—ଆଉ ମୁଁ ଏଠି ଠିଆ ହେଇ ହେଇ ତମକୁ ଚିଠିର କଷ୍ଟ ଶୁଣେଇବ !!

ମାନସ : ମନ୍ଦ ନୁହେଁ । ସତ କହୁଚ ସ୍ୱିତା, ଦୃଶ୍ୟଟା ମନ୍ଦ ନୁହେଁ । ମୁଁ ଗୋଟାଏ ହାକିମୀ ଭାବ ନେଇ ଏଠି ଏମିତି ବସିଥିବ—ତମେ ଜଣେ ଅସନ୍ତୁଷ୍ଟ ତଳିଆ କର୍ମଚାରୀ ଭଳି ହାତରେ ଚିଠିଟା ଧରି ଠିଆହୋଇଥିବ—ମନ୍ଦ ନୁହେଁ । ଦେଖିଲେ ବୁଝାଯାଏ···କିଛି ଗୋଟାଏ ଏଠି ଚାଲିଚ । ରାଗୁଚ କ ? ସୁନାଟା, ରାଗନାହିଁ । କହ କଣ ଲେଖିଚନ୍ତି ?

ସ୍ୱିତା : ଲେଖିଚନ୍ତି···ଡାଲୁଅ ଧାନ···

ମାନସ : ଭଲହେଇଚ ।

ସ୍ୱିତା : ନା, ଭଲ ହୋଇନାହିଁ ।

ମାନସ : ଡାକ୍ତର ଧାନ ମାନେ ସେଇ ସବୁ ଧାନ ତ, ଯେଉଁ ଧାନ କଥା ଖବରକାଗଜରେ ବାହାରେ ? ଅମୁକ ଗାଁର ଅମୁକ ଚାଷୀ ଏକର ପିଛା ଜମିରୁ ଏତେ ଶହ କୁଇଣ୍ଟାଲ୍ ଧାନ ଅମଳ କଲେ—ମନ୍ତ୍ରୀଙ୍କ ଉପସ୍ଥିତିରେ ଧାନ ଅମଳ ହେଲା—

ଗୀତା : କୋଉଠି କାହା ଜମିରେ କେତେ ହୋଇଥିବ । ଏଠିରେ ଲେଖିଚନ୍ତି, ଡାକ୍ତର ଧାନ ଭଲ ହୋଇନାହିଁ।

ମାନସ : ହବ କେମିତି ? ଅଯୋଗ୍ୟ ଲୋକ ହାତରେ ପଡ଼ିଲେ ଯାହା ହବାର କଥା ହେଇଚ । ଟ୍ରାକ୍ଟରରେ ଚାଷ କରିବେନାହିଁ—ଟାଇଚୁଙ୍ଗ କଣ ବୁଝିବେ ନାହିଁ—ଫର୍ ମୋସା କୋଉଠି ଜାଣିବେ ନାହିଁ—ଧାନ ଅମଳ କରିବେ କେମିତି ? ଅଯୋଗ୍ୟ ଅଯୋଗ୍ୟ !

ଗୀତା : କିଏ ଅଯୋଗ୍ୟ ! ବାପା ?

ମାନସ : ପଢ଼—ପଢ଼—କଣ ଲେଖିଚନ୍ତି ।

ଗୀତା : ବନ୍ଦୋବସ୍ତ କ୍ୟାମ୍ପ୍...

ମାନସ : କାମ ଚାଲିଚ ।

ଗୀତା : ନା, କ୍ୟାମ୍ପ୍ ଉଠି ଗଲାଣି । ଦୁଇଟା ମୌଜାର (ରହୁ ରହୁ) ବୁଝା...ବୁଝା...

ମାନସ : କଣ ଏତେ ବୁଝୁଚୁ ? ପଢ଼ିପାରୁନ ଏଠିଟା ?

ଗୀତା : ପଢ଼ିଲ କେମିତି ପଢ଼ିଲବାଲୁ । ଏଇଟା ଯେ କ ଶବ୍ଦ—କୋଉ ଭାଷାରୁ ଆସିଚ — (ପଢ଼ି) ବୁଝା...ବୁଝା...ହଁ, ଦୁଇଟା ମୌଜାର ବୁଝାରତ ରହିଗଲା ।...ଏ "ବୁଝାରତ" କଣକଉ ?

ମାନସ : ସେ କଥା ତମେ ତମର ବୁଝାବୁଝି ହୁଅ ।

ଗୀତା : ତମେ ତେବେ ବୁଝିପାରୁନ ?

ମାନସ : ବୁଝିବାର କଣ ଅଛୁ ଏଥିରେ !! ଦ'ଟା ମୌଜାର—କଣ...କଣ ସେଇଟା ?

ଗୀତା : ବୁଝାରତ...

ମାନସ : ରହିଗଲା । ଏଇଆଡ ?

ଗୀତା : ହଁ ।

ମାନସ : ରହୁ—କଣ ଭାସିଗଲା ସେଥିରେ । ଆଉ ଧନଟି ମୌଜାକୁ ରଖେଇଦେଲେ ନାହିଁ ? କିଏ ମନାକରୁଚ ।...ପଢ଼ !

ଗୀତା : ଏ ବର୍ଷର ଚାଷବାସ ଯାହା ଆଶା ଦେଖାଯାଉଚ...

ମାନସ : କଷ୍ଟଟା କହୁ—କଷ୍ଟ—ସାରାଂଶ ।

ଗୀତା : ଇଏତ ହଜାରଟା କଥା ଏଠି ଲେଖାହୋଇଚ—ମୁଁ କାହାର ସାରାଂଶ କହିବ ?

ମାନସ : ସବୁ ମିଶେଇମାଗେଇ କହ । ପାଠ ପଢ଼ୁଚ...ପରୀକ୍ଷା ଖାତାରେ ଗଦ୍ୟ ପଦ୍ୟର ସାରାଂଶ ଲେଖି—unseen passageର ପ୍ରେସି ଲେଖି ପ.ଶ୍ କରିଚ —ଏଠି ପାଣି ଫିଟୁ ନାହିଁ କାହିଁକ ? କହ ।

ସୀତା : (ରାଗି) ଆସିବେ ନାହିଁ ।

ମାନସ : ଆସିବ ନାହିଁ...ଆସିବ ନାହିଁ ମାନେ ?

ସୀତା : ଆସିବ ନାହିଁ ନୁହେଁ—ଆସିବେ ନାହିଁ—ଆ-ସି-ବେ ନାହିଁ ।

ମାନସ : କଣ ଆସିବେ ନାହିଁ ?

ସୀତା : କଷ୍ଟ ।

ମାନସ : କଷ୍ଟ ଆସିବେ ନାହିଁ ? ସିଏ ତ ଆସିବାର କଥା ନୁହେଁ । ତମେ ତାକୁ କହିବାର କଥା ।

ସୀତା : ଏ ଚଟିରେ ବାକି ଯାହା ରହିଗଲା, ତା'ର ସାରାଂଶ ବା .କଷ୍ଟ ହେଲା— "ଆସିବେ ନାହିଁ" ।

ମାନସ : କିଏ ଆସିବେ ନାହିଁ ?

ସୀତା : ବାପା ।

ମାନସ : କୋଉଠିକି ?

ସୀତା : ଆମ ଏଠିକି—କଟକ ।

ମାନସ : କାହିଁକ ?

ସୀତା : "କାହିଁକ" ଜାଣିବାକୁ ଚାହୁଁଚ ?

ମାନସ : ହଁ, କାହିଁକ ଆସିବେ ନାହିଁ ? ଆମ ଅପରାଧ ?

ସୀତା : ଏତେ କଥା ଯଦି ଜାଣିବାକୁ ଚାହୁଁଚ—ତେବେ କଷ୍ଟ ନୁହେଁ କି ସାରାଂଶ ନୁହେଁ—ପୂର୍ବାପର ଭାବ ରକ୍ଷାକରି ସରଳାର୍ଥ ବୁଝାଇବାକୁ ପଡ଼ିବ—Explanation with reference to the context । ବୁଝେଇବ ? ଶୁଣିବ ?

ମାନସ : ବୁଝାଅ । ଆଚ୍ଛା, ଅଚ୍ଛା, ରହ ଟିକିଏ । ଆଉ ଖଣ୍ଡେ ସିଗ୍ରେଟ୍ ଧରାଏ । (ସିଗ୍ରେଟ୍ ଧରାଇ) ହଁ ଶୁଣାଅ ।

ସୀତା : ଲେଖିଚନ୍ତି—ତମର ଆସନ୍ତା ବିବାହ ବାର୍ଷିକୀ ଉତ୍ସବକୁ ମୁ ଯାଇପାରିବି ନାହିଁ— ଅର୍ଥାତ୍ 'ଯିବ୍ବି' ନାହିଁ ।

ମାନସ : ଯିବ ଉପରେ ଏମିତ ଧ୍ୟାନ ଚପି ଜୋର୍ ଦେଇ କାହିଁକ କହୁଚ—"ଯିବ୍ବି" ନାହିଁ ?

ସୀତା : କହୁଚ, ଯେହେତୁ ଯିବ ତଳେ ଅଣ୍ଡର୍ ଲାଇନ୍ କରାହୋଇଚ ।

ମାନସ : ଓ ! ତା'ପରେ ?

ସୀତା : ଶୁଣ ! ବାକ୍ୟଟା ପୂର୍ବପୃଷ୍ଠାରୁ ପଢ଼ି ଦଉଛି । (ପଢ଼ିଲା) ନ ଯିବାର କାରଣ ହେଲା—
ଏ ଭଳି ଉତ୍ସବର ସ୍ଥାନ ଆମ ସନାତନ ସମାଜରେ ନାହିଁ । ଏହା ଆମ
ଲୌକିକକଳା ବିରୋଧୀ ।...ଆଉ ପଢ଼ିବି ?

ମାନସ : ପଢ଼ ।

ସୀତା : (ପଢ଼ିଲା) ଗତବର୍ଷ ତମ ବିଶ୍ୱବିଦ୍ୟାଳୟ ବାର୍ଷିକ ଉତ୍ସବକୁ ମୁଁ ଯାଇ ସବୁ ଦେଖିଛି ।
କେତେ ଜଣ ପୁଅ ଝିଅ ଏକାଠି ହୋଇ—ବଙ୍ଗୋ ବଙ୍ଗୋ ନାମକ ଅଦ୍ଭୁତ ବାଜା
ବଜାଇ—ଲରେ ଲରେ ଟାରେ ଟାରେ ନାମକ ଅବୋଧ ଗୀତ ଗାଇ ନାଚ କୁଦ
କରିବେ—ଡିସ୍କୋ—ଡିସ୍କୋ ନାଚିବେ । ଏହାକୁ କୌଣସିମତେ ଉତ୍ସବ
କୁହାଯାଇପାରିବନାହିଁ । ଅତଏବ ଏ ଉତ୍ସବକୁ ମୁଁ ଯିବିନାହିଁ । ଇତି ।

ଶୁଭକାଙ୍କ୍ଷୀ

ମାନସ : ଥାଉ । (ମାନସ ଚୁପ୍ ହୋଇ ଗମ୍ଭୀର ସ୍ୱରରେ ବସିରହିଲା)

ସୀତା : ଚିଠିଟା ଠିକ୍ ଠିକ୍ ପଢ଼ିଲି ତ ?

ମାନସ : ହୁଁ ।

ସୀତା : କଣ କିଛି ଭାବୁଛ ?

ମାନସ : ନା ।

ସୀତା : ଚିଠିର ସାରମର୍ମ ସବୁ ବୁଝିଲ ତ ?

ମାନସ : ହଁ ।

ସୀତା : ମର୍ମ ବୁଝି ମନ ଦୁଃଖ କରୁଛ ?

ମାନସ : ନା ।

ସୀତା : ହାତରୁ ଅଧାପୋଡ଼ା ସିଗାରେଟ୍ ଖଣ୍ଡକ ତଳେ ଖସିପଡ଼ିଲା କି ?

ମାନସ : ହଁ ।

ସୀତା : ଆଉ ଖଣ୍ଡେ ସିଗ୍ରେଟ୍ ଟାଣିବ ?

ମାନସ : ନା ।

ସୀତା : କେଣି କିଛି କଥା କହୁନ ? ତୁଣ୍ଡ ଶୁଖି ଶୁଖି ଆସୁଛି ?

ମାନସ : ହଁ ।

ସୀତା : ପାଣି ପିଇବ ?

ମାନସ : ନା ।

ସୀତା : କପେ ଟି' କି ଗ୍ଲାସେ ସ୍କ୍ୱାସ୍ ଆଣିଦେବି ?

ମାନସ : ନା ।

ସୀତା : ମତେ ଲୁଚେଇ ଲୁଚେଇ ଯାହା ପିଅ ସେଥିରୁ କିଛି ଆଣିବି ?

ମାନସ : ନା ।

ସ୍ମିତା : ମୁଁ ଆଉ ପାରିବି ନାହିଁ ଲୋ ମା' ! ମତେ ଆଉ କିଛି କହିବ ?

ମାନସ : ନା ।

ସ୍ମିତା : ତା'ହେଲେ…ତା'ହେଲେ କଣ ତମେ ରାଗିଚ ?

ମାନସ : (ଚିଡ଼ିକି ଉଠି) ହଁ ହଁ ରାଗିଚି—ରାଗିଚି ।

ସ୍ମିତା : କାହା ଉପରେ ? ବାପାଙ୍କ ଉପରେ ରାଗିଚ ?

ମାନସ : ହଁ ।

ସ୍ମିତା : କାହିଁକି ? ବାପାଙ୍କ ଉପରେ ରାଗି ଲାଭ କଣ ?

ମାନସ : କ୍ଷତି କଣ ? ରାଗିଲେ କ୍ଷତିଟା କଣ କୁହ ?

ସ୍ମିତା : କିଛି ନାହିଁ । ତମେ ରାଗିଲେ ତାଙ୍କର କି କ୍ଷତି ବା ହବ ? ତମର ମନ ହଉଚି ତ ରାଗ । କାହା ରାଗଟାକୁ କଣ କିଏ ବନ୍ଦ କରିଦେଇ ପାରିବ ?

ମାନସ : ଆଚ୍ଛା ତମେ କହିଲ ।

ସ୍ମିତା : ଦେଖ ବାବୁ, ତମେ ରାଗିଚ । ମୁଁ ଭଲ ମଣିଷଟା । ତମ କଥାରେ ମୁଁ କଣ କହିବି ?

ମାନସ : ହଁ, ତମେ କହ—ଇଏ…ଇଏ ସେଇ ବାପାଟି ?

ସ୍ମିତା : କୋଉ ବାପା ?

ମାନସ : ସେଇ ଯିଏ ଚବିଶ ଘଣ୍ଟା କାଳ ଉପାସ ରହି—ଶୁଦ୍ଧ-ପୂତ ହୋଇ—ନୂଆ ଲୁଗା ପିନ୍ଧି ବେଦିଉପରେ ବସି ଆମକୁ ବାହା କରେଇଥିଲେ ?

ସ୍ମିତା : ହଁ, ସେଇତ ।

ମାନସ : ଇଏ ସେଇ ବାପା ତ, ଯିଏ ଏଠି ପ୍ରସ୍ତାବ ପକେଇ ସେଠି ଝଗଡ଼ି—ସେଠି ପ୍ରସ୍ତାବ ପକେଇ ଏଠି ଝଗଡ଼ି—ଶେଷକୁ ଆମ ଦୁହିଁଙ୍କ ରାଶିଚକ୍ର, ରୂପଯୌବନ, ବିଦ୍ୟା-ବୁଦ୍ଧି, ଗୁଣଗ୍ରାମ ସବୁକୁ ହେଣ୍ଡ୍ ପରସେଣ୍ଟ୍ ମିଳେଇ ତମ ହାତରେ ମୋ ହାତ ଛନ୍ଦି ଦେଇଥିଲେ ?

ସ୍ମିତା : ହଁ ହଁ, ସେଇ ।

ମାନସ : ଇଏ ସେଇ ବାପା ତ ଯିଏ—ଯିଏ…ଯିଏ…

ସ୍ମିତା : ବୁଝିଲି ବାବୁ, ଆଉ ପ୍ରମାଣ ଦରକାର ନାହିଁ । ଇଏ ସେଇ ବାପା…ସେଇ…

ମାନସ : ତା'ହେଲେ ଆଜି ତାଙ୍କର ସ୍ୱେ' କି ଅଲୌକିକ ପରିବର୍ତ୍ତନ—ଇଏ କି ଅସାମାଜିକ ଆଚରଣ—ଇଏ କି ଅହେତୁକ ବିଷୋଦ୍‌ଗାରଣ !

ସ୍ମିତା : ଟିକିଏ ଅବୁଝା…ମାନେ ଜିଦ୍‌ଖୋର…ମାନେ ବଦ୍‌ରାଗୀ, ଆଉ ଡେଙ୍ଗା ଲୋକ ତ !

ମାନସ : ରଖ ହେ ! ବୁଝିଲେ ମୁଁ ବି ଏସବୁ ଗୁଣ ଆମଦାନି କରିପାରିବି । ବାହା-ଘର ବେଳ କଥା କଣ ଭୁଲିଗଲେ ? ମୁଁ ଯଦି ସେତେବେଳେ ଏମିତି ଜିଦ୍-ଖୋର୍ ଏମିତି ବଦ୍‌ରାଗୀ ଏମିତି ଡେଙ୍ଗା ହୋଇଥାନ୍ତି ! ! ଏଁ !

ଶିତା : ସମସ୍ତେ କଣ ସମାନ ଅଛନ୍ତି !···କଣ ହୁଏତ ତାଙ୍କ ମନକୁ ଆସିଯାଇଛ···

ମାନସ : ତାଙ୍କ ମନକୁ ହଜାରେ କଥା, ଲକ୍ଷେ କଥା ଆସୁ—ମୋର ଆପତ୍ତି ନାହିଁ । ହେଲେ ଏ କଥା କେମିତି ତାଙ୍କ ମନକୁ ଆସିଲା ! ! କଙ୍ଗୋ ବଙ୍ଗୋ ପୁଣି ଅଦ୍ଭୁତ ବାଜା ? ଲରେ ଲରେ ପୁଣି ଅବୋଧ ଗୀତ ? ଆମେ ଏଇଠି ନାଚ-କୁଦ କରବୁ, ଆଉ ସେଇଥିପାଇଁ ଚିଠି ଲେଖିଦେଲେ—ମୁଁ ଯିବିବି ନାହିଁ ।

ଶିତା : ବୁଝେଇ ସୁଝେଇ ତାଙ୍କ ପାଖକୁ ପୁଣି ଖଣ୍ଡେ ଚିଠି ଲେଖ···

ମାନସ : ପୁଣି ଆସିଥାନ୍ତେ କାହିଁକି ନା ତାଙ୍କ ଝିଅ ଜ୍ୱାଇଁଙ୍କ ବିବାହ ବାର୍ଷିକୀ ପାଇଁ··· ବର୍ଷକେ ଥରେ ।

ଶିତା : ଝିଅ ଜ୍ୱାଇଁ ନୁହନ୍ତି—ପୁଅ ବୋହୂ ।

ମାନସ : ସେ ଏକା କଥା ।

ଶିତା : ଏକା କଥା କେମିତି ମ ? ଝିଅ ଜ୍ୱାଇଁ—ପୁଅ ବୋହୂ ଏକା କଥା ?

ମାନସ : ଓହୋ ! କଥା ଯାଇ କୋଉଠି ଢ଼ିଲିଣି—ତମେ ପୁଅ ବୋହୂ ଝିଅ ଜ୍ୱାଇଁ ହଉଚ !

ଶିତା : ହେବନି ? ଗୋଟାଏ ଭୁଲ କଥା ଏଠି ଚଳିଯିବାକୁ ବସିଚ ଯେ !···ତମ ବାପାଙ୍କର ଆମେ ଝିଅ ଜ୍ୱାଇଁ କେମିତି ହେବୁ ? ତାଙ୍କର ଆମେ ପୁଅ ବୋହୂ ।

ମାନସ : ମୋ' ବାପା ? ମୋ ବାପା ପୁଣି କିଏ ?

ଶିତା : ତ···ତ···ତମ ବାପା କିଏ ମାନେ···

ମାନସ : ଆରେ ବାବୁ ଏଠି ମୋ' ବାପା ପୁଣି କୋଉଠୁ ଆସିଲେ ?

ଶିତା : ତମର ବାପା ତ ! ଏ ଚିଠି ତମର ବାପା ଦେଇଚନ୍ତି ।

ମାନସ : କୋଉ ଚିଠି ?

ଶିତା : ଏଇ ଚିଠି ।

ମାନସ : ଏଇ ଯାହାକୁ ତମେ ହାତରେ ଧରିଚ ?

ଶିତା : ହଁ, ଏଇ—ଏଇ ଚିଠି ।

ମାନସ : ଯୋଉ ଚିଠି ତମେ ବର୍ତ୍ତମାନ ମୋତେ ପଢ଼ି ଶୁଣେଇଲ ?

ଶିତା : ହଁ—ହଁ—ସେଇ ଚିଠି ।

ମାନସ : ତାକୁ ମୋ ବାପା ଦେଇଚନ୍ତି ?

ଶିତା : ହଁ ତ !

ମାନସ : କଣ ହଁ--ତ ? ଏଠି ତମେ ପରା ଆସି କହିଲ—ବାପା ଚିଠି ଦେଇଚନ୍ତି ।

ଶିତା : ତମ ଘରକୁ ବୋହୂ ହୋଇ ଆସିଲାଦିନୁଁ ତ ତମ ବାପାଙ୍କୁ ମୁଁ ବାପା ବୋଲି ଡାକିଆସୁଚି···ସବୁ ବୋହୂ ତାଙ୍କ ଶଶୁରଙ୍କୁ ବାପା ବୋଲି ଡାକନ୍ତି ।

ମାନସ : ଏ ଚିଠି ତା'ହେଲେ ତମ ବାପା ନୁହନ୍ତି—ମୋ ବାପା ଦେଇଚନ୍ତି ?

ସ୍ମିତା : ହଁ, ତମ ବାପା ।

ମାନସ : ସ୍ମିତା, ମୁଁ ବୁଝିପାରୁନି···

ସ୍ମିତା : ନେହ, ମୁଁ ବୁଝେଇଦେଉଚି ।

ମାନସ : କଣଟା ଅଉ ବୁଝେଇବ ?

ସ୍ମିତା : ଚିଠି ତମ ଗାଁକୁ ଯାଇଥିଲା—ଆମ ଗାଁକୁ ବି ଯାଇଥିଲା । ଆସିବାର କଥା ତ ଦୁ' ବାପାଙ୍କର···

ମାନସ : ହଁ ।

ସ୍ମିତା : ଏ ଦୁ' ବାପାଙ୍କୁ ମୁଁ ଯେତେବେଳେ ବାପା ବୋଲି ଡାକେ, ତମେ ତମ ବାପାଙ୍କୁ ବାଦ୍ ଦେଇ କାହିଁକି ଭାବିବସିଲ ଯେ ମୋ ବାପା ଏ ଚିଠି ଦେଇଚନ୍ତି ?

ମାନସ : ଯେହେତୁ ମୋର ଦୃଢ଼ ଧାରଣା ଯେ ଏମିତି ଗୋଟିଏ damaging ଚିଠି ମୋ' ବାପା କେବେ ଲେଖି ନ ପାରନ୍ତି !

ସ୍ମିତା : ସତକୁ ସତ କହନ୍ତୁ ଲେଖିଚି କିଏ ? କୁହ, କିଏ ଲେଖିଚି ?

ମାନସ : (ବଡ଼ ପାଟିରେ) ସ୍ମିତା !

ସ୍ମିତା : (କାନ୍ଦି) ଇଲୋ ମୋ ମା'ଲୋ !! ତମେ ଏମିତି ଭୀମ ରଡ଼ି ଛାଡୁଚ କାହିଁକି ?

ଛନ୍ଦା : ସ୍ମିତା···କଣ ହୋଇଚି ସ୍ମିତା ?

( ପାଟି ଶୁଣି ସୁକାନ୍ତ ଓ ଛନ୍ଦା ଆସି ପହଞ୍ଚିଲେ )

ସୁକାନ୍ତ : କଥା କଣ ମାନସ—ପାଟି ତୁଣ୍ଡ ହେଲା କାହିଁକି ?

ସ୍ମିତା : ଛନ୍ଦା ଅପା, ତୁମେ ଟିକେ ରହ ମୋ' ପାଖରେ ।

ମାନସ : ଛନ୍ଦା ଦେବୀ ଯଦି ରହିବେ, ତେବେ ସୁକାନ୍ତ ବାବୁ ଆପଣ ବି ରହନ୍ତୁ । ଆପଣ ଦୁହେଁ ବି ତ ସ୍ୱାମୀ—ସ୍ତ୍ରୀ—ଆମ ପଡ଼ୋଶୀ—ଦେଖନ୍ତୁ ଏଠି କଣ ଘଟିଯାଉଚି । ଆପଣ ରୁହନ୍ତୁ ।

ସୁକାନ୍ତ : ମୁଁ ତ ରହିଲି···ଛନ୍ଦା ଯେତେବେଳେ ରହିଲେଣି—ମୁଁ ଆଉ ଯାଉଚି କୁଆଡ଼େ ?

ଛନ୍ଦା : ତମେ କଣ ଭାବଚ ସ୍ମିତାକୁ ଛାଡ଼ି ମୁଁ ଏଠୁ ଯିବି ? ସ୍ମିତା ପୁଣି କାନ୍ଦୁଚି !

ସୁକାନ୍ତ : ନାଇଁ ନାଇଁ, ତମେ ରହ । ମୁଁ ତ ରହିଲିଣି । ତମେ ରହ । ତା'ପରେ···

ଛନ୍ଦା : କଣ ତା'ପରେ ?

ସୁକାନ୍ତ : 'ତା'ପରେ'ର କେଳ ଆସୁ—ବଲେ ବୁଝିବ ।···ହଁ ମାନସ, କଣ ହେଉଚି ?

ମାନସ : ସ୍ମିତା, ଦିଅ ସେ ଚିଠି ।

ସ୍ମିତା : କାହିଁକି ? ମୋ କଥାରେ ତମର ବିଶ୍ୱାସ ହଉନି ?

ମାନସ : ଆଖି ପିଛୁଳାକେ ଯିଏ ଏ ବାପାକୁ ସେ ବାପା କରିଦେଇପାରେ, ତାକୁ କିଏ ବିଶ୍ୱାସ କରିବ ?···ଚିଠିଟା ଦିଅ ।

ସ୍ମିତା : ନିଅ···ଚିଠିଟା ମୁଁ ତାଙ୍କୁ ଦେଲି ଛନ୍ଦା ଅପା, ତମେ ସାକ୍ଷୀ ।

ମାନସ : ସୁକାନ୍ତ ବାବୁ, ଆପଣ ବି ଚର୍ଚ୍ଚି ରଖନ୍ତୁ— ଏଇ ସେ ଚିଠି—ଯାହା ପାଇଁ ସବୁ ଗଣ୍ଡଗୋଳ ।

ସୁକାନ୍ତ : ଚର୍ଚ୍ଚିଲି···ବୁଲ୍ କଗି କାଗଜରେ ନାଲି କାଲିରେ ଲେଖା । ଚର୍ଚ୍ଚି ରଖିଲି । (ମାନସ ଚିଠି ଦେଖିଲା)

ମାନସ : ହଁ ! ଏ ଚିଠି ମୋ ବାପାହିଁ ଦେଇଚନ୍ତି—ଇଏ ତାଙ୍କର ଅକ୍ଷର ।

ସ୍ୱାତୀ : ମୁଁ ତ ସେଇ କଥା କହୁଚି । ମୋ ବାପା ଏମିତି ଚିଠି କେବେ ଲେଖିବେ ନାହିଁ ।

ମାନସ : ଆଉ ତମ ମୁହଁରୁ ଏ ଚିଠି କଥା ଶୁଣି ମୁଁ ଯାହା ଯାହା ସବୁ କହିଚି···

ସ୍ୱାତୀ : ସେ ସବୁ ତ ମୋ' ବାପାଙ୍କୁ କହିଚ । ତମେ ଭାବିଥିଲ ଚିଠିଟା ମୋ ବାପା ଦେଇଚନ୍ତି । ଏବେ ତମ ବାପାଙ୍କୁ କହ—ତାଙ୍କ ଉପରେ ରାଗ ।

ଗ୍ରୁପ୍ସା : କଣ ଲୋ ସ୍ୱାତୀ ! କଣ ସିଏ କହୁଚନ୍ତି ?

ସ୍ୱାତୀ : ଏଇ···ଅଯୋଗ୍ୟ—ଅପଦାର୍ଥ—ଏ କଣ ସେଇ ବାପା—ସିଏ କଣ ଏଇ ବାପା—ବାପା ଏମିତି କଲେ—ବାପା ସେମିତି କଲେ—ଏମିତି ହଜାରେ କଥା ।

ଗ୍ରୁପ୍ସା : ଏ···ମା ! ଜ୍ୱାଇଁ ହୋଇ ଶଶୁରଙ୍କୁ ଏମିତି ପୁଣି କିଏ କହନ୍ତି ?

ସୁକାନ୍ତ : ସେମିତି ଶଶୁର— ସେମିତି ଜ୍ୱାଇଁ ହୋଇଥିଲେ ନ କହିବେ କାହିଁକି ?

ଗ୍ରୁପ୍ସା : କେମିତି ଶଶୁର—ଏଁ ? କୁହ କେମିତି ଶଶୁର ?

ସୁକାନ୍ତ : ଯେମିତିକା ଶଶୁର କଥା ଏଠି ଆଲୋଚନା ହଉଚି ।

ଗ୍ରୁପ୍ସା : ବୁଝିଲି, ତମ ଭଳି ଜ୍ୱାଇଁ ଯାହାର ଥିବ ନା···

ସୁକାନ୍ତ : ତାଙ୍କର ଠିକ୍ ତମରି ଭଳି ଝିଅ ଥିବ !

ଗ୍ରୁପ୍ସା : ହେ' ! ତମେ କଣ ମୋ ସାଙ୍ଗରେ କଜିଆ କରିବାକୁ ଏଠିକି ଆସିଚ !

ମାନସ : ଆପଣମାନେ ରହନ୍ତୁ ଟିକିଏ···ଆଗେ ଆମ କଥାର ନିଷ୍ପତ୍ତି ହଉ । ସ୍ୱାତୀ !

ସ୍ୱାତୀ : କଣ ?

ମାନସ : କେବଳ ତମରି···ତମରି ବୁଦ୍ଧି ଯୋଗୁଁ ମୋ ବାପାଙ୍କୁ ମୁଁ ଏ ସବୁ କଥା କହିଚି ।

ସ୍ୱାତୀ : କଣ ମୋର ବୁଦ୍ଧି ?

ମାନସ : ତମେ ଯଦି ଖୋଲିଖୋଲି ମତେ ଆସି କହିଥା'ନ୍ତ ଯେ ଚିଠି ମୋ' ବାପା ଦେଇଚନ୍ତି···

ସ୍ୱାତୀ : ତା'ହେଲେ କଣ ହୋଇଥା'ନ୍ତା ?

ମାନସ : କିଛି ନାହିଁ—କିଛି ହୋଇ ନ ଥା'ନ୍ତା । ମନ ଦୁଃଖ ମନରେ ମାରି ମୁଁ ଚୁପ୍‌ହୋଇ ରହିଥା'ନ୍ତି ।

ସ୍ୱାତୀ : ଏ ସବୁ କଥା କିଛି କହି ନ ଥା'ନ୍ତ !!

ମାନସ : ନା ।

ସ୍ୱାତୀ : ଆମ ବଦାନ୍ୟ-କାର୍ତ୍ତିକଙ୍କୁ ନିନ୍ଦା କରି—ଅପମାନ ଦେଇ ଏଠିକି ଆସିବେ ନାହିଁ ବୋଲି ଏ ଯୋଉ ଚିଠି ସେ ଲେଖିଚନ୍ତି, ସବୁ ଜାଣି ସୁଦ୍ଧା କିଛୁ କହୁ ନ ଥା'ନ୍ତି ?

ମାନସ : ନା, କାରଣ ସେ ମୋ ବାପା !

ସ୍ୱାତୀ : ତମେ ତା'ହେଲେ ଜାଣିଶୁଣି ମୋ ବାପାଙ୍କୁ ଅପମାନ ଦେଉଚ !

ମାନସ : ମୁଁ—ମୁଁ ସେ କଥା କହିପାରିବ ନାହିଁ ।

ସ୍ୱାତୀ : ଶୁଣୁଚନ୍ତି ସୁସ୍ମି ଅପା ! କୁହ—ଏଥିରୁ ତମେ କଣ ବୁଝୁଚ କୁହ ।

ସୁସ୍ମି : ଇଏ କିନ୍ତୁ ଭାରି ଅନ୍ୟାୟ । ମୋ ବାପାଙ୍କୁ ଯଦି ଏମିତି କିଏ କହୁଥା'ନ୍ତା ନା—

ସୁକାନ୍ତ : କ'ଣ କରିଥାନ୍ତ ? କ'ଣ କରିଥାନ୍ତ ଶୁଣେ ।

ମାନସ : ସୁକାନ୍ତ ବାବୁ—ପ୍ଲିଜ୍ ! ଟିକିଏ ବୁଝନ୍ତୁ । ହଁ ସ୍ୱାତୀ, କଣ କହୁଚ ତୁମେ ? ମୁଁ ଜାଣିଶୁଣି କହୁଚ ? ଆଉ ତମେ ଯେ ଜାଣିଶୁଣି ମୋ ପାଟିରୁ ସବୁ କଥା କୁହାଇଚ !

ସ୍ୱାତୀ : କଣ—କଣ ମୁଁ କୁହାଇଚି ?

ମାନସ : ତମେ ଚିଠି ପଢୁଥିଲାବେଳେ ମୁଁ ଜାଣିଥିଲି ଇଏ ତମ ବାପା—

ସ୍ୱାତୀ : ହଁ ।

ମାନସ : ମାତ୍ର ତମେ ଜାଣିଥିଲ ସିଏ ମୋ ବାପା ।

ସ୍ୱାତୀ : ହଁ ।

ମାନସ : ଖୁବ୍ ଖୁସିରେ ଚିଠି—ଚିଠି ଡାକ ଆସି ଚିଠି ଦେଇଗଲା । ଚିଠି ଶୁଣୁ ଶୁଣୁ ମୁଁ ରାଗରେ କ୍ରୋଧରେ ଯାହା ଯାହା ସବୁ କହିଲି ତାକୁ ଶୁଣି ତମେ ଯେ ମୁରୁକେଇ ମୁରୁକେଇ ହସୁଥିଲ—ମନେ ମନେ ମତେ ସମର୍ଥନ କରୁଥିଲ—ବାପା ବଦଳି ହୋଇଥିଲେ ତମେ ମୁରୁକେଇ ହସୁଥା'ନ୍ତ କି ? ସମର୍ଥନ କରୁଥା'ନ୍ତ କି ? (ବଡ଼ପାଟିରେ) କୁହ—କୁଳୁକୁଳୁ କରି ଗୁହାରି କଣ—କୁହ ।

ସ୍ୱାତୀ : ଇଏଲେ ମା, ପୁଣି ଏମ ରଡ଼ି ଛାଡ଼ିଲେଣି—ମୁଁ ଆଉ ଏଠି ରହିବ ନାହିଁ—ମୁଁ ଯାଉଚ ।

ମାନସ : କୁଆଡ଼େ ଯାଉଚ ଶୁଣେ ।

ସ୍ୱାତୀ : ସେ କଥା ଜାଣିବାକୁ ତମେ କିଏ ?

ମାନସ : ଓ, ତମେ ତା'ହେଲେ ତମ ବାପାଙ୍କ ଘରକୁ ଯାଉଚ !

ସ୍ୱାତୀ : କାହିଁକି ? ମୋ ନିଜ ଗୋଡ଼ରେ ଠିଆ ହେବାର ଶକ୍ତି କଣ ମୋର ନାହିଁ ଯେ ମୁଁ ବାପାଙ୍କ ଘରକୁ ଯିବି ?

ମାନସ : ଶୁଣନ୍ତୁ ସୁକାନ୍ତ ବାବୁ, ଶୁଣିଥାନ୍ତୁ । ଶଶୁରଙ୍କୁ ଅପମାନ ହୁଆଇ, ବାପାଙ୍କୁ ଅଭିମାନ କରି ନିଜ ଗୋଡ଼ରେ ଠିଆହେବେ !

ଲୁସ୍ମା : ସୀତା ପରି ହିଁଅ ମନକଲେ ସେ ନିଜ ଗୋଡ଼ରେ ଜଣେ ଠିଆ ହୋଇପାରିବ, ଏଥିରେ ସନ୍ଦେହ କରିବାର କଣ ଅଛି ?

ସୁକାନ୍ତ : ନା-ନା—ସନ୍ଦେହ କରିବାର କିଛି ନାହିଁ । ଆଉ ତାହାପରି ତାଙ୍କର ତ ଗୋଟାଏ ଗୋଡ଼ ଟିକିଏ ଛୋଟା ନୁହେଁ ! ଦୁ' ଗୋଡ଼ଯାକ ସମାନ । ଠିଆ ନହେବେ କାହିଁକି ? ( ଲୁସ୍ମାର ଗୋଟିଏ ପାଦ ଟିକିଏ ବଙ୍କା )

ଲୁସ୍ମା : ଆଉ କାହା ଗୋଡ଼ ଛୋଟା ବୋଲି ତମେ ଏକଥା କହୁଚ ? କିଏ ଛୋଟୀ ?

ସୁକାନ୍ତ : ଏ ଦୁହିଁଙ୍କ ଯାତି ଶୁଣିଲୁ ବୋଲି ଆମେ ଦୁହେଁ ଆସିଲୁ କିଛି ଗୋଟାଏ ସମାଧାନ କରିବାକୁ । ତମେ ଯଦି ଏମିତି କଥାକଥାକେ ମୋ ସାଙ୍ଗରେ କଳି କରିବ...

ଲୁସ୍ମା : ତମେ ଏମିତି କଥା କଥାକେ ଦେଖେଇ ଶିଖେଇ କହିଲେ କଳି ନହେବ କେମିତି ?

ମାନସ : ଟିକିଏ...ଟିକିଏ ଆପଣମାନେ ରହନ୍ତୁ । ...ହଁ ସୀତା, କୁଆଡ଼େ ତମେ ଯିବ ?

ସୀତା : ମୁଁ ଆଡ଼େ ଯାଏ—ତମ ସାଙ୍ଗରେ ଏକାଠି ରହିବିନାହିଁ ।

ମାନସ : ଏକାଠି ରହିବ ନାହିଁ ମାନେ ଅଲଗା ହୋଇଯିବ ?

ସୀତା : ହଁ, ଅଲଗା ହୋଇଯିବି ।

ସୁକାନ୍ତ : ଅଲଗା ହୋଇଯିବ ! ଶୁଣୁଚ ଲୁସ୍ମା, ସିଏ କହୁଛନ୍ତି ଅଲଗା ହୋଇଯିବେ ।

ଲୁସ୍ମା : ଏକାଠି ରହି ନପାରିଲେ ତ ଅଲଗା ହୋଇଯିବେ—ମୁଁ ଆଉ ଶୁଣିବି କଣ ?

ସୁକାନ୍ତ : କଣ ମ ତମେ ଏମିତି କହୁଚ ? ଏତେ ସୁନ୍ଦର ବେହେରାର ସ୍ୱାମୀ-ସ୍ତ୍ରୀ ଦୁଇଟି— ମୋଟେ ତିନି ବର୍ଷ ହେଲା ବାହାଘର ହୋଇଚ—ଛୁଆ ବୋଲି ଗୋଟିଏ—ତାକୁ ପୁଣି ମୋଟେ...କେତେଟି ହେ ମାନସ—ତମ ପୁଅକୁ କେତେ ବୟସ ହେଲା ?

ମାନସ : ଦେଢ଼ବର୍ଷ ।

ସୁକାନ୍ତ : ମୋଟେ ଦେଢ଼ ବର୍ଷର ପୁଅ । ସେଥିରେ କହୁଛନ୍ତି ଅଲଗା ହୋଇଯିବେ ! ହଇହେ ମାନସ !

ମାନସ : ମୁଁ ରାଜି । ମୁଁ ବି ଅଲଗା ହୋଇଯିବି ।

ସୁକାନ୍ତ : ଆମେ ତା'ହେଲେ ଏଠିକି ଆସିଥିଲୁ କାହିଁକି ? ହଇଓ ଲୁସ୍ମା ?

ଲୁସ୍ମା : ମୁଁ ଜାଣିଥିଲି ଏମିତି ଗୋଟାଏ କିଛି ହବ ! ଦବଟି—ତମ ପେନ୍‌ଟା ଦବଟି ।

( ପେନ୍ ନେଲେ )

ସୁକାନ୍ତ : ପେନ୍ କଣ କରିବ ?

ଲୁସ୍ମା : ଶୁଣୁଚ ଅଲଗା ହେବେ, ପଚାରୁଚ ପୁଣି ପେନ୍ କଣ ହବ ? କାଗଜ କାହିଁ, ଖଣ୍ଡେ କାଗଜ । (କାଗଜ ଖଣ୍ଡେ ଆଣି) ହଁ...

ସୁକାନ୍ତ : ଏ କାଗଜ କଲମ ଧରି ବସିଲଣି କାହିଁକି ?

ଛୁସ୍ମା : ଜନସ-ପତ୍ରର ତାଲିକା ହବ । କହୁଛି କେ ସୀତା, ତମର—ଉଁ ଉଁ···ହଁ, ଡେକ୍‌ଚ କେଉଁଠା ?

ସୀତା : ଡେକ୍‌ଚ ?

ଛୁସ୍ମା : ହଁ, ବଣ୍ଟା ହବ ତ—ତୋର ଅଧେ ତାଙ୍କର ଅଧେ । କହ ଡେକ୍‌ଚ କେଉଁଠା ?

ସୀତା : ଡେକ୍‌ଚ···ଡେକ୍‌ଚ—ଜାଣି ନାହିଁ ଛୁସ୍ମା ଅପା !

ଛୁସ୍ମା : ଏଥିରେ କହୁଚୁ ଭଲେ ହବୁ ! ଯା' ଗଣିକରି ଆ ।

ସୁକାନ୍ତ : ହୋ—ହୋ'—ଛୁସ୍ମା ଦେବୀ !

ଛୁସ୍ମା : ତମେ ରହ ।

ସୁକାଂତ : ସିଏ ଭଲେ ହେବେ ବୋଲି ତମେ ଭଲୋକ ହୋଇ ଡେକ୍‌ଚ ଖୋଜ କରୁଚ ?

ଛୁସ୍ମା : ନିଶ୍ଚୟ ।

ସୁକାଂତ : ଦଅ—ଦଅ ସେ କାଗଜ କଲମ । ତାଙ୍କ ଶୋଇଲା ଘରେ ଖଟ କେଉଁଠା ପଚାରିଲେ ସିଏ କହି ପାରିବେ ନାହିଁ, ତାଙ୍କୁ ପଚାରି ହଉଚ ଡେକ୍‌ଚ କେଉଁଠା ?

ସୀତା : ଶୁଣ ଛୁସ୍ମା ଅପା, ମୋର କିଛି ଦର୍କାର ନାହିଁ । ସବୁ ଜିନିଷ ସିଏ ରଖନ୍ତୁ । ମୁଁ ମୋର ପୁଅକୁ ନେଇ ରହିବ ।

ମାନସ : ପୁଅକୁ ନବ ?

ସୀତା : ହଁ ।

ମାନସ : ତମେ କିଏ ପୁଅକୁ ନବ ?

ସୀତା : କଣ ହେଲା ! ମୋ ପୁଅକୁ ମୁଁ ନେଇପାରିବ ନାହିଁ ! ତମେ ବାଧା ଦବ ?

ମାନସ : ବେଶ୍ ! ତମେ ଯଦି କହିବ ତମ ପୁଅକୁ ତମେ ନବ, ମୁଁ କହିବ ମୋ ପୁଅକୁ ମୁଁ ଛାଡ଼ିବ ନାହିଁ ।

ସୀତା : ଶୁଣୁଚ—ଶୁଣୁଚ ଛୁସ୍ମା ଅପା—ଏମିତି ନିଷ୍ଠୁର ! ମୋ ପଥକୁ ମତେ ଦେବେନାହିଁ ।

ଛୁସ୍ମା : ଶୁଣନ୍ତୁ ମାନସବାବୁ !

ସୁକାଂତ : ମାନସ ବାବୁଙ୍କୁ ଆଉ କଣ ଶୁଣେଉଚ ? ଅନ୍ଧାରେ ଲୁଗା ଭିଡ଼ ଡେକ୍‌ଚ ଖୋଜ କରୁଥିଲ—ଏବେ ଏ ନିଷ୍ପତ୍ତି କର ।

ଛୁସ୍ମା : କରୁଚ ତ ! ପିଲା ଉପରେ ଅଧିକାର ମା'ର, ସିଏ ତାକୁ ପାଳେ ପୋଷେ ।

ସୁକାଂତ : ତା'ର ସାକ୍ଷୀ ମୁଁ । ଘରେ ଆମର ଦୁଇଟା ଝୁଲ । ସାନ ଝୁଲରେ ପିଲା ଶୋଇବେ—ବଡ଼ ଝୁଲରେ ମା' । ଆଉ ମଝିରେ ମୁଁ ଆଣ୍ଠୁ ମାଡ଼ି ବସି ଦି' ହାତରେ ଦି' ଝୁଲକୁ ଝୁଲେଇବ । ହୁଁ ! କହିଲେ କଣ ନା—ମା' ପିଲାକୁ ପାଳେ !!

ସୀତା : ମୋର ତେବେ କିଛି ଅଧିକାର ନାହିଁ ?

ସୁକାଂତ : ନିଶ୍ଚୟ ଅଛି । ମୁଁ କଣ କହୁଥିଲି କି—ପିଲା ଗୋଟିଏ ବୋଲି ସିନା ଏମିତି ଝଣା ଓଟର ଲାଗିଛ—ସବୁ ଦୁଇଟି ଥା'ନ୍ତେ···ଗୋଟିଏ ମାନସ ଭାଗରେ ପଡ଼ଂତା—ଆରଟି ସୀତା ଭାଗରେ ।

ସ୍ୱପ୍ନା : ଅଚ୍ଛା, ସେଇଠୁ ଆପେ ଆପେ ବୁଝିଯା'ନ୍ତା—ତମକୁ ଆଉ ବୁଦ୍ଧି ଖର୍ଚ୍ଚ କରିବାକୁ ପଡ଼ଂତା ନାହିଁ ।

ସୁକାଂତ : ତାହେଲେ ସେଇ ବ୍ୟବସ୍ଥା କରାଯାଉ ।

ସ୍ୱପ୍ନା : କି ବ୍ୟବସ୍ଥା ?

ସୁକାନ୍ତ : ଭିନେ ହବାର କଥା ଭିନେ ହୁଅନ୍ତୁ । ତେବେ ଆଉ କିଛି ଦିନ ଅପେକ୍ଷା କରନ୍ତୁ । ଆଉ ଗୋଟିଏ ପିଲା ହଉ, ତା'ପରେ ଭିନେ ହେବେ । (ମାନସ ମୁହଁରେ ଅଳ୍ପ ହସ )

ସୀତା : ମୁଁ ଜାଣେ, ମୋ କଥା କେହି ବୁଝିବେ ନାହିଁ କି ମତେ ଏଠି କେହି ରଖେଇ ଦେବେନାହିଁ । (ଚାଲିଗଲା)

ମାନସ : (କୋମଳ କଣ୍ଠରେ) ସୀତା—ସୀତା ! (ପଛେ ପଛେ ଗଲା)

ସ୍ୱପ୍ନା : ସେ' କଣ ହେଲା ?

ସୁକାଂତ : ସମାଧାନ ।

ସ୍ୱପ୍ନା : ଇଏ କି ସମାଧାନ ? ସୀତା ରାଗିକରି ଗଲାଣି । ତା' ପଛେ ପଛେ ମାନସବାବୁ ।

ସୁକାଂତ : (ହସି) ହେଲେ ରାଗିକରି ନୁହେଁ—ମନ ଖୁସିରେ । ସୀତାକୁ ଖୁସି କରିବାକୁ ମାନସ ମନ ଖୁସିରେ ଏଠୁ ଚାଲିଗଲା । ତା 'ସୀତା, ସୀତା' ଡାକରୁ ମୁ ବୁଝିପାରିଛି । ସେ ଡାକରେ କିଛିଏ ସ୍ନେହ ଭାବ, କିଛିଏ ଦୋଷୀ-ଦୋଷୀ ଭାବ—କିଛିଏ କରୁଣ ଭାବ—ଆଉ, ଆଉ କିଛିଏ ତାରୁଣ୍ୟ ଭାବ । ଯାଅ ଦେଖିବ, ଦୁହେଁ କେମିତି ମନ ଖୁସିରେ ଗପ ଆରମ୍ଭ କରିଦେବେଣି !

ସ୍ୱପ୍ନା : କଥାଟା କହିଲ ଯେ, ତମକୁ କିଛିଏ ମାଡ଼ ପଡ଼ିଲା ନାହିଁ ? କହୁଚ କଣ ନା—ଆଉ ଗୋଟିଏ ପିଲା ହବାଯାଏ ଅପେକ୍ଷା କର—ତା'ପରେ ଭିନେ ହେବ । ଏଇ ବୁଦ୍ଧି ତମର ?

ସୁକାଂତ : ସେଇ ବୁଦ୍ଧିରୁ ତ ମାନସର ଏତେ ଭାବ-ମିଶା 'ସୀତା-ସୀତା' ଡାକ ।

ସ୍ୱପ୍ନା : ଅଚ୍ଛା···(କହୁ କହୁ ଅଟକିଗଲା)

ସୁକାଂତ : କଣ ହେଲା ? କହୁ କହୁ ଅଟକିଗଲ କାହିଁକି ?

ସ୍ୱପ୍ନା : ସବୁ···ସବୁ ଆମ ଭିତରେ ଏମିତି କଳିକଜିଆ ହୁଏ ?

ସୁକାଂତ : ଆମର ତ କଳିକଜିଆ ଚାଲିଛି—ନୂଆ କଥା କଣ ?

ସ୍ୱପ୍ନା : କଳିକଜିଆରୁ ସବୁ ଏମିତି ଭିନେହବା କଥା ଉଠେ ?

ସୁକାଂତ : ଉଠୁ···ଦେଖାଯିବ ।

ଛୁସ୍ମା : (ସ୍ୱର୍ଗ ପଡ଼ି) ଭଦ୍ରେ ହବା କଥା ଉଠିଲେ ତମେ କଣ ଆମପାଇଁ ବି ଠିକ୍ ଏଇ ସମାଧାନ କରିବ ?

ସୁକାନ୍ତ : ମୁଁ କିଛୁ ବୁଝିପାରୁନି ଛୁସ୍ମା !

ଛୁସ୍ମା : (କାନ୍ଦି) ତାଙ୍କର ସିନା ଗୋଟିଏ ପିଲା—ସିଏ ଭଦ୍ରେ ହୋଇପାରିବେ ନାହିଁ । ଆମର ତ ଦୁଇଟି ! !

ସୁକାନ୍ତ : ଛୁସ୍ମା !

ଛୁସ୍ମା : ମତେ ତାହେଲେ ତମେ ସାଙ୍ଗେ ସାଙ୍ଗେ ଭଦ୍ରେ କରିଦବ ?

ସୁକାନ୍ତ : ଛୁସ୍ମା, କାନ୍ଦନାହିଁ । କାନ୍ଦ ନାହିଁ ଛୁସ୍ମା !

( ଖୁସି ମନରେ ମାନସ ଆସିଲା )

ଏଇତ ମାନସ ! ତମର ଭାଇ ସବୁ ଭଲ ତ ?

ମାନସ : ସବୁ ଭଲ । ଶରତ୍ ଆକାଶ ପରି ସବୁ ନିର୍ମଳ । କିନ୍ତୁ ଛୁସ୍ମାଦେବୀଙ୍କର କଣ ହୋଇଛି ?

ସୁକାନ୍ତ : ସେ ରାଗିଚନ୍ତି ।

ଛୁସ୍ମା : ହଁ, ମୁଁ ରାଗିଛି ।

ମାନସ : କାହିଁକି ? କଥା କଣ ?

ଛୁସ୍ମା : କଥା କଣ—ତାଙ୍କୁ ପଚାରନ୍ତୁ···ତାଙ୍କୁ ।

ସୁକାନ୍ତ : ଦେଖ ଭାଇ ମାନସ, ତମେ ବିଚାର କର ! ତମ କଳକଜିଆ ସମାଧାନ କରିବାକୁ ଆମେ ଆସିଲୁ ଯେ ଶେଷକୁ ଆମ ଭିତରେ···

ମାନସ : କିଛି ନାହିଁ—କିଛି ଚିନ୍ତା ନାହିଁ—ସବୁ ଠିକ୍ ହୋଇଯିବ । (ଭିତରକୁ ଚାହିଁ) ଆରେ ଗୀତା କୁଆଡ଼େ ଗଲ ?

( ଟ୍ରେରେ ମିଠା ପ୍ରଭୃତି ଆଣି ଗୀତା ଆସିଲା )

ଗୀତା : ନିଅ ଛୁସ୍ମାଅପା, ଖାଅ ।

ଛୁସ୍ମା : ନାଇଁ ।

ମାନସ : ନାଇଁ କହିଲେ କିଏ ଶୁଣିବ ? ଆଗେ ଟିକିଏ ଖିଆପିଆ କରନ୍ତୁ, ତା'ପରେ···

ଛୁସ୍ମା : ବୁଝିବେ ତ ?

ମାନସ : ନିଶ୍ଚୟ । ଆପଣମାନେ ଆମ କଥା ବୁଝିଚନ୍ତି—ଆମେ ପୁଣି ଆପଣଙ୍କ କଥା ବୁଝିବୁ ନାଇଁ ? ସବୁ ବୁଝି ସବୁ ସମାଧାନ କରିବୁ ।···ଆସନ୍ତୁ ।

ସୁକାନ୍ତ : (କୋମଳ ସ୍ୱରରେ) ଖାଅ ଛୁସ୍ମା, ଖାଅ ।



# କାଳ

**ଚରିତ୍ର**

ଗୋପୀନାଥ : ବୟସ ପ୍ରାୟ ପଞ୍ଚାବନ । ବ୍ୟବସାୟ କରି ଅତି ସାଧାରଣ ଅବସ୍ଥାରୁ ଖୁବ୍ ବଡ଼ଲୋକ ହୋଇପାରିଛନ୍ତି । ସ୍ୱଳ୍ପଶିକ୍ଷିତ । କିନ୍ତୁ ଧନ ବଢ଼ିବା ସଙ୍ଗେ ସଙ୍ଗେ ଆଭିଜାତ୍ୟର ଖୋଳ ଭିତରକୁ ଆପେ ଆପେ ଯେମିତି ଟାଣିହୋଇ ଯାଇଚନ୍ତି ।

ସୋମ୍ : ଗୋପୀନାଥଙ୍କ ଯୁବକ ପୁତ୍ର । ଉଚ୍ଚଶିକ୍ଷିତ । ଅବିବାହିତ । କଥାବାର୍ତ୍ତା ଚାଲିଚଳନ ସବୁଥିରେ ଗର୍ବ ଦମ୍ଭର ପରିଚୟ ସୁସ୍ପଷ୍ଟ ।

ସୋଲେନ୍ : ଗୋପୀନାଥଙ୍କ ଯୁବତୀ କନ୍ୟା । ଅବିବାହିତା । କେମ୍ବ୍ରିଜ୍ ସ୍କୁଲରେ ଶିକ୍ଷା ଲବ୍ଧ—ଅତଏବ ଦୀକ୍ଷା ଅନୁରୂପ ।

କାଶୀ : ଗୋପୀନାଥଙ୍କ ଗୃହର ଚାକର ।

ଶ୍ରୀକାନ୍ତ ଓ ରଙ୍ଗନାଥ : ଗୋପୀନାଥଙ୍କ ଗୃହକୁ ଆଗତ ଦୁଇଜଣ ଅତିଥି । ଦୁହେଁ ସମ୍ଭ୍ରାନ୍ତ । ଉଚ୍ଚଶିକ୍ଷିତ । ଶ୍ରୀକାନ୍ତଙ୍କ ବୟସ ପ୍ରାୟ ପସ୍ତ୍ରିଶ ଓ ରଙ୍ଗନାଥର ପ୍ରାୟ ପଚିଶ ।

[ ଆମ ଏଠାକାର କୌଣସି ଏକ ସହରରେ ଗୋପୀନାଥଙ୍କ ବାସଭବନର ଏକ ସୁସଜ୍ଜିତ ଓ ସୁସଜ୍ଜିତ କକ୍ଷ । ଉଠିବାଉଚ୍ଚ । ଆଡ଼େଇ ଆସିଲେ ଗୋପୀନାଥ ଓ ସୋମ । ସମୟ—ପୂର୍ବାହ୍ଣ । କାଳ—ବର୍ତ୍ତମାନ । ]

ଗୋପୀ : ବାଃ !! ବାଃ !! ବେଶ୍—ବେଶ୍ ସୁନ୍ଦର ହୋଇଛି ! ଚମତ୍କାର !! ଭଦ୍ରଲୋକ-ମାନେ ଆସି ଏ ଘରେ ବସିଲେ ଠିକ୍ ଜାଣିପାରିବେ—ଏଇଟା ଗୋପୀନାଥ ମହାପାତ୍ରର ଘର । ଖୁବ ଭଲ ବନ୍ଦୋବସ୍ତ ହୋଇଛି ।

ସୋମ୍ : ବନ୍ଦୋବସ୍ତ ମୁଁ କରିଚି ବାବା !

ଗୋପୀ : ବରାଦଟା ମୁଁ କରିଥିଲି ପୁଅ !

ସୋମ୍ : ରାଇଟ୍ !! କିନ୍ତୁ ଏ ବନ୍ଦୋବସ୍ତ—ଏ ସବୁ କିଛି ଆରେଞ୍ଜମେଣ୍ଟ ମୁଁ କରିଚି । ଏ କ୍ରେଡିଟ୍ ମୋର ।

ଗୋପୀ : (ବୁଝି ନପାରି) କ୍ରେ-ଡିଟ୍ !

ସୋମ୍ : ତମ ବରାଦ ଅନୁସାରେ ଏଇ ଯେ ସବୁ ବନ୍ଦୋବସ୍ତ ମୁଁ କରିଚି—ତାର କ୍ରେଡିଟ୍ ପାଇବାର ହକ୍‌ଦାର ମୁଁ ନୁହେଁ କି ?

ଗୋପୀ : ହେଲେ···କ୍ରେଡିଟ୍ !!

ସୋମ୍ : ହଁ, କ୍ରେଡିଟ୍ ତ !

ଗୋପୀ : ସୋମ୍, ମୋର ଏତେବଡ଼ ବ୍ୟବସାୟଟାକୁ ମୁଁ ପୁରାପୁରି ତୋ ଉପରେ ଛାଡ଼ି ଦେଲିଣି କହିଲେ ଚଳେ । ହେଲେ ତୁ ବେଳେବେଳେ ଗୋଟିଏ ଅତି ସାମାନ୍ୟ କଥାକୁ ଏମିତି ଏପାଖ ସେପାଖ କରିଦେଉ ଯେ !! ଭଦ୍ରଲୋକ କେତେଜଣ ଆସିବେ—ତାଙ୍କର ଆଦର ଅଭ୍ୟର୍ଥନା ପାଇଁ ଏ ବନ୍ଦୋବସ୍ତ ହୋଇଚି । ଏଥିରେ ଡେବିଟ୍ କ୍ରେଡିଟ୍‌ର କଥା କଣ ରହିଲା ? ଏଇଟା କଣ ଆମ ବ୍ୟବସାୟର କ୍ୟାସ୍ ବୁକ୍ ?

ସୋମ୍ : ବାବା, ତମେ ଯେ କ'ଣ !! ମୁଁ ତ ଦେଖୁଚି, ତମେ ବେଳେବେଳେ ଜାଣିଶୁଣି ଏମିତି ଭୁଲକର । ସତରେ କଣ ତମେ ମୋ କଥା ବୁଝି ପାରିଲ ନାହିଁ ଯେ ମୁଁ କ୍ରେଡିଟ୍ କହିଲି ବୋଲି ତମେ କହିବ ଡେବିଟ୍—କ୍ୟାସ୍ ବୁକ୍ ! ! ଆଜି ସକାଳେ ଦଶ ଏଇଠି—ଏଇ ଘରେ ସୋଲେନ୍ ଆଉ ମୋ ଭିତରେ ଏଇ କ୍ରେଡିଟ୍ ନେଇ କଳିକଜିଆ ଲାଗିଥିଲା ଯେ···

ଗୋପୀ : ( ହସି ହସି ) ଓହୋ, ବୁଝିଲି-ବୁଝିଲି-ବୁଝିଲି । ତୁ ସେ ଫେଡରେଟ୍ କଥା କହୁଚୁ··· ମାନେ ବାହାଦୂର ।

ସୋମ୍ : ଏକ୍‌ଜାକ୍‌ଟ୍‌ଲି !

ଗୋପୀ : କଥା କଣ କି ଜାଣୁ, ଇଂରେଜୀ ଭାଷାଟା ଉପରେ ତ ମୋର ପଇସାଟାକର ବି ଦଖଲ ନାହିଁ । ତମମାନଙ୍କଠୁଁ ଶୁଣାଶୁଣିରେ ପଦେ ଅଧେ ଶିଖି କାମ ଚଳାଇ-ନେବାକଥା ।

ସୋମ୍ : ଅନେକ ସମୟରେ ତ ତମେ ବେଶ୍ କାମ ଚଳେଇନେଇଛ ।

ଗୋପୀ : ମୋ ପିଲାବେଳେ ମୁଁ ଯେତେବେଳେ ଗୁଣ୍ଡି ହଳଦୀ ବ୍ୟବସାୟ କରୁଥିଲି···

ସୋମ୍ : ଆଉ ବାବା ! ପ୍ଲିଜ୍ !! ମୋ ଭଳି ବ୍ୟବସାୟୀ ପିଲା ତମ ମୁହଁରୁ ଶୁଣିବ ଗୁଣ୍ଡ ହଳଦୀ ବ୍ୟବସାୟର କାହାଣୀ !! ଓଃ horrible !!

ଗୋପୀ : ନୂଆପଡ଼ା, ସୋମପେଣ୍ଠ, କୃଷ୍ଣପୁରରୁ ଗୁଣ୍ଡ ହଳଦୀ ଆଣି କଟକ ସହରର ଗଳି କନ୍ଦି ବୁଲି ତେଜରାତି ଦୋକାନୀଙ୍କୁ ବିକୁଥିଲି । ବ୍ୟବସାୟ ବେଶ୍ ଚାଲିଥିଲା । ହେଲେ ପଦେ ବି ଇଂରେଜୀ କଥାର ଦର୍କାର ପଡ଼ୁନଥିଲା । ଯେତେବେଳେ ହଳଦୀଗୁଣ୍ଡ ସାଙ୍ଗରେ କରତ ଗୁଣ୍ଡ ମିଶାଇବାର ବୁଦ୍ଧି ମୁଣ୍ଡରେ ପଶିଲା— ସେତେବେଳେ କରତକଲ ମାଲିକ ଧାବନ୍ ସାହେବଠୁଁ ପହିଲି ଇଂରାଜୀ କଥା ଶିଖିଲି—ମିକ୍‌ସ୍ !! ଧାବନ ସାହେବ କହିଲା—ମହାପାତ୍ର, ଆମେ ଏଠି ପିଅଂଶାଳ ସାଙ୍ଗରେ ପୋଲଙ୍ଗ କାଠପଟା ମିକ୍‌ସ କରି ଲକ୍ଷଲକ୍ଷ ଟଙ୍କାର ଅର୍ଡ଼ର ସପ୍ଲାଇ କରୁଚୁ—ତମେ ସେମିତି ମିକ୍‌ସ୍ କର । କଲି—ଲାଭ ପାଇଲି । ବ୍ୟବସାୟ ବଢ଼ିଲା । ହଳଦୀଗୁଣ୍ଡ ଛାଡ଼ି କଞ୍ଚା ହଳଦୀ ରଙ୍ଗର ସୁନା ବ୍ୟବସାୟ ହାତକୁ ଆସିଲା । ତା' ସାଙ୍ଗକୁ ଆଉ ପାଞ୍ଚଦଶ ବିଜନେସ୍ । ଫଳରେ ପଦେଅଧେ ଇଂରାଜୀ କଥା ଶିଖି କାମରେ ଲଗାଇବାକୁ ପଡ଼ିଲା । ସେଇ ସାଙ୍ଗେ ସାଙ୍ଗେ ଭୁଲ୍ ବି ହେଲ୍—(ହସି) ଏ ଫେଡରେଟ୍‌କୁ ସେ ଫେଡରେଟ୍ !! ହଁ ଶୁଣ ! ସେମାନଙ୍କର ଦୁଇଟା ଗାଡ଼ିରେ ଆସି-ବାର କଥା—ଆଉ ସେମାନେ ନିଶ୍ଚୟ ଆସୁଛନ୍ତି ।

ସୋମ୍ : ଆସନ୍ତୁ ।

ଗୋପୀ : ସୋମ୍ !

ସୋମ୍ : ବାବା !

ଗୋପୀ : ତୁ ଏମିତି ବେଖାତିର କଣ କଥାଟି କହିଲୁ ଯେ ?

ସୋମ୍ : କହିବି ତ । ସେମାନେ ଏମିତି କଣ ହେଇଗଲେ ଯେ ତାଙ୍କୁ ଖାତିର୍ କରିବ ?

ଗୋପୀ : ସେମାନେ ଯାହା ହୁଅନ୍ତୁନା କାହିଁକି—ଯୋଉଥିପାଇଁ ସେମାନେ ଆସୁଛନ୍ତି—ସେ କଥାଟା···

ସୋମ୍ : ବାବା, ସେମାନେ କହୁ ପାଞ୍ଚ ଛଅ୍ କଲେ ସୁନାର ଅର୍ଡର ନେଇ ଆସୁନାହାନ୍ତି, କ ହଜାରେ ବାରଶହ ନେକର ଗୋଟାଏ ପାର୍ଟ ଦେଉନାହାନ୍ତି ଯେ ଫରେନ୍ ଲକର୍ ର ଅର୍ଡରଟା ଆମେ ପାଇଯିବା ।

ଗୋପୀ : ତୁ ଟିକଏ ବେଶି ଆଗେଇ ଯାଉଚୁ ସୋମ । ଜାଣିଚୁ ତ ସେମାନେ ସୋଲେନ୍‌ର ବାହାଘର ପ୍ରସ୍ତାବ ନେଇ ଆସୁଚନ୍ତି ।

ସୋମ୍ : କଣ ହେଇଗଲା ସେଇଠୁ ?

ଗୋପୀ : ଏଥିରେ ଆଉ ହବାର କଣ ଅଛୁ ମୁଁ ବୁଝିପାରୁନ । ସୋଲେନ୍ ତୋର ଭଉଣୀ । ତୁ ସବୁକଥା ଜାଣି ଶୁଣି ବୁଝି—

ସୋମ : ସୋଲେନ୍ ଦେଖିବାକୁ ତ ଏମିତ କିଛୁ ଅସୁନ୍ଦର ଝିଅ ନୁହେଁ !

ଗୋପୀ : ଏଇଥି ତୁ ବୁଝିଲୁ ? କଣ କହିଗଲା ସେ ?

ସୋମ୍ : କିଏ କଣ କହିଗଲା ?

ଗୋପୀ : ରଘୁଦାସ ।

ସୋମ୍ : କଅଣଟା ଏମିତ କହିଗଲା ?

ଗୋପୀ : ତୁ ସବୁ କଥାକୁ ଏମିତ ବେଖାତର କଲେ ତଙ୍ଗା ବୁଡ଼ିଯିବ ଜାଣିଥା । ରଘୁଦାସ ସଫା କହିଗଲା—ଗୋପୀବାବୁ, ଆପଣଙ୍କ ବଂଶ, କୁଳ, ମାନ—ଏସବୁକୁ ବଜ୍ରର କଲେ, ଆପଣ ଯେମିତକା ପାତ୍ର ଖୋଜୁଛନ୍ତି ସେମିତ ମିଳିବା ସହଜ କଥା ନୁହେଁ ।

ସୋମ : Is it ? ଦର୍କାର ନାହିଁ । ସୋଲେନ୍ ଆମର ବାହା ହବନାହିଁ ।

ଗୋପୀ : ଥାଉ ପୁଅ ! ଖୁବ୍ ହେଇଛୁ । ମୁଁ ସବୁ ଶୁଣିବି—ହେଲେ ତୋର ଏ କଥାଟି ଶୁଣି-ପାରିବ ନାହିଁ । ଆମ ଘରେ ଝିଅ ଯଦି ବାହାହେଇ ନପାରିଲା ତେବେ ପିତୃକୁଳ-ମାତୃକୁଳ ସମସ୍ତେ ଏଇ ଦୋଷରେ ଦୋଷୀହେବେ । ଶୁଣ୍ ହଳଦୀ ବ୍ୟବସାୟ କରୁଥିଲେ—କଣା, କୁଜା, ଲେଙ୍ଗଟା ଯାହାପାଇଁ ତା' ସାଙ୍ଗରେ ଏତେ ବେଳକୁ ଛାଡ଼ ଦେଇଥାନ୍ତି । ହେଲେ ଭାଗ୍ୟ ବଦଳିଚ—ପାଞ୍ଚ ପଇସା ଖର୍ଚ୍ଚ କରିବାର ଶକ୍ତି ହେଇଚ ।

ସୋମ୍ : ମୁଁ ତ ସେଇ କଥା କହୁଚ । ସୋଲେନ୍‌କୁ ଯିଏ ବାହାହବ—ଶହ ପାହୁଲା ବେଳକୁ ତା' ଭାଗ୍ୟ ବଦଳି ଯାଇଥିବ । କଣ ନ ପାଇବ ସେ ? ଦୁଇଦୁଇଟା ବଲ୍ ଡଙ୍ଗ—କାର୍ — ଜୁଏଲେରି···

ଗୋପୀ : ତେବେ ତ ହ'ବର୍ଷ ହୋଇଗଲା, ମୋ ମୁଣ୍ଡ ଘୂରିଗଲାଣି । ମୋ ମନମୁତାବକ ପାତ୍ରଟିଏମିଳୁନାହିଁ । କେତେ ଆସୁଛନ୍ତି—କେତେ ଫେରୁଚନ୍ତି । ଶେଷକୁ ରଘୁଦାସ ଏଇ ଯେଉଁ ପାତ୍ରଟିକୁ ଠିକ୍ କରିଚ··· ତୁ ଜାଣିଚୁ ନା ସୋମ—ଖୁବ୍ ହାଇ—ହାଇ —ମାନେ ହାଇକ୍ଲାସ ଫାମିଲି ତାଙ୍କର । ଆଗେ ଭାରି ନାମଜାଦା ଜମିଦାର ଥିଲେ । ଦେଖିବାକୁ କୁଆଡ଼େ ଭାରି ସୁନ୍ଦର ଚେହେରା । ପାଠ ବି ତ ଭଲ ପଢ଼ିଚ ।

ସୋମ୍ : ହଥ !! ଏମ୍. ଏ. ତ ପାଶ୍ କରିଚ—କୋଉ ପିଏଚ. ଡ. ନା ଡ. ଲିଟ୍ !

ଗୋପୀ : ଯା ହଉ, ସବୁଆଡ଼୍ରୁ ମୁଁ ଖୋଜିଚନ୍ତ ଦେଖିଚ ଏଭଳି ପାତ୍ର ମିଳିବା ସହଜ ନୁହେଁ ।
ଆଉ ତୁ ଯଦି ଏବେଠୁ ଏମିତ ବେଖାପର୍ ଢଙ୍ଗ ଧରିବୁ··(ସୋଲେନ୍ ଆସିଲା)

ସୋଲେନ୍ : ଡାଡ଼ି !

ଗୋପୀ : ଏଇ ମୋ ମା' ଆସିଲାଣି ।

ସୋଲେନ୍ : ଡାଡି !

ଗୋପୀ : କଣ ମା' ?

ସୋଲେନ୍ : ତମେ ମନାକଲେ ମୁଁ ଆଜି ବନସାଗ୍ର କ୍ଲବକୁ ବାହାରକୁ ଯିବନାହିଁ ?

ଗୋପୀ : କାହିଁକି ମା'—ତୋର କଣ ଆଜି କ୍ଲବକୁ ଯିବାର ଥିଲା ?

ସୋଲେନ୍ : ଯିବାର ଥିଲା କଣ ମ···ଯିବାକୁ ଚାହିଁଲେ ତ ଯିବ । ଗଡ଼ହଡ଼ ହେଲା ଖବର
—ଟିକିଏ କ୍ଲବକୁ ଲଙ୍ଗ୍ ଡ୍ରାଇଭ୍‌ରେ ଯାଇଆସନ୍ତୁ—ଏପଟେ ପାଗ୍ରାପ—ନାହିଁ ତ
ଏପଟେ ଅନୁରୋଳ ।

ସୋମ୍ : ଆଗେ ଷ୍ଟିମ୍ବାଣଙ୍କ ଉପରେ ହାତର କଣ୍ଟ୍ରୋଲ୍‌ଟା ଆସୁ—ତା'ପରେ ଲଙ୍ଗ୍
ଡ୍ରାଇଭ୍‌ରେ ଯିବୁ ।

ସୋଲେନ୍ : Don't be silly ସୋମ୍ ! ଶୁଣୁଚ ଡାଡି ସୋମ୍‌ର କଥା ! ମୋ କଥାରେ
ସେ ଏମିତ ବାଜେ କମେଣ୍ଟ କରିବ କାହିଁକି ?

ଗୋପୀ : (ହସି) ତମ ଭାଇ ଭଉଣୀ ଦୁହିଁଙ୍କର ଏ ଢଙ୍ଗ କେବେ ଯିବ କେଜାଣି ?

ସୋଲେନ୍ : କଣ କହୁଚ ଡାଡି ? ଯିବ ତ ?

ଗୋପୀ : ନାହିଁ ମା', ସେମାନେ ପରା ଆଜି ଆସିବେ ।

ସୋଲେନ୍ : ଉଁ···

ଗୋପୀ : କାହିଁକି ମା' ? ତୁ ଏମିତ ଲାଜ କରୁଚୁ କାହିଁକି ? ତୁ ପରା ମୋ ଝିଅ ! ତୁ କଣ
ଜାଣିନୁ—ମୁଁ ଯାହାକୁ ଦେଖେଁ—ଗ୍ରାଡ ଫୁଲେଲ୍ ବୁଦ୍ଧେ—ଏଇ ମୋ ଝିଅ
ସୋଲେନ—ଇଂରେଜୀ ସ୍କୁଲରେ ପାଠ ପଢ଼ୁଚ—ମତେ ଡାଡି ବୋଲି ଡାକେ···

ସୋଲେନ୍ : (ହସି) କଣ ଯେ ତୁମେ କୁହ ଡାଡି !!

ସୋମ୍ : ଫର୍ ହେଭେନ୍‌ସ ସେକ୍ ସୋଲେନ୍—ତୁ ଏମିତ କର୍ କର୍ ହୋଇ ହସନା ।

ସୋଲେନ୍ : Why ? What for ?

ସୋମ୍ : ତୁ ଏମିତ ହସିଲେ ତୋ ମୁହଁଟା ଅସନା ଦେଖାଯାଏ । ତୋ' ଦାନ୍ତର ମାଢ଼
ଗୁଡ଼ାକ ନା···

ସୋଲେନ୍ : ଓ—ସୋମ୍ !!

ଗୋପୀ : ତୁ ତା' ସାଙ୍ଗରେ କାହିଁକି ଭଲା ଏମିତ ଲଗେଇଚୁ ସୋମ୍ ?

ସୋଲେନ୍ : ମୁଁ କହିଦେଉଚ ଡାଡି, ସୋମ୍ ଯଦି ମତେ ଏମିତ ଟିଜ୍ କରିବ—ତେବେ ମୁଁ
ସିଧା ଲଙ୍ଗ୍ ଡ୍ରାଇଭରେ ବାହାରିଯିବ । ଏକାବେଳକେ କୋଏମ୍ବାଟୁର୍ ! ସେଠି

ମୋର ଜଣେ ସାଙ୍ଗ ଅଛୁ—ନାନ୍‌ସି ପାର୍ଥସାରଥି । ତାର ପାଖରେ ରହିସିବ···
ଆଉ ଏଠିକ ଜମା ଆସିବ ନାହିଁ···ନେଭର୍ ।

ଗୋପୀ : (ହସି) ଆ—ଆ' ମା—ମୋ ପାଖକୁ ଆ । ସୋମ୍, ତୁ ବ ମୋ ପାଖକୁ ଆ ।
ବହେଁ ଏଇଠି ମୋ ପାଖରେ ଠିଆହୁଅ । ହଁ, ମୁଁ ଗୁଣ୍ଡ ହଳଦୀ ବ୍ୟବସାୟ
କରୁଥିବାବେଳେ ତମ ବହିଁଙ୍କର ଜନ୍ମ ।

ସୋମ୍ : ବାବା, ପୁଣି ସେଇ ଗୁଣ୍ଡ ହଳଦୀ !

ଗୋପୀ : ଶୁଣ ପୁଅ—ମୋ କଥା ଶୁଣ । ବୋଉ ତମର ଆଜ ସେପାଣରେ । ଖାଲି ଶ୍ରଦ୍ଧାରେ
ସେ ତୋ ନାଁ ଦେଲା ଶମ୍ଭୂଆ—ଆଉ ମୋ ମା' ନାଁ-ସୁଲି···ଶମ୍ଭୂଆ—ସୁଲି !

ସୋମ୍ : ଉଁ—ବାବା·!

ସୋଲେନ୍ : ଉଁ—ଡାଡ଼ !

ଗୋପୀ : ସତେ ଏକା—ଶମ୍ଭୂଆ—ସୁଲି; ଖାଲି ସୁନ୍ଦର ନାଁ-ଦଓଟି ! ଭଗବାନ ଦୟାକଲେ
—ଭାଗ୍ୟ ବଦଳିଲା । ତୁ ଇସ୍କୁଲ କଲେଜରେ ପାଠ ପଢ଼ିଲୁ । ଶମ୍ଭୂଆରୁ ତୋ ନାଁ
ବଦଳି ହେଲା ସୋମ୍ । ଆଉ ତୁ ଇଂରେଜୀ ସ୍କୁଲରେ ପାଠ ପଢ଼ି ସୁଲିରୁ ହେଲୁ
—ସୋଲେନ୍ । ତୁ ଡାକିଲୁ "ବାବା"—ତୁ ଡାକିଲୁ "ଡାଡ" । (ହସୁଥାନ୍ତି)

ସୋଲେନ୍ : (ଖୁବ୍ ଖୁସିରେ) ଇଏସ୍···ୟୁ ଆର୍ ମାଇଁ ଡ଼ିୟାରେଷ୍ଟ ସୁଇଟେଷ୍ଟ ଡାଡ଼ ।

ଗୋପୀ : ଏଁ, କଣ ଗୁଡ଼ାଏ ଏତେ କହିଗଲୁ ମା'—ମୁଁ ବୁଝିପାରିଲି ନାହିଁ । ଯେଉଁସବୁ
ବ୍ୟବସାୟରେ ମୁଁ ହାତ ଦେଇଚ ସେଥିରେ ଏ ସବୁ ଆଦବ୍ କାଇଦା ଅବଶ୍ୟ
ଦରକାର । ହେଲେ ମୋ ସାଙ୍ଗରେ କଥା କହିଲାବେଳେ ତୁ ସିନା ପଦେ ଅଧେ
ଇଂରେଜୀ କଥା କହିଲେ ମୁଁ ବୁଝିବି—ଏମିତ ଲମ୍ବେଇ ଦେଲେ ମୋ ବୁଦ୍ଧି
ବିଦ୍ୟା ଯେ ଖତମ୍ ! (ସମସ୍ତେ ହସିଉଠିଲେ)

ସୋମ୍ : ଏଇ ବାବା, ମୁନ୍‌ଲାଇଟ୍ ହୋଟେଲର ଲୋକ ଆସିଲାଣି । କାଟାଲଗ୍‌ର ଅର୍ଡର
ଡାକୁଇ ଦଆହବ ନା ?

ଗୋପୀ : ହଁ, କାହିଁ ସେ ?

ସୋମ୍ : ଏଇ, ଅଫିସ୍ ରୁମ୍‌କୁ ଗଲାଣି ।

ଗୋପୀ : ଆଚ୍ଛା—ଆଚ୍ଛା, ତୁ ଆ' ମୋ ସାଙ୍ଗରେ । ତୁ ଆ' ମା' ସୋଲେନ୍ ! ଭଦ୍ରଲୋକ
କେଇଜଣ ଆସିବେ—ଖାଇବା ପିଇବାରୁ ଯେମିତ ସବୁ କଥା ସେ ବୁଝିନେଇ
ପାରବେ—ସେଇ ବନ୍ଦୋବସ୍ତ କରିବାକୁ ପଡ଼ିବ···ଆ ।

[ ସମସ୍ତଙ୍କର ପ୍ରସ୍ଥାନ । ଟିକଏ ପରେ ସେ ଘରକୁ ଆସିଲେ ଶ୍ରୀକାନ୍ତ, ରଙ୍ଗନାଥ ]

ଶ୍ରୀକାନ୍ତ : ହୁଁ···ଦେଖୁଚ ରଙ୍ଗନାଥ ଏ କୋଠରୀକୁ । ଏଇଥିରୁ ଅନେକ କିଛି ଅନୁମାନ
କରିହେବ ।

ରଙ୍କ : କିନ୍ତୁ ଆମେ ଏଠିକି ଆସିଲେ କାହିଁକି ? ଅଫିସ୍ ଘରଟା ତ ସେ ପାଖରେ ରହିଲା ।

ଶ୍ରୀକାନ୍ତ : ଅଫିସ୍ ଘରେ ଆମର କାମ କ'ଣ ? ଆମ କାମ ଏଠି । ମୋର ତ ମନେହେଉଛି କେବଳ ଆମେ ଆସିବୁ ବୋଲି ଏ ଘରକୁ ଏମିତି ଟିପ୍‌ଟପ୍ କରି ରଖାହୋଇଛି ।

ରଙ୍କ : ଘରଟା ଏୟାର୍ କଣ୍ଡିସନ୍‌ଡ୍ ।

ଶ୍ରୀକାନ୍ତ : ନ ହେବ କାହିଁକି ? ଯୋଉଠି ଟଙ୍କା ରୋଜଗାର ଉପରେ କୌଣସି ପ୍ରକାର ଧରାବନ୍ଧା କଣ୍ଡିସନ୍ ନାହିଁ—ସେଠି ଏୟାର କଣ୍ଡିସନ୍ ଅତି ତୁଚ୍ଛ ଘଟଣା ।

ରଙ୍କ : ଗୋଟାଏ କଥା ଭାବୁଥିଲି ।

ଶ୍ରୀକାନ୍ତ : କଣ ?

ରଙ୍କ : ମତେ କାହିଁକି ଟିକିଏ ନର୍ଭସ ବୋଧହେଉଛି ।

ଶ୍ରୀକାନ୍ତ : (ହସିଉଠି) ହେଇଥାଏ ରଙ୍କନାଥ—ଏମିତି—ଏମିତି ହେଇଥାଏ । ଶଶୁରଘରକୁ କ୍ୱାଇଁ ଆସିଲେ ଏମିତି ନର୍ଭସ୍ ବୋଧକରିଥାନ୍ତି ।

ରଙ୍କ : ଯାଃ, କଣ ଏମିତି କହୁଛନ୍ତି !

ଶ୍ରୀକାନ୍ତ : ହଉ, ତୁମେ ଟିକିଏ—ନିଜେ ବଲେ ବୁଝିପାରିବ କଣ ମୁଁ କହୁଛି ।···କିନ୍ତୁ କଥା କଣ ? ସ୍ୱାଙ୍କର କେହି କଣ ଏଠି ଦିଶୁନାହାନ୍ତି ?

ରଙ୍କ : ଏଇ କିଏ ଜଣେ ଆସୁଛି । କେହି ଗୁକର ବାକର ହେବ ବୋଧହୁଏ ?

ଶ୍ରୀକାନ୍ତ : ଟିକିଏ ଶୁଣିବ ଏଣେ ? (ଭିତରକୁ ଲକ୍ଷ୍ୟକରି କହିଲେ । କାଶୀ ଆସିଲା)

କାଶୀ : ସାର୍ !

ଶ୍ରୀକାନ୍ତ : ମିଃ ମହାପାତ୍ର ଅଛନ୍ତି ?

କାଶୀ : ଅଛନ୍ତି ସାର୍—ଅଫିସ୍ ଘରେ ଅଛନ୍ତି ।

ଶ୍ରୀକାନ୍ତ : ଟିକିଏ ଖବର ଦେଇପାରିବ ?

କାଶୀ : ଦେବି ସାର୍—କୁହନ୍ତୁ କଣ କହିବି ?

ଶ୍ରୀକାନ୍ତ : କିଛି କହିବା ଦର୍କାର ନାହିଁ । ଖାଲି ଖବର ଦିଅ ଯେ ଆମେ ଆସିଚୁ ।

କାଶୀ : ସାର୍, ଆପଣଙ୍କ ନାଁ ଟା···

ରଙ୍କ : ନାଁ ଜାଣି ଲାଭ ନାହିଁ—କହିବ ଯାଅ, ଯାହାଙ୍କର ଆଜି ଆସିବାର ଥିଲା ସେ ଆସିଚନ୍ତି ।

କାଶୀ : (ରହି ରହି) କାହାଙ୍କର ସାର୍ ?

ରଙ୍କ : କହିଲି ପରା, ସେକଥା ଜାଣି ଲାଭନାହିଁ । ମିଷ୍ଟର ମହାପାତ୍ରଙ୍କୁ କହି ଦେବ ଯାଅ—ଯାହାଙ୍କର ଆଜି ଆସିବାର ଥିଲା ସେ ଆସିଚନ୍ତି···ବୁଝିଲି, ଯାଅ !

କାଶୀ : ଯାଉଚି ସାର୍···ଯାଉଚି । (କାଶୀର ପ୍ରସ୍ଥାନ)

ଶ୍ରୀକାନ୍ତ : (ହସିଉଠିଲେ)

ରଙ୍କ : ହୃଷୁଚନ୍ଦ୍ର କାହିଁକି ?

ଶ୍ରୀକାନ୍ତ : ଖୁବ ଚମତ୍କାର କହୁଚ ଏକା ରଙ୍କନିଧି··· । କାହାଙ୍କର ସାର୍ ? ନା, ଯାହାଙ୍କର ! ସୁନ୍ଦର !

ରଙ୍କ : ଆଉ କଣ କହୁଥାନ୍ତି ?

ଶ୍ରୀକାନ୍ତ : ନା-ନା—ଠିକ୍ କହୁଚ । ଏତେ ସୁନ୍ଦର ମୁଁ ହୁଏତ କହିପାରି ନ ଥାନ୍ତି । ଆଉ ବୋଧହୁଏ ତମେ ନର୍ଭସ୍ ହବନାହିଁ ।

ରଙ୍କ : ସତ କହୁଚ, ମୁଁ ଏବେବି ନର୍ଭସ୍ ବୋଧକରୁଚ । ଦେଖିଲେ ତ. ଘରର ସାଧାରଣ ଚାକର ସିଏ, 'ଆଜ୍ଞା' ନ କହି କହୁଚ ସାର୍ !

ଶ୍ରୀକାନ୍ତ : କହିବ ତ ! ପଇସା ସାଙ୍ଗେ ସାଙ୍ଗେ ଏମାନେ ଆଦବ୍ କାଏଦାରେ ବି ଖୁବ୍ ଆଗେଇଚନ୍ତି ।

ରଙ୍କ : ଅଥଚ ମାତ୍ର ବର୍ଷେ କେଇଟା ତଳେ ମିଃ ମହାପାତ୍ର ଗୁଣ୍ଡ ହଳଦୀ ବ୍ୟବସାୟ କରୁଥିଲେ ।

ଶ୍ରୀକାନ୍ତ : ଚୁପ୍···ଏଇ ସେମାନେ ଆସିଲେଣି । ( ଗୋପୀନାଥ ଓ ସୋମ୍ ଆସିଲେ ) ନମସ୍କାର ! ( ଗୋପୀନାଥ ଏମାନଙ୍କୁ ଚହ୍ନି ପାରୁନଥାନ୍ତି )

ଗୋପୀ : ନମସ୍କାର । ଆ···ପ···ଣ ?

ଶ୍ରୀକାନ୍ତ : ଆପଣ କୁହନ୍ତୁ···ମୁଁ କିଏ ? କେବେ ଅବଶ୍ୟ ଆମକୁ ଦେଖିନାହାନ୍ତି । ଅନୁମାନ କରି କୁହନ୍ତୁ ।

ଗୋପୀ : ଆପଣ···ଶ୍ରୀକାନ୍ତବାବୁ ?

ଶ୍ରୀକାନ୍ତ : ଠିକ୍ କହିଛନ୍ତି ଆଜ୍ଞା—ମୁଁ ଶ୍ରୀକାନ୍ତ ।

ଗୋପୀ : ଆଉ ଏ ବାବୁ···ରଙ୍କନିଧି ?

ଶ୍ରୀକାନ୍ତ : ହଁ ଆଜ୍ଞା—ଇଏ ରଙ୍କନିଧି ! ( ରଙ୍କ ଗୋପୀନାଥଙ୍କ ପାଦଧୂଳି ନେଲା )

ଗୋପୀ : ଥାଉ—ଥାଉ ବାବା···ହେଇଚ···ଆରେ ସୋମ୍ !

ସୋମ : ବାବା !

ଗୋପୀ : ଇଏ ମୋ ପୁଅ—ସୋମ୍ ।

ଶ୍ରୀକାନ୍ତ : ଜାଣେ ।

ସୋମ୍ : ନମସ୍କାର ।

ଶ୍ରୀକାନ୍ତ ଓ ରଙ୍କ : ନମସ୍କାର ।

ଗୋପୀ : ଆହା, ଠିଆ ହେଇ ରହିଲେ କାହିଁକି ଶ୍ରୀକାନ୍ତ ବାବୁ—ବସନ୍ତୁ···ବସ ବାବା ରଙ୍କନିଧି ! ସୋମ୍ !

ସୋମ୍ : ହଁ । (ଡାକିଲା) କାଶୀ !! (କାଶୀ ଆସିଲା)

କାଶୀ : ସାର୍ !
ସୋମ୍ : କୋଲ୍ ଡ୍ ଡ୍ରିଙ୍କ !
କାଶୀ : ସାର୍ ! (କାଶୀର ପ୍ରସ୍ଥାନ)
ଗୋପୀ : ଅଚ୍ଛା ଶ୍ରୀକାନ୍ତବାବୁ...ଏ ପ୍ରୋଗ୍ରାମ୍‌ଟା ଯେମିତ ସବୁ ଗୋଲମାଲଥା ...ମାନେ...
ସୋମ୍ : ଅପ୍ ସେଟ୍ !
ଗୋପୀ : ହଁ, ସବୁ ଅପ୍ ସେଟ୍ ହୋଇଗଲା । ଆପଣଙ୍କର ଆଜ ଢ'ଟାବେଳେ ଆସିବାର କଥା ଥିଲା—ଆପଣ ଏତେ ଚଞ୍ଚଳ ଗ୍ଲଆସିଲେ କେମିତ ? ଢ'ଟା ବେଳେ ମୁଁ ଷ୍ଟେସନ୍‌କୁ ଗାଡ଼ି ପଠେଇଥାନ୍ତି ।
ଶ୍ରୀକାନ୍ତ : ମୁଁ ବୁଝୁଚ ଅଜ୍ଞା—ପ୍ରୋଗ୍ରାମ୍‌ଟା ଏପାଖ ସେପାଖ ହୋଇଯିବାଦ୍ୱାରା ଆପଣ ହୁଏତ ଟିକଏ ଅସୁବିଧାରେ ପଡ଼ିଚନ୍ତି—ମୁଁ ସେଥିପାଇଁ ଆପଙ୍କଠାରୁ କ୍ଷମା ମାଗି ନଉଚ ।
ଗୋପୀ : ଆରେ ନା—ନା—କ୍ଷମା ଗୋଟାଏ କ'ଣ ? ଆପଣ ଆସିଚନ୍ତି—କ ଭାଗ୍ୟ ମୋର !
ଶ୍ରୀକାନ୍ତ : ଏ କଥା ମୁଁ ମୋଟେ ମାନିବିନାଇଁ ଅଜ୍ଞା ! ଅପଣଙ୍କର ଏଠିକ ଆସିବାର ସୁଯୋଗ ଆମକୁ ମିଳଚ...ଏଇଟା ଅମର ସୌଭାଗ୍ୟ ବୁଝନ୍ତୁ ।
ସୋମ୍ : ଆପଣମାନେ ତ ଟ୍ରେନ୍‌ରେ ଆସି ନ ଥିବେ ?
ଶ୍ରୀକାନ୍ତ : ନା, ମୋର ଜଣେ ବନ୍ଧୁଙ୍କ ସାଥିରେ ଦେଖାହେଲା । ତାଙ୍କର ଗାଡ଼ିରେ ଭୁବନେଶ୍ୱର ପର୍ଯ୍ୟନ୍ତ ଗ୍ଲଆସିଲ । ଭୁବନେଶ୍ୱରରୁ ଏଠିକ ବସ୍ ।
ସୋମ୍ : ସ୍ୟାଡ । ଫୋନ୍ କରିଦେଇଥିଲେ ଭୁବନେଶ୍ୱରକୁ ମୁଁ କାର୍ ପଠେଇଦେଇଥାନ୍ତି ।
ରଙ୍କ : କଛି ଅସୁବିଧା ହେଇନ ତ ! ବସ୍‌ରେ ବେଶ୍ ଆରାମରେ ଆସିଲ୍ ।
ସୋମ୍ : ହେଲେ ବସ୍ ଇଜ୍ ବସ୍ । ମୁଁ ଅବଶ୍ୟ ଅନେକ ଦନ ହେଲା ବସ୍ ଚଢ଼ିନ ।
ରଙ୍କ : ମାନେ ?
ଗୋପୀ : ମାନେ...ବସ୍‌ରେ ଯିବା ଦର୍କାର କଣ ? କାର୍ ଅଛି, ଜପ୍ ଅଛି—ସ୍କୁଟର ଅଛି...
ଶ୍ରୀକାନ୍ତ : ନିଶ୍ଚୟ—ନିଶ୍ଚୟ—ଆପଣମାନଙ୍କର ବସ୍‌ରେ ଯିବାର ଦର୍କାର ବା କ'ଣ ?
ରଙ୍କ : ହେଲେ ଏ ଲାଇନ୍‌ର ବସ୍‌ଗୁଡ଼ାକ ଖୁବ୍ ଭଲ ।
ସୋମ୍ : ତଥାପି ବସ୍ ତ ଆଉ କାର୍‌ର ପ୍ଲେଜର୍ ଦବନ ?
ରଙ୍କ : ତା' ଠିକ୍ !
ଗୋପୀ : ଦେଖାଯାଉ, ଯଦ ଭଗବାନଙ୍କର ବର୍ଦ ଥାଏ, ତା'ହେଲେ ତମେ ବ ଆଉ ବସ୍‌ରେ ଯିବ କାହିଁକ ?
ଶ୍ରୀକାନ୍ତ : ଯା' କହୁଚନ୍ତି ।

ଗୋପୀ : ହଁ; ଶ୍ରୀକାନ୍ତ ବାବୁ, ଆପଣ ଦୁହେଁ ଆସିଲେ ଯେ ? ଆପଣଙ୍କ ସାଥିରେ ଆଉ କିଏ କିଏ ଆସିବାର ଥିଲା ନା ?

ଶ୍ରୀକାନ୍ତ : ଥିଲା, ହେଲେ ଏତେ କହନ୍ତୁ ତ, ଆପଣ କ'ଣ ସେଥିରେ ଖୁସି ହେଉଥାନ୍ତେ ? ...ଉଠିବାର ଥିଲେ ତ ପଦେପଦେକରେ କଥା ଉଠିଯିବ—ଏତେ ଲୋକ ଆସିବାର ଦର୍କାର କ'ଣ ? ରଘୁଦାସଙ୍କୁ ମୁଁ ସେଇଆ କହିଲି । ତଥାପି ତାଙ୍କ ମନ ଖରାପ । ଆମେ ଦଶ ପାଞ୍ଚ ଜଣ ଆସିଥିଲେ, ଆସିବାଟା କୁଆଡ଼େ ଆସିବାଭଳିଆ ହୋଇଥାନ୍ତା ।

ସୋମ୍ : ମାନେ ସେଣ୍ଟିମେଣ୍ଟାଲ୍ ।

ଗୋପୀ : (ହସିଉଠି) ରଘୁ ଦାସଙ୍କ କଥା ସେମିତି ।...ସେ ବିଚରା ନିଜେ ଯାହା ଆସି ପାରିଲେନି !

ଶ୍ରୀକାନ୍ତ : ଜାଣିଥିବେ ତ, ସେ ବଡ଼ ଅସୁବିଧାରେ ପଡ଼ିଯାଇଛନ୍ତି ।

ଗୋପୀ : ଜାଣେ । ସବୁକଥା ଜଣେଇ—ଦଶଥର କ୍ଷମା ମାଗି ସେ ମୋ ପାଖକୁ ଚିଠି ଲେଖିଛନ୍ତି । ( କାଶୀ ସର୍ବତ୍ ନେଇ ଆସିଲା । )

ସୋମ୍ : ଏକ୍‌ସେଲେଣ୍ଟ୍ ମି...କାଶୀ, ରଖ ଏଠି । (ସର୍ବତ ରଖି କାଶୀ ଚାଲିଗଲା)

ଶ୍ରୀକାନ୍ତ : ସର୍ବତ୍ ?

ଗୋପୀ : ସର୍ବତ୍ ଠିକ—ଅବଶ୍ୟ ଲେମ୍ବୁ କ ଦହି ସର୍ବତ୍ ପରି ନୁହେଁ ।

ଶ୍ରୀକାନ୍ତ : (ଖାଇ) ମୁଁ ତ ଭାବୁଚି ଏ ଆଦୌ ଆମ ଏଠାକାର ଜିନିଷ ନୁହେଁ ।

ସୋମ୍ : ଏକ୍‌ଜାକ୍ଟ୍‌ଲି ! ଜାଣିଥିବେ ତ ଦିଲ୍ଲୀରେ ସେଇ ଯୋଉ ନୂଆ ହୋଟେଲ୍‌ଟା ଗତବର୍ଷ ଖୋଲିଚି—ହସ୍ତିନାପୁର—ଏକୋଇଣି ମହଲ—ଏଗାର ଶହ ସୁଟ୍—

ରଙ୍କ : ଆପଣ ଦିଲ୍ଲୀ ଗଲେ ସେଇ ହୋଟେଲରେ ରହନ୍ତି ସରୁ ?

ଗୋପୀ : ହଁ, ସୋମ୍ ସେଇଠି ରହେ ।...ସେ ହୋଟେଲ୍‌ର ଗୋଟାଏ ପୁଷ୍ଟାରାକୁ ଖୁବ୍ ଦାମିକା ଗୋଟାଏ ଜର୍ମାନ ଘଣ୍ଟା—ବଜାରରେ ସେ ଘଣ୍ଟା ଆପଣ ପାଇବେନାହିଁ ...ସେଇ ଘଣ୍ଟା ଦେଇ ସୋମ୍ ଆମର ଏମିତି କେତେଗୁଡ଼ାଏ ପ୍ରିପାରେସନ୍ ଶିଖି ଆସିଚି ।...କୁହନ୍ତୁ ଶ୍ରୀକାନ୍ତବାବୁ—ଏ ଜିନିଷଙ୍କ କେମିତି ହୋଇଚି ?

ଶ୍ରୀକାନ୍ତ : ଅମୃତ—ସତେ ଯେମିତି ଆମେ ଏଠି ଅମୃତ ପାନ କରୁଚୁ ।...ବାସ୍ତବିକ୍ ହୋଟେଲର ନାଁଟା ଯେମିତି, ଏ ପାନୀୟ ବି ସେମିତି ଅପୂର୍ବ ।

ସୋମ୍ : ଧନ୍ୟବାଦ !

ଶ୍ରୀକାନ୍ତ : ହଁ ଶ୍ରୀଯୁକ୍ତ ମହାପାତ୍ର—ଆମ କଥାଟା ଟିକିଏ ଆପଣଙ୍କୁ ଜଣାଇ ଦିଏ । ରଘୁଦାସ ତ ସବୁ କଥା କହିଥିବେ !

ଗୋପୀ : କହିଛନ୍ତି ।

ଶ୍ରୀକାନ୍ତ : ରଙ୍କର ବାପା ମୋର ଅତି ଆପଣାର ବନ୍ଧୁ ଥିଲେ । ତାଙ୍କର ମରିବାର ଆଗରୁ ଧନକଷ୍ଟ ହେଲା । ସେଇ ଦିନଠୁଁ ରଙ୍କର ଭାର ପଡ଼ିଲା ମୋ ଉପରେ । ସେଥିପାଇଁ ଆଜ ଆପଣଙ୍କର ଏଠିକି ବି ମତେ ତା' ସାଥିରେ ଆସିବାକୁ ପଡ଼ିଲା ।

ଗୋପୀ : ମୁଁ ଯାହା ଜାଣେ—ଆପଣ ତା'ର ଗୁରୁ । ଆପଣ ନ ଆସି ଆଉ ଆସନ୍ତା କିଏ ?

ଶ୍ରୀକାନ୍ତ : ହଁ, ଶ୍ରୀଯୁକ୍ତ ମହାପାତ୍ର—ଆଜି ଆମକୁ ଫେରିଯିବାକୁ ପଡ଼ିବ । ସେଥିପାଇଁ ମୋର ଅନୁରୋଧ...

ଗୋପୀ : କେବେ ନୁହେଁ, କେବେ ନୁହେଁ—ଆପଣଙ୍କର ଏ ଅନୁରୋଧଟି ମୁଁ ମୋଟେ ରକ୍ଷା କରିପାରିବି ନାହିଁ । ତେବେ ଅସଲ କଥାଟା ତଞ୍ଚଲ ତୁଟିଯାଉ, ଏଥିରେ ମୁଁ ରାଜି । ବର୍ତ୍ତମାନ କୁହନ୍ତୁ ଆପଣଙ୍କ କଥା ।

ଶ୍ରୀକାନ୍ତ : ମୋ' କଥା ?

ଗୋପୀ : ହଁ, କୁହନ୍ତୁ । ଆପଣ ବରପକ୍ଷ—ଆପଣଙ୍କର ଦାବୀ କ'ଣ—କ'ଣ ଆପଣ ଚାହାନ୍ତି—କୁହନ୍ତୁ ।

ଶ୍ରୀକାନ୍ତ : କଣ କହିବ ?

ଗୋପୀ : (ହସିଉଠି) ବାଃ, ଭଲ କଥା ତ ! ଆପଣଙ୍କ କଥାଟା ଓଲଟି ମୁଁ ଆପଣଙ୍କୁ କହିବି ?

ଶ୍ରୀକାନ୍ତ : ଦେଖନ୍ତୁ—ବାହାଘର କେବେ ହେବ, କୋଉଠି ହେବ—ଏମିତି କେତେଟା କଥା ଛଡ଼ା ମୋର ଆଉ ଏଠି କିଛି କହିବାର ଅଛି ବୋଲି ମୁଁ ଭାବୁନି ।

ଗୋପୀ : ଆପଣ—ଆପଣ ଖୁବ୍ ସରଳ ଲୋକ ମୁଁ ଦେଖୁଚି ଶ୍ରୀକାନ୍ତବାବୁ !

ସୋମ୍ : ସରଳ ସେ ନକ୍କେବେ କାହିଁକି ମୁଁ ବୁଝିପାରୁନି ବାବା ! ଆପଣ ଯୋଉ ଉମାଣ୍ଡ—ଯୋଉ ଦାବୀ କଥା କହିଲେ, ସେ ସବୁ ଦାବୀ ଆମ ପାଖରେ ଉଠେଇବାର ଯେ କିଛି ମାନେ ହୁଏନା—ଏ କଥା କଣ ଶ୍ରୀକାନ୍ତବାବୁ ବୁଝିନାହାନ୍ତି ?

ଗୋପୀ : ତଥାପି ସୋମ୍—ଏ କଥାରେ ଏମିତି ଉପରେ ଉପରେ ଭାସିଯିବା ଠିକ୍ ହେବନାହିଁ । ସେମାନେ ଏ ଯାଏ ମୋ ମା'କୁ ଦେଖିନାହାନ୍ତି । ଆରେ, ମୋ ମା' ତ ଏଇ ଆସିଲାଣି ! (ସୋଲେନ୍ ଆସିଲା । ହାତରେ ଗୋଟାଏ ମସଲା ପ୍ଲେଟ୍)

ସୋଲେନ୍ : ଗୁଡ୍ ମର୍ଣ୍ଣିଂ every body.      (କେତେ ମୁହୂର୍ତ୍ତପାଇଁ ଧମଗ୍ରେ ନୀରବ)

ରଙ୍କ : (ଧୀର ଗଳାରେ) ଗୁଡ୍ ମର୍ଣ୍ଣିଂ !

ସୋଲେନ୍ : ମୁଁ ଆପମୋନଙ୍କ ପାଇଁ କଫି ଆଣିଥାନ୍ତି; କିନ୍ତୁ ଆପଣମାନେ ତ କୋଲଡ୍ ଡ୍ରିଙ୍କ ପ୍ରିଫର୍ କଲେ ।

ଶ୍ରୀକାନ୍ତ : ହଁ ମା, ଆମେ ଖୁବ୍ ଚମତ୍କାର ସର୍ବତ୍ ଖାଇଚୁ, କଫି ନ ହେଲେ ଚଳିବ ।

ସୋଲେନ୍ : ଏଇ ନିଅନ୍ତୁ ମସଲା—ନିଅନ୍ତୁ ।

ଶ୍ରୀକାନ୍ତ : ହଁ । ବାବ୍ବା ! ଏ କେତେ ପ୍ରକାର ମସଲା ଏଥିରେ ଅଛି ! (ମସଲା ନେଲେ)

ଗୋପୀ : ସ୍ୱାଦ ଖାଲି ମସଲା ନ କହି ମସଲାର ମିକ୍ସ୍‌ଚର କହିଲେ ଚଳିବ ଶ୍ରୀକାନ୍ତବାବୁ !
ଶ୍ରୀକାନ୍ତ : (ହସି) ଯା' କହୁଛନ୍ତି !
ସୋଲେନ୍ : (ରଙ୍କକୁ) ନିଅନ୍ତୁ—ଆପଣ ମସଲା ନିଅନ୍ତୁ । (ରଙ୍କର ଇତସ୍ତତଃ ଭାବ ଦେଖି)
କଣ, ମସଲା ଖା'ନ୍ତି ନାହିଁ ?
ରଙ୍କ : ନା, ନା, ଖାଏନାହିଁ କାହିଁକି ? ଖାଏ !
ସୋଲେନ୍ : ତା'ହେଲେ ନିଅନ୍ତୁ । (ରଙ୍କ ମସଲା ନେଲା । )
ରଙ୍କ : Thanks.
ସୋଲେନ୍ : No mention please !
ଗୋପୀ : ଆପଣମାନେ କେହି ପାନ ଖାନ୍ତି ନାହିଁ ତ ?
ଶ୍ରୀକାନ୍ତ : ନା, ନା, ଆମେ କେହି ପାନ ଖାଉନା । ଆଉ ଏ ମସଲା ପରେ ପାନର ଦର୍କାର
କଣ ?
ସୋଲେନ : ଡାଡ଼ !
ଗୋପୀ : ହୁଁ, ବସ ମା'—ବସ୍ ଏଠି । (ସୋଲେନ୍ ବସିଲା) ହଁ ଶ୍ରୀକାନ୍ତବାବୁ, ମୋ କଥାଟା
ମୁଁ ଆପଣଙ୍କୁ କହୁଥିବି । ଜାଣିଛନ୍ତି ତ ମୁଁ ବ୍ୟବସାୟୀ ଲୋକ । ପୂର୍ବେ ଯିଏ
ବ୍ୟବସାୟ କରୁଥିଲା ତା'ର ପିଲାମାନଙ୍କ ପଢ଼ାପଢ଼ି ପାଇଁ ମୋଟେ ନଜର ନଥିଲା ।
ହେଲେ ଏବେ ଯୁଗ ବଦଳିଗଲାଣି । ଏବେ ବ୍ୟବସାୟ କରିବାକୁ ହେଲେ ଖାଲି
ପାଠପଢ଼ା ତ ନୁହେଁ—ପୁରା ସାହେବୀ ଢଙ୍ଗଢାଙ୍ଗ ହାସଲ କରିବାକୁ ପଡ଼ିବ ।
ସୋମ୍‌କୁ ଦେଖୁଛନ୍ତି ତ ? ଏବେ ଏବେ ବହୁତ ଦେଶ ବୁଲି ବୁଲି ଆସିଛି ।
ଶ୍ରୀକାନ୍ତ : କୁଆଡ଼େ ଯାଇଥିଲ ବାବୁ ?
ସୋମ୍ : ସାରା କଣ୍ଟିନେଣ୍ଟ୍—ଫାର୍ ଇଷ୍ଟ ।
ଗୋପୀ : ଆଉ ମା' ମୋର ଇଂରେଜୀ ସ୍କୁଲରେ ପାଠ ପଢ଼ୁଛି । ସେଇଥିପାଇଁ କହୁଥିଲି
—ମୋ' ପିଲାମାନଙ୍କୁ ଦେଖି—ମୋ' ଘରର ଚଳଣି ଦେଖି—ଆପଣ ଯଦି
ଅନ୍ୟ କିଛି ଭାବୁଛନ୍ତି···ମାନେ···
ଶ୍ରୀକାନ୍ତ : ନା, ନା, ମୁଁ ତ ଠିକ୍ ଏଇଆ ଭାବୁଛି । ବ୍ୟବସାୟ କରୁଛନ୍ତି—ଦେଶୀ ବିଦେଶୀ
ବହୁ ଲୋକଙ୍କ ସହିତ କାରବାର—ଏ ଆଦବ୍ କାଏଦା ନ ରହିଲେ କାହିଁ କେତେ
ପଛରେ ପଡ଼ିଯିବେ ।
ସୋମ୍ : ଏକ୍‌ଜାକ୍‌ଟ୍‌ଲି !
ଗୋପୀ : ଅଚ୍ଛା ଶ୍ରୀକାନ୍ତ ବାବୁ, ଆସନ୍ତୁ, ଆମ ଘରଦ୍ୱାର ଟିକେ ବୁଲି ଦେଖି ଆସିବେ ।
ପିଲାମାନେ ଏଠି ରହନ୍ତୁ । ଯୁଗ ତ ତାଙ୍କର—ତାଙ୍କକଥା ସେମାନେ ନିଷ୍ପତ୍ତି କରନ୍ତୁ
—ଆମର ସେଥିରେ କଣ ଅଛି । ଆସନ୍ତୁ ! (ହସୁଥାନ୍ତି)
ଶ୍ରୀକାନ୍ତ : (ହସି ହସି) ଚାଲନ୍ତୁ । (ଦୁହିଁଙ୍କର ପ୍ରସ୍ଥାନ । କିଛିକ୍ଷଣ ପାଇଁ ଏ ତିନିହେଁ ନୀରବ)

ସୋମ୍ : କ'ଣ ସବୁ ଚୁପ୍‌ଚୁପ୍ ! ବାବା ପଚ୍ଚ କହିଗଲେ ଆମ କଥା ଆମେ ନଷ୍ଟ କରିବା—ଚୁପ୍‌ଚୁପ୍ କାହିଁକି ?

ରଙ୍କ : କିଛି ଯଦି ମନେନକରନ୍ତୁ—ଆପଣଙ୍କ ନାଁଟା ଜାଣିପାରେ କି ?

ସୋଲେନ୍ : କାହା ନାଁ ?

ରଙ୍କ : ଆପଣଙ୍କ ନାଁ ।

ସୋଲେନ : ମୋ' ନାଁ ଆପଣ ଜାଣିନାହାନ୍ତି ?

ରଙ୍କ : ଜାଣିଥିଲେ ପଚ୍ଚରନ୍ତି କାହିଁକି ?

ସୋଲେନ୍ : How funny !···ସୋମ୍ !

ରଙ୍କ : ସୋମ୍ କଣ କହିବେ ! ମତେ କେହି ନଜଣାଇଲେ ମୁଁ ଜାଣିବି କେମିତି ?

ସୋଲେନ୍ : ଓ—ଶୁଣନ୍ତୁ ତେବେ—ମତେ ସମସ୍ତେ ସୋଲେନ୍ ବୋଲି ଡାକନ୍ତି ।

ରଙ୍କ : (ବିକୃତ ଗଳାରେ) ସୋଲେନ୍ !

ସୋମ୍ : କ'ଣ ହେଲା ? ଆପଣଙ୍କ ଗଳାରେ କଣ ଲାଗିଲା ?

ରଙ୍କ : ନା ! ଆଉ କିଛି ନୁହେଁ । ଏଇ ନାଁଟାଇ ମୋ' ଗଳାରେ ଅଟକିଗଲା ।

ସୋଲେନ୍ : ବାଇ ଜୋଭ, ମୋ' ନାଁଟା ଆପଣ ଠିକ୍ ଉଚ୍ଚାରଣ କରିପାରୁନାହାନ୍ତି !

ରଙ୍କ : ନା, ନା, ଏଥର ଠିକ୍ ଆସିଗଲା । ଶୁଣନ୍ତୁ ମୁଁ କହୁଚି—ସୋଲେନ୍ । ସୋ···ଲେନ୍ (ସ୍ୱର ଲମ୍ବି ଯାଉଥାଏ)

ସୋଲେନ୍ : (ହସି) ବାଟ୍‌ବା ! ଇଏତ ଏକାବେଳକେ ମିଉଜିକାଲ୍ ।

ରଙ୍କ : ମୋ ନାଁ ତ ଆପଣ ପଚ୍ଚାରିଲେ ନାହିଁ ?

ସୋଲେନ୍ : ଜାଣିଚି ।

ରଙ୍କ : ଓ···ମୋର ଏ ରଙ୍କନିଧି ନାଁଟା ଖୁବ୍ ପୁରୁଣାକାଳିଆ ନା ?

ସୋମ୍ : ପୁରୁଣାକାଳିଆ ବୋଲି ଗୋଟାଏ କିଛି ଜିନିଷ ନାହିଁ । ମିଷ୍ଟର୍ ରଙ୍କନିଧି, ଆପଣଙ୍କର ଏଇ ନାଁରୁ ଗୋଟାଏ ଅତି ଚମତ୍କାର ମଡର୍ଣ୍ଣ ନାଁ ବାହାର କରିଯାଇପାରେ ।

ରଙ୍କ : କେମିତି ?

ସୋମ୍ : ଏଇ···ରଙ୍କନିଧିରୁ ନିଧିଟା କାଟି ରଙ୍କ ରହିଲୁ । ରଙ୍କରୁ ର୍ୟାଙ୍କ୍—ର୍ୟାଙ୍କ୍‌ରୁ ରକ୍—ରକ୍‌ରୁ ର୍ୟାକେଟ୍ ।

ସୋଲେନ୍ : ଓ୍ୟାଣ୍ଡରଫୁଲ୍ ।

ସୋମ୍ : ନାଁଟା ଖୁବ୍ ମଡର୍ଣ୍ଣ ହେଇନ ରଙ୍କନିଧିବାବୁ !

ରଙ୍କ : ସତ କହୁଚି—ଏ ନାଁଟା ଶୁଣୁ ଶୁଣୁ ମୁଁ ନିଜେ ଦଶ ପାଞ୍ଚ ଡିଗ୍ରୀ ବେଶୀ ମଡର୍ଣ୍ଣ ହେଇଗଲିଣି । ( ସମସ୍ତେ ହସିଉଠିଲେ )

ରଙ୍କ : ଆଚ୍ଛା···

ସୋଲେନ୍ : ମତେ କହୁଚନ୍ତି ?
ରଙ୍କ : ହଁ । ଆପଣଙ୍କ ପଢ଼ାପଢ଼ି ?
ସୋଲେନ୍ : Not much ! ସିନିଅର, କେମ୍ବ୍ରିଜ୍ ପରେ ବି. ଏ. ଡିଗ୍ରୀ ନେଇଛି—ଉଇଥ୍ ଅନର୍ସ ଇନ୍ ସାଇକଲଜି ।
ରଙ୍କ : ବାବାରେ ! ସାଇକଲଜି !! ସେ ପ୍ରଭାବଟା ମୋ' ଉପରେ ପଡ଼ୁନାହିଁ ତ ?
ସୋମ୍ ଓ ସୋଲେନ୍ : (ହସିଉଠିଲେ)
ସୋମ୍ : ବାଃ ! ଆପଣ ତ ବେଶ୍ ସୁନ୍ଦର ସୁନ୍ଦର କଥା କହିପାରନ୍ତି ?
ସୋଲେନ୍ : ଆପଣ ଏମ୍. ଏ. ରେ ଫାଷ୍ଟକ୍ଲାସ୍ ପାଇଚନ୍ତି ନା ?
ରଙ୍କ : ଫାଷ୍ଟକ୍ଲାସ୍ ଫାଷ୍ଟ ।
ସୋଲେନ୍ : ଏକ୍ସେଲେଣ୍ଟ !
ରଙ୍କ : ଆପ୍ଲାଏଡ୍ ଏକନମିକ୍ସ ।
ସୋଲେନ୍ : ଗୁଡ୍ ।
ରଙ୍କ : ଗୁଡ୍ ଆଉ କଣ ?
ସୋଲେନ୍ : ନାଁ ମୁଁ କହୁଥିଲି···
ସୋମ୍ : ବାଇ ଦ ବାଇ ମିଷ୍ଟର ରାକେଶ୍—I am sorry.
ରଙ୍କ : ନା—ନା—ଦୁଃଖିତ ହୁଅନ୍ତୁ ନାହିଁ ! ମତେ ଆପଣ ସେଇ ରାକେଶ ନାଁରେ ହିଁ ଡାକନ୍ତୁ ।
ସୋମ୍ : ମୁଁ କହୁଥିଲି—ଆପଣ ଆଇ. ଏ. ଏସ୍. ବା ସେମିତି କିଛି ପରୀକ୍ଷା ଦବାକୁ ଠିକ୍ କରିଚନ୍ତି ପରା ?
ରଙ୍କ : ଭୁଲ—ଆପଣ ଭୁଲ କଥା ଶୁଣିଚନ୍ତି । ମୁଁ ଆଦୌ ଚାକିରି କରିବି ନାହିଁ ।
ସୋମ୍ : ତେବେ ?
ରଙ୍କ : ବିଜନେସ୍ ।
ସୋମ୍ : ଆପଣ ବିଜନେସ୍ କରିବେ ?
ରଙ୍କ : ହଁ ।
ସୋମ୍ : କି ବିଜନେସ୍ ?
ରଙ୍କ : ତାର ନିଷ୍ପତ୍ତି ମିଷ୍ଟର ମହାପାତ୍ର କରିବେ ।
ସୋଲେନ୍ : ଆପଣ ମୋ ଡାଡିଙ୍କ କଥା କହୁଚନ୍ତି ?
ରଙ୍କ : ହଁ ।
ସୋଲେନ୍ : ଆପଣଙ୍କ କଥା ଆମେ ଠିକ୍ ବୁଝିପାରୁନୁ···ନା ସୋମ୍ ?
ସୋମ୍ : ଏକ୍‌ଜାକ୍‌ଟଲି ।
ରଙ୍କ : ଶୁଣନ୍ତୁ ମୁଁ କହୁଚି । ପୂର୍ବେ ଆମେ ଥିଲୁ ଖୁବ୍ ବଡ଼ ଜମିଦାର । ସେ ବିଭବ ବର୍ତ୍ତମାନ ଆଉ ନାହିଁ; କିନ୍ତୁ ସେ ବିଭବର ସୁନେଲି ସ୍ୱପ୍ନରୁ ମୁଁ ମୁକ୍ତ ନୁହେଁ—

କିମ୍ବା ମୁକ୍ତ ହବାକୁ ଚାହେଁନା । ମୁଁ ଚାହେଁ ସେ ସ୍ୱପ୍ନକୁ ସତ୍ୟରେ ପରିଣତ କରିବ । ଚାକିରି କରି ମାସକୁ ମାଡ଼ କେଇ ଶହ ଟଙ୍କା ରୋଜଗାର କଲେ ମୋ ଲକ୍ଷ୍ୟ ସ୍ଥାନରେ ମୁଁ ପହଞ୍ଚି ପାରିବ ନାହିଁ । ସେଇଥିପାଇଁ ମୁଁ କରିବ ବିଜିନେସ୍ । ଆଜିର ଏ ଜଡ଼ବାଦୀ ଦୁନିଆରେ ଭିକ୍ଷାପାତ୍ର ଧରି ମୁଁ ବଞ୍ଚିରହିବାକୁ ଚାହେଁନା । ମୁଁ ପୁଣି ଫେରିଯିବ ମୋ ପୂର୍ବର ବିଭବ ଭିତରକୁ । ହଜାର ହଜାର ଲକ୍ଷ ଲକ୍ଷ ଟଙ୍କା ମୋର ଦରକାର । ସେ ଟଙ୍କା ଧଳା ବଜାରରୁ ଆସୁ; ନ ହେଲେ କଳା ବଜାରରୁ ଆସୁ । ( ରଙ୍କନିଧିର ମୁହଁରେ ଦୃଢ଼ତାର ବ୍ୟଞ୍ଜନା )

ସୋମ୍ : (ଆଶ୍ଚର୍ଯ୍ୟହୋଇ) ମିଷ୍ଟର ଚକ୍ରେଶ୍ । (କାଶୀ ଆସିଲା)

କାଶୀ : ସାର୍ !

ସୋମ୍ : କ'ଣ କାଶୀ ?

କାଶୀ : ଫୋନ୍ ଆସିଛି ।

ସୋମ୍ : ମୋର ଫୋନ୍ ?

କାଶୀ : ନା—ଦେଇଙ୍କର ।

ସୋଲେନ୍ : ଓ : Please excuse me. (ଚାଲିଗଲା)

ରଙ୍କ : ମୋ କଥାରେ ବୋଧହୁଏ ଆପଣ ସନ୍ତୁଷ୍ଟ ହୋଇ ପାରିନାହାନ୍ତି ମିଷ୍ଟର ସୋମ୍ ! (ସୋମ୍ ନୀରବ) କ'ଣ କିଛି କହୁନାହାନ୍ତି ?

ସୋମ୍ : କଣ କହିବ ମୁଁ ଠିକ୍ ବୁଝିପାରୁନି ।

ରଙ୍କ : ସୋଲେନ୍ ପରି ଝିଅ—ଆପଣମାନେ ହୁଏତ ଚାହାଁନ୍ତି—ସେ ଜଣେ ନାମଜାଦା ଅଫିସରଙ୍କୁ ବିବାହ କରି—

ସୋମ୍ : ନା—ନା, ସେ ପ୍ରଶ୍ନ ମୋଟେ ଉଠୁନି; କିନ୍ତୁ ଆପଣ ମତେ ପ୍ରଥମେ କ୍ଷମାକରନ୍ତୁ ।

ରଙ୍କ : କ୍ଷମା ? କାହିଁକି ?

ସୋମ୍ : ଆପଣଙ୍କୁ ନଦେଖି, ଆପଣଙ୍କ କଥା କିଛି ନଜାଣି ମୁଁ ଆପଣଙ୍କ ବିଷୟରେ ଗୋଟିଏ ଭିନ୍ନ ଧାରଣା କରିଥିଲି । କିନ୍ତୁ ବର୍ତ୍ତମାନ ଦେଖୁଛି, ମୁଁ ଆପଣଙ୍କୁ ଯାହା ଭାବିଥିଲି —ଆପଣ ତା' ନୁହଁନ୍ତି ।

ରଙ୍କ : ମୁଁ ଠିକ୍ ବୁଝି ପାରିଲିନି ଆପଣଙ୍କ କଥା ।

ସୋମ୍ : ସୋଲେନ୍ ସହିତ ଆପଣଙ୍କର ବାହାଘର ହେଲେ ସବୁଠୁ ବେଶି ଖୁସି ହେବି ମୁଁ । ଆଚ୍ଛା; ଛାଡ଼ନ୍ତୁ ସେକଥା । ଏଇ ଯାହା ସବୁ ଆପଣ କହିଲେ, ସେ ସବୁ କଣ ଆପଣଙ୍କ ମନର କଥା ?

ରଙ୍କ : ମନର କଥା ନ ହେଲେ ଲୋକ ମନ ଖୋଲି କିଛି କହିପାରେନା । ଆଉ ମୋର ଦୃଢ଼ ଧାରଣା···ମୁଁ ଏଠି ଯାହା କହିଛି, ମନ ଖୋଲି କହିଛି ।

ସୋମ୍ : ଗୁଡ୍···କିନ୍ତୁ ବିଜିନେସ୍ ଖାଲି ଟଙ୍କାରେ ହୁଏନା—ସେଥିପାଇଁ ମୋଟା ବୁଦ୍ଧି ଦର୍କାର ।

ରଙ୍କ : ଅପଣ ମନେ ପରୀକ୍ଷା କରିବାକୁ ଚାହୁଁଚନ୍ତି ? ହୁଏତ ଶୁଣି ଖୁସି ହେବେ ଯେ ଏ ପରୀକ୍ଷା ମୁଁ ଦେଇସାରିଚି । (ଗୋପୀ ଓ ଶ୍ରୀକାନ୍ତ ଆସିଲେ)

ଗୋପୀ : ଆରେ ସୋମ୍—ଶୁଣୁଚୁ, ଶ୍ରୀକାନ୍ତ ବାବୁ କଣ କହୁଚନ୍ତି ? ରଙ୍କନିଧି ବ୍ୟବସାୟ କରିବ ।

ସୋମ : ଶୁଣିଚି—ତାଙ୍କରି ମୁହଁରୁ ବର୍ତ୍ତମାନ ଶୁଣିଲି ।

ଗୋପୀ : ତୁ କଣ କହୁଚୁ ?

ସୋମ୍ : ମୋ' କଥା ମୁଁ ତାଙ୍କୁ କହିଦେଇଚି । ତାଙ୍କ ଭିତରେ ଯେ ଏତେ ବଡ଼ ପ୍ରତିଭା ଅଛି, ଏକଥା ମୁଁ ଆଗରୁ ଜାଣିପାରିନଥିଲି ।

ଗୋପୀ : ଶୁଣନ୍ତୁ ଶ୍ରୀକାନ୍ତ ବାବୁ, ଅପଣଙ୍କ ତରଫରୁ ଦାବୀ ଥାଉ ନଥାଉ ମୋ ଝିଅ କ୍ୱାଇଁକି ମୁଁ ଯାହା ଦବାର କଥା ଦେବି । କୋଠା, ଗାଡ଼ି, ଦାମୀ ଗହଣାପତ୍ର— କ୍ୱାଇଁ ଭଲ ଚାକରି କରି ଭଲରେ ରହିବେ—ଜୀବନସାରା. ସେମାନଙ୍କର ଚଳିବାରେ କିଛି ଅସୁବିଧା ହେବନାହିଁ—ଏସବୁ ନିଶ୍ଚୟ ମୋର ଦେଖିବାର କଥା; କିନ୍ତୁ ଆପଣ ଯାହା କହୁଚନ୍ତି—

ଶ୍ରୀକାନ୍ତ : ଅପଣ ହିଁ କୁହନ୍ତୁ—ଶ୍ୱଶୁର ବୋଲି ଆପଣ ତାକୁ ଯେତେ କୋଠାବାଡ଼ି ଗାଡ଼ି ମଟର ଦିଅନ୍ତୁ ନା କାହିଁକି, ତା' ମନରେ ସବୁବେଳେ ଏଇ କଥାଟା ଲାଗିରହିଥିବ ଯେ ସେ ଅପଣଙ୍କ ହାତଟେକାରେ ଅଛି । କିନ୍ତୁ ଅପଣଙ୍କ ସାହାଯ୍ୟରେ ସେ ଯଦି ନିଜ ଗୋଡ଼ରେ ନିଜେ ଠିଆହୋଇପାରିଲା, ସେଥିରେ ଅପଣଙ୍କର ଗର୍ବ - ଆଉ ତାର ଅନନ୍ଦ···ନା' କଣ ମିଷ୍ଟର ସୋମ୍?

ସୋମ୍ : ଏକ୍‌ଜାକ୍‌ଟଲି ।

ରଙ୍କ : ମୁଁ ବର୍ତ୍ତମାନ ସୋମ୍‌ଙ୍କୁ କହୁଥିଲି—ମୁଁ ଆଉ କିଛି ଚାହେଁନା । ମୁଁ ଯୋଉ ପ୍ଲାନ କରିଚି ସେଥିରେ ମୁଁ କେବଳ ଚାହେଁ ଅପଣଙ୍କର ଆଶୀର୍ବାଦ—ଆପଣଙ୍କର ସାହାଯ୍ୟ ଆଉ ଉପଦେଶ ।

ଗୋପୀ : ମୁଁ ଭାରି ଖୁସି—ବୁଝିଲେ ଶ୍ରୀକାନ୍ତ ବାବୁ—ମୋ' ବାବାର ଏ କଥା ଶୁଣି···ମୁଁ ଭାରି ଖୁସି । ଆରେ ସୋମ୍ ! ବାବାକୁ ମୋର ନେଇ ଆମ ଘରଦ୍ୱାର ଟିକିଏ ବୁଲେଇ ଦେଖେଇଆଣ ।

ସୋମ୍ : ହ···ଅସନ୍ତୁ ମୋ ସାଙ୍ଗରେ ।

ରଙ୍କ : ଚାଲନ୍ତୁ । (ସୋମ୍ ଓ ରଙ୍କ ଭିତରକୁ ଗଲେ)···

ଗୋପୀ : ଶ୍ରୀକାନ୍ତବାବୁ !

ଶ୍ରୀକାନ୍ତ : କୁହନ୍ତୁ ଆଜ୍ଞା !

ଗୋପୀ : ମୋ' ଜୀବନରେ ଇଏ ଗୋଟାଏ ଯୋଗ ବୋଲି ମୁଁ ଜାଣିପାରୁଚି ।

ଶ୍ରୀକାନ୍ତ : କାହିଁକି ଆଜ୍ଞା, ଆପଣଙ୍କ ଜୀବନରେ ତ ମହା-ମହା ଯୋଗର ଅଭାବ ହେଇନି !

ଗୋପୀ : ନା—ଇଏ ସେମିତ ଏକ ମହାଯୋଗ ବୋଲି ମୁଁ କହିବ । ଆପଣ ବୁଦ୍ଧିକୁ ଦେଖିଲା ପରଠୁ ଏଇ କଥା ମୁଁ ଭାବୁଚି । କି ଚମତ୍କାର ଚେହେରା ଏଇ ରଙ୍କାଧର ! ଯେମିତି ରଜାଘର ପିଲା ।

ଶ୍ରୀକାନ୍ତ : ପ୍ରକୃତରେ ସିଏ ସେମିତି ଉଚ୍ଚ ଷର୍ଣ୍ଣିସ୍ଥ ଘରର ପିଲା । ଜମିଦାରୀ ଯାଇଚି—ଧନ ଯାଇଚି—କିନ୍ତୁ ସେ ତେଜ ସେ ରକ୍ତ ଯିବ କୁଆଡ଼େ ? ସେଇକଥା ତା' ମନରେ ସବୁବେଳେ ଖେଳୁଚି ।

ଗୋପୀ : ଖେଳିବା ଉଚିତ । ସିଂହଛୁଆ କେବେ ଶିଆଳ ହୋଇ ରହିପାରେନା ।

ଶ୍ରୀକାନ୍ତ : ଗୋଟାଏ କଥା ମୁଁ ଆପଣଙ୍କୁ ଏତେ ବେଳ ଯାଏଁ କହିନ ।

ଗୋପୀ : କଣ ?

ଶ୍ରୀକାନ୍ତ : ଆପଣଙ୍କଠୁ କ୍ଷମା ମାଗିନେଇ କହୁଚି । ରଙ୍କର ମା' ପ୍ରଥମେ ଏ ପ୍ରସ୍ତାବରେ ମୋଟେ ରାଜି ହୋଇ ନଥିଲେ । ମାଇପି ଲୋକ ତ—ତାଙ୍କର ପୁଅର ଚିନ୍ତା ଯାଇନ । କିନ୍ତୁ ରଙ୍କ ଜିଦ୍‌ଧରି ବସିଲା ।

ଗୋପୀ : ଜିଦ୍‌ଧରି ବସିଲା ? କାହିଁକି ?

ଶ୍ରୀକାନ୍ତ : ଆପଣ ବୁଝିପାରୁନାହାନ୍ତି କାହିଁକି ?

ଗୋପୀ : (ସ୍ୱଳ୍ପ ହସି) ଓ !

ଶ୍ରୀକାନ୍ତ : ସିଏ ଆପଣଙ୍କୁ ଜାଣିଚି—ସିଏ ଜାଣିଚି ଆପଣଙ୍କ ସୁନାମ, କାର୍ତ୍ତି ଆଉ ବାହା-ଦୁରୀର କଥା ।

ଗୋପୀ : (ଆତ୍ମପ୍ରସାଦସୂଚକ ହସ)

ଶ୍ରୀକାନ୍ତ : ବ୍ୟବସାୟ ତ ବହୁତ ଲୋକ କରୁଚନ୍ତି; କିନ୍ତୁ ଆପଣଙ୍କ ପରି ବିଚକ୍ଷଣ ବ୍ୟବସାୟ-ବୁଦ୍ଧି କେତେ ଲୋକଙ୍କର ଅଛି ?

ଗୋପୀ : ଶ୍ରୀକାନ୍ତବାବୁ ! ଦିନେ ଅତି ସାମାନ୍ୟ ଲୋକ ମୁଁ ଥିଲି । ସିଡ଼ିର ସବା ତଳ ପାହାଚରୁ ଉଠି ମୁଁ ଆଜି ଉପର ପାହାଚରେ ଠିଆହୋଇଚି ।

ଶ୍ରୀକାନ୍ତ : ଆଜ୍ଞା !

ଗୋପୀ : ଦିନେ ମୁଁ ଗୁଣ୍ଡି ହଳଦୀ ବ୍ୟବସାୟ କରୁଥିଲି । ଆଜି ମୁଁ ମୋଟା ସୁନା ବ୍ୟବସାୟୀ । ଏଥିପାଇଁ ମୋର ଲାଇସେନ୍‌ସ୍ ଅଛି । କିନ୍ତୁ ଲୋକେ କହନ୍ତି ମୁଁ ଚୋରା ଅବୈଧ ବ୍ୟବସାୟ କରେ, ସ୍ମଗ୍‌ଲିଂ କରେ···

ଶ୍ରୀକାନ୍ତ : ଲୋକଙ୍କ କଥା ତ···

ଗୋପୀ : ମିଛ ନୁହେଁ—ଏଇଆ କହୁଛନ୍ତି ?

ଶ୍ରୀକାନ୍ତ : ନା, ନା, ମୁଁ ଠିକ୍ ତା କହୁନ ।

ଗୋପୀ : ହେଲେ ମୁଁ କହୁଚି—ଲୋକଙ୍କ କଥା ମିଛ ନୁହେଁ । କିନ୍ତୁ ପ୍ରକୃତ କଥା ଯାହା ଲୋକେ ତା'ର କାଣିଚାଏ ସୁଦ୍ଧା ଜାଣନ୍ତି ନାହିଁ ।

ଶ୍ରୀକାନ୍ତ : (ଆଶ୍ଚର୍ଯ୍ୟାନ୍ୱିତ ହୋଇ) ଆଜ୍ଞା !

ଗୋପୀ : ଜାଣିବାର ବାଟ ରଖିଚି ଯେ ଜାଣିବେ ?

ଶ୍ରୀକାନ୍ତ : ଏଇଟା ତ ବିଚକ୍ଷଣ ବ୍ୟବସାୟୀ-ବୁଦ୍ଧି !

ଗୋପୀ : ଶୁଣନ୍ତୁ…ଶୁଣନ୍ତୁ ମୋ' କଥା…ମୋ' ଘରର ବାହାରଟା ଆପଣ ଦେଖିଲେ ତ ?

ଶ୍ରୀକାନ୍ତ : ଆଜ୍ଞା ।

ଗୋପୀ : କଣ ଦେଖିଲେ ?

ଶ୍ରୀକାନ୍ତ : ଅତି ସାଧାରଣ ଘର ।

ଗୋପୀ : ଆଉ ଭିତରଟା ?

ଶ୍ରୀକାନ୍ତ : ଯେମିତି ଏକ ଗୋଲକଧନ୍ଦା ।

ଗୋପୀ : ମୋ ବ୍ୟବସାୟର ସ୍ୱରୂପଟା ଠିକ୍ ଏମିତି । ଶୁଣନ୍ତୁ ଆଉ ଗୋଟିଏ କଥା—ଶୁଣିଲେ ଆପଣ ହସିବେ । ଆପଣ ତ ଏଇନେ ମୋ' ନିକଟର ଲୋକ ଠିକ୍ ବନ୍ଧୁ—ଆପଣଙ୍କ ପାଖରେ ଆଉ ଲୁଚାଇବି ବା କଣ ? ଶୁଣନ୍ତୁ !

ଶ୍ରୀକାନ୍ତ : କଣ ଆଜ୍ଞା ?

ଗୋପୀ : ଗଲା ବର୍ଷ ମୋ ଉପରେ ଇନ୍‌କମ୍ ଟ୍ୟାକ୍ସ ଧାର୍ଯ୍ୟ କରାଗଲା ।

ଶ୍ରୀକାନ୍ତ : ଅନେକ ଟଙ୍କା ଆପଣଙ୍କୁ ଦବାକୁ ପଡ଼ିଥିବ ତ ।

ଗୋପୀ : ଶୁଣନ୍ତୁ ! ଖୁବ୍ ହିସାବ କିତାବ କରି ସେମାନେ ମୋର ଗଲାବର୍ଷର ଆୟ ଧରିଲେ ଷାଠିଏ ହଜାର ଟଙ୍କା । ସେଇ ଅନୁସାରେ ଟିକସ ଦେଲି; କିନ୍ତୁ ଗଲାବର୍ଷ' ମୋର ନିଟ୍ ଲାଭ କେତେ ଜାଣନ୍ତି ?

ଶ୍ରୀକାନ୍ତ : କେତେ ?

ଗୋପୀ : ଦଶଲକ୍ଷରୁ ଉପର ।

ଶ୍ରୀକାନ୍ତ : ସେମାନେ କିଛି ଜାଣିପାରିଲେ ନାହିଁ ?

ଗୋପୀ : ଜାଣିବାର ବାଟ ରଖିଚି ଯେ ଜାଣିବେ ?

ଶ୍ରୀକାନ୍ତ : ଧନ୍ୟ ଆପଣ । ବାସ୍ତବିକ୍, ଏ ସବୁ କଥା ଆମେ କଳ୍ପନା ସୁଦ୍ଧା କରିପାରିବୁ ନାହିଁ । କିନ୍ତୁ ରଙ୍ଗନିଧି…ତା' ରକ୍ତରେ ଏଇ ସବୁ କଥା ଖେଳୁଚି । ସେ ଆପଣଙ୍କର ପ୍ରକୃତ ଭକ୍ତ । ସବୁବେଳେ କହୁଚି—ସେ ଏମିତି ହଜାର ହଜାର ଲକ୍ଷ ଲକ୍ଷ ଟଙ୍କା ରୋଜଗାର କରିବ—ସେ ଟଙ୍କା ଧଳାବଜାରରୁ ଆସୁ କି କଳାବଜାରରୁ ଆସୁ !

ଗୋପୀ : ଗୁଡ୍ ! ଭେରିଗୁଡ୍ । ମୁଁ ଆଜି ଠିକ୍ ଜାଣିଲି—ରଙ୍ଗ ମୋର ଜ୍ୱାଇଁ ନୁହେଁ—ମୋର ପୁଅ । ସୋମ୍ ଏକା ଏକା ପାରୁନଥିଲା—ରଙ୍ଗ ଏଣିକି ତାକୁ ସାହାଯ୍ୟ କରିବ । ସେ ବିଦ୍ୟା-ବୁଦ୍ଧି ତା'ର ଅଛି ।

ଶ୍ରୀକାନ୍ତ : ସେତିକି ଭରସା ଆପଣ ତାକୁ ଦିଅନ୍ତୁ—ଦେଖିବେ, ଆପଣଙ୍କର ସୁନାମ ସେ ନିଶ୍ଚୟ ରକ୍ଷାକରିବ ।

ଗୋପୀ : ସେ ଭରସା ତା' ଉପରେ ମୋର ଅଛି । ଆଉ ଆପଣ ପ୍ରାୟ ଜାଣିରଖନ୍ତୁ; ସେ ଆମ ଗ୍ୟାଙ୍ଗ୍‌ର ଜଣେ ମେମ୍ବର ହୋଇ ରହିଲା !

ଶ୍ରୀକାନ୍ତ : ଗ୍ୟାଙ୍ଗ ?

ଗୋପୀ : ଗ୍ୟାଙ୍ଗ୍ ବୃଷ୍ଟିନାହାନ୍ତ—ଗ୍ୟାଙ୍ଗ୍ !

ଶ୍ରୀକାନ୍ତ : ଓ···ବୁଝିଲି ।

ଗୋପୀ : ଅବଶ୍ୟ ତା' ସ୍ୱଭାବରୁ ତାକୁ ଥରେ ବାହାରକୁ ଯିବାକୁ ପଡ଼ିବ ।

ଶ୍ରୀକାନ୍ତ : ବାହାରକୁ ? କୁଆଡ଼େ ? (ଏତିକିବେଳେ ସୋମ୍ ଓ ରଙ୍କ ଆସିଲେ)

ସୋମ୍ : ବ୍ୟାଙ୍ଗ୍ କକ୍ !

ଗୋପୀ : ବାବାଙ୍କୁ ମୋର ସବୁକଥା ତ'ହେଲେ କହିଲଣି ସୋମ୍ ?

ସୋମ୍ : ହଁ ।

ଶ୍ରୀକାନ୍ତ : କିନ୍ତୁ ସେ ବ୍ୟାଙ୍ଗ୍‌କକ୍ ଯିବ କାହିଁକି ?

ଗୋପୀ : ଏଇ ଯେ ଟଙ୍କା ରୋଜଗାର ହଉଚି, ରଖିବୁ କୋଉଠି ? ବ୍ଲାକ୍‌ମନି ବୋଲି ସରକାର ସବୁ ଉଠେଇନେବ । ସେଥିପାଇଁ ବ୍ୟାଙ୍ଗ୍‌କକ୍ ଆଉ ଏଡେନ୍—ଏଇଠି ଦୁଇଟା ପ୍ରାଇଭେଟ ବ୍ୟାଙ୍କରେ ଆମ ଟଙ୍କା ସୁନା ସବୁ ରହୁଚି । ତା'ଛଡ଼ା କଲିକତା ବଡନ୍ ଷ୍ଟ୍ରୀଟ୍‌ରେ ଗୋଟାଏ ପାଞ୍ଚତାଲା ଘର ମୁଁ କିଣିଚି—ଅବଶ୍ୟ ବେନାମୀରେ—କିନ୍ତୁ କାଗଜପତ୍ର ସବୁ ମୋ' ପାଖରେ । ଗ୍ୟାଙ୍ଗ୍‌ର କଲିକତା ଅଫିସ୍ ସେଇ ଘରେ ହୋଇଚି—ରଙ୍କ ତ ସେଇଠି ରହିବ !

ଶ୍ରୀକାନ୍ତ : ବଡନ ଷ୍ଟ୍ରିଟ୍‌ର କୋଉ ଘରଟା କୁହନ୍ତୁ ତ ?

ସୋମ୍ : 121 ବଡନ୍ ଷ୍ଟ୍ରୀଟ୍ ।

ଶ୍ରୀକାନ୍ତ : ଓ···

ରଙ୍କ : ମୋର ଏଠି ଜଣେ ବନ୍ଧୁଙ୍କ ପାଖକୁ ମୁଁ ଟିକେ ଟେଲିଫୋନ୍ କରିବି ।

ସୋମ୍ : ଟେଲିଫୋନ୍ ! ଏଇ ସେ ପାଖ ଘରେ ଅଛି ।

ରଙ୍କ : ଜାଣେ । (ଭିତରକୁ ଗଲା)

ସୋମ୍ : ଏଇ, ମୁନ୍‌ଲିଟ ହୋଟେଲର ଲୋକ ପୁଣି ଆସିଲେଣି—ମୁଁ ଯାଏ । (ପ୍ରସ୍ଥାନ)

ଶ୍ରୀକାନ୍ତ : ମିଷ୍ଟର ମହାପାତ୍ର ! ରଙ୍କ ମୋର ପୁଅ ପରି । ମୁଁ ଆପଣଙ୍କ ହାତ ଧରି ଅନୁନୟ କରୁଛି ସେ ଯେମିତି ଠକିନଯାଏ ।

ଗୋପୀ : ଆପଣ ମୋତେ ଅବିଶ୍ୱାସ କରୁଛନ୍ତି ?

ଶ୍ରୀକାନ୍ତ : ନା-ନା—ଏକଥା କହିବାର ଦୁଃସାହସ ମୋର ନାହିଁ । ମୁଁ ଖାଲି କହୁଥିଲି—ବାପଛେଉଣ୍ଡ ପିଲା ସେ—ଆପଣଙ୍କ ପାଦତଳେ ବସି ସେ ଯେମିତି ମଣିଷ ହେବ । (ଶ୍ରୀକାନ୍ତ କଥାରେ ଗୋପୀନାଥ ଅଭିଭୂତ ହୋଇପଡ଼ିଥାନ୍ତି)

ଗୋପୀ : ମୋ ଶୋଇବାଘର ପାଖ ଘରଟା ଦେଖିଚନ୍ତି ତ ?
ଶ୍ରୀକାନ୍ତ : ଦେଖିଚି—କିନ୍ତୁ କବାଟ ବନ୍ଦଥିଲା ।
ଗୋପୀ : ଜାଣନ୍ତି କେତେ ସୁନା ସେ ଘରେ ଅଛି ?
ଶ୍ରୀକାନ୍ତ : ସୁନା !
ଗୋପୀ : ଏଇ ହାତରେ ମୁଁ ସେ ଧନ ରୋଜଗାର କରିଚି । ରଙ୍ଗ ମୋ ପାଖରେ କେବେ ଠକିବ ନାହିଁ । ଏଇ ତ ରଙ୍ଗ ! ଫୋନ୍ କଲ ବାବା ? (ରଙ୍ଗ ଆସିଲା)
ଶ୍ରୀକାନ୍ତ : ହଁ ।
ଶ୍ରୀକାନ୍ତ : ବନ୍ଧୁ କଣ କହିଲେ ?
ରଙ୍ଗ : ଯାଙ୍ଗେ ଯାଙ୍ଗେ ଆସୁଚନ୍ତି ।
ଗୋପୀ : କୋଉଠିକୁ ଆସିବେ ?
ରଙ୍ଗ : ଏଇଠିକି—ଆପଣଙ୍କ ଘରକୁ ।
ଗୋପୀ : ଓ, ତମେ ତାଙ୍କୁ ନିମନ୍ତ୍ରଣ କରିଚ ତ ? ଭଲ ! କୋଉଠୁ ଆସୁଛନ୍ତି ସେ ?
ରଙ୍ଗ : ଏଇ ଥାନାରୁ ।
ଗୋପୀ : ଥାନାରେ ପୁଣି ତମର ବନ୍ଧୁ କିଏ ? (ହସି) ଦେଖ, ଏଣିକି ଥାନାବାଲାଙ୍କ ସାଙ୍ଗରେ ବନ୍ଧୁତା କଲେ···ଆଚ୍ଛା, କହିବଟି ଥାନାରେ କିଏ ତମର ବନ୍ଧୁ ! ଇନସ୍‌ପେକ୍ଟର !
ରଙ୍ଗ : ଏଇ ତ ସେ ଆସିଲେଣି ।
ଗୋପୀ : ଏ କଣ ? ଏଇଟା ଗୋଟାଏ ପୋଲିସ୍ ଭ୍ୟାନ୍ ଆସୁଚି !
ରଙ୍ଗ : ହଁ, ସେଇ ଭ୍ୟାନ୍‌ରେ ସେ ଆସୁଚନ୍ତି । (ବାହାରେ ଗୋଟିଏ ପୋଲିସ୍ ଗାଡ଼ି ଆସି ଅଟକିଲା । କେତେଜଣ ପୋଲିସ ଅଫିସର ଓ ସିପାହି ଗାଡ଼ିରୁ ଓହ୍ଲାଇ ଆସିଲେ । ଗୋପୀନାଥ ସ୍ତମ୍ଭୀଭୂତ)
ଗୋପୀ : କଥା କଣ ଶ୍ରୀକାନ୍ତବାବୁ ?
ଶ୍ରୀକାନ୍ତ : ମୁଁ ଶ୍ରୀକାନ୍ତ ନୁହେଁ ମିଃ ମହାପାତ୍ର, କି ଏ ରଙ୍ଗନିଧି ନୁହନ୍ତି । ସେ ଦୁହେଁ କନ୍ୟା ଦେଖିବାକୁ ଦିନ ଦୁଇଟା ଗାଡ଼ିରେ ଠିକ୍ ଆସି ପହଞ୍ଚିବେ । ଆମେ ଦୁହେଁ ହେଉଛୁ···ଏଇ ଦେଖନ୍ତୁ—(ପକେଟ୍‌ରୁ identity card ବାହାରକରି ଦେଖାଇ) ଆମେ ହେଉଚୁ ଉଇଜିଲାନ୍‌ସର ଲୋକ । ଆମର ଯାହା ଜାଣିବାର କଥା ଆମେ ସେ ସବୁ ଆପଣଙ୍କଠୁ ଜାଣିସାରିଲୁଣି ।
ଗୋପୀ : (ଚିତ୍କାରକରି) ସୋମ୍—ସୋମ୍—! (ସୋମ୍ ଆସିଲା)
ସୋମ୍ : ବାବା !
ଗୋପୀ : ମୋ' ରାଇଫଲ୍‌ଟା ଆଣ—ମୁଁ ଏ ଦୁଇଟାଙ୍କୁ ଗୁଳିକରି ମାରିଦେବି ।

ଶ୍ରୀକାନ୍ତ : ଚକ୍କାର କରନ୍ତୁନ ମିଃ ମହାପାତ୍ର ! ଆପଣ ବୁଦ୍ଧିମାନ୍ ଲୋକ । ନୀରବରେ ଏତେ ଧନ ରୋଜଗାର କରିଚନ୍ତି—ବର୍ତ୍ତମାନ ସେମିତି ନୀରବ ରୁହନ୍ତୁ । ଆପଣଙ୍କ ଘର ବର୍ତ୍ତମାନ ସିଜ୍ କରାଗଲା । ପହିଲେ ଚାଲନ୍ତୁ ଆପଣଙ୍କର ଶୋଇବା ଘର ପାଖ ଘରକୁ । ତା'ପରେ ତ ବଜ୍ରନ୍ ଷ୍ଟ୍ରୀଟ୍, ବ୍ୟାଙ୍ଗ୍କକ୍, ଏଡେନ୍, ହର୍ଷିନା-ପୁଷ୍ପ—ବହୁ ଜାଗା ଯିବାକୁ ଅଛି । ଚାଲନ୍ତୁ ।

(ସମସ୍ତେ ଭିତରକୁ ଗଲେ)

□□□

# ନାମ-ମାହାତ୍ମ୍ୟ

## ଚରିତ୍ର

ସୁଧାକର : ପ୍ରାୟ କୋଡ଼ିଏ ବର୍ଷ ବୟସ୍କ ସୁଦର୍ଶନ କିନ୍ତୁ ସ୍ୱଳ୍ପଶିକ୍ଷିତ ସାଧାରଣ ଯୁବକ । ଉଷଭ୍ର ଭାବପ୍ରବଣ ।

ଗୋପୀନାଥ : ପ୍ରାୟ ପଚିଶ ବର୍ଷ ବୟସ୍କ ସାଧାରଣ ଯୁବକ । ସୁଧାକରର ପଡ଼ୋଶୀ ।

ନବଘନ : ବୟସ୍କ ମଧ୍ୟବିତ୍ତ ଗୃହସ୍ୱାମୀ ।

ଫେରିବାଲା : ଯୁବକ ।

ଛବି : ସାଧାରଣ ଗୃହସ୍ଥ ଘରର ସପ୍ତଦଶୀ ଅବିବାହିତା ଝିଅ । ସୁଧାକରର ପଡ଼ୋଶୀ ଓ ବାକ୍‌ଦତ୍ତା ।

ରମା : ଗୋପୀନାଥର ସ୍ତ୍ରୀ ।

କାମକଳା : ବୟସ୍କା ପରିଚାରିକା । କଥା ଓ ହସରେ ଘର ଭାଙ୍ଗି ପଡ଼େ ।

[ କଟକ ସହର । ଏକ ଏକମହଲା କୋଠାଘରର ଅଭ୍ୟନ୍ତର ବା ଅଗଣା ଓ ଛତ୍‌ସଲଗ୍ନ ବାରନ୍ଦା । ସମୟ ମଧ୍ୟାହ୍ନ ।···ବାରନ୍ଦାର ଖୁଣ୍ଟକୁ ଆଉଜି ବସିଛି ସୁଧାକର । ଭାବାବିଷ୍ଟ ଦୃଷ୍ଟି ଶୂନ୍ୟରେ ଆବଦ୍ଧ ।···ପାଖରେ ଠିଆହୋଇଛି ଛବି । ସୁଧାକରର ଏ ଅବସ୍ଥା ଦେଖି ଟିକିଏ ଉଦ୍‌ବିଗ୍ନ ହୋଇ ପଡ଼ିଛି ସତ; କିନ୍ତୁ ସେଇ ସଙ୍ଗେ ସଙ୍ଗେ ସେ ଏ ପରିସ୍ଥିତିରୁ କିଛିଟା ଆମୋଦ ମଧ୍ୟ ଅନୁଭବ କରୁଛି । ]

ଛବି : ସୁଧାକରଭାଇ !

ସୁଧା : ଉଁ ?

ଛବି : କାମକଲା କଥା ଭାବୁଚ ?

ସୁଧା : ହୁଁ । ( କିଛିକ୍ଷଣ ପାଇଁ ଦୁହେଁ ନୀରବ )

ଛବି : ସୁଧାକରଭାଇ !

ସୁଧା : ଉଁ ?

ଛବି : କଣ ଏମିତି ଉଁ—ହୁଁ, ଉଁ—ହୁଁ ହଉଚ ମ ?

ସୁଧା : (ସୁରଧରି) ଉଁ—ହୁ —ହୁ —ଉଁ—ହୁ —ହୁ ···

ଛବି : ସତରେ ତା'ହେଲେ ଆରମ୍ଭ କରୁଚ ?

ସୁଧା : ଉଁ ?

ଛବି : 'ଉଁ' ନୁହେଁ ମ—ସତରେ ତମେ ଗୀତ ଗାଇବ ?

ସୁଧା : ହୁଁ ।

ଛବି : ରାଣ ରହିଲା । ଭାରି ଦାମିକା ରାଣ !! ଏଇ ମୋ' ରାଣ ମ, ଟିକିଏ ଅପେକ୍ଷା କର । ମୁଁ ଅମା ଆଉ ଗୋପୀ ଭାଇଙ୍କୁ ଡାକିଆଣେ । (ବାହାରକୁ ଚାଲିଗଲା)

ସୁଧା : ଏ ଛବି ! ଶୁଣ । ଶୁଣିଯା । ଛବି ! ହଉ ଯା'—ନ ଶୁଣ । ତୋ'ର ଆଉ ଏଠିକି ଆସିବା ଦର୍କାର ନାହିଁ । ଯୋଉ ନାଁ ତ—ଛବି ! ! 'ଛବି' ଯଦି ଗୋଟାଏ ନାଁ ହୋଇଥାନ୍ତା, ତା'ହେଲେ ଭଞ୍ଜ, କବିସୂର୍ଯ୍ୟ, ଗୋପାଳକୃଷ୍ଣ କବି ହୋଇ ପାରି ନ ଥା'ନ୍ତେ ।। ( ଗୋପୀନାଥ ଆସିଲା । )

ଗୋପୀ : ହାଇହେ ସୁଧାକର !

ସୁଧା : ଗୋପୀ ଭାଇ, ତୁମେ ଆସିଚ ?

ଗୋପୀ : ମୁଁ ତ ଆସିଚି । ହେଲେ, ଇଏ ତମର କଣ ହେଲା ବୁଝୁ ତ ?

( ଗୋପୀନାଥର ଅଲକ୍ଷ୍ୟରେ ରମା ମଧ୍ୟ ଆସିଚି )

ସୁଧାକର : ଗୋପୀଭାଇ !

ରମା : ତମ ଭାଇଙ୍କ ସାଙ୍ଗରେ ମୁଁ ବି ଆସିଚି ସୁଧାକର !

ସୁଧା : ଭଲହେଇଚି । ତମେ ସ୍ୱାମୀ ସ୍ତ୍ରୀ ଦୁହେଁ ସାଙ୍ଗହେଇ ଆସିଚ—ଭଲହେଇଚି ।

ଗୋପୀ : ଘର ଛାଡ଼ି ତମେ କାହିଁକି ଆସିଲ ରମା ?

ରମା : ମନା, ଛବି ଏଠୁ ଯାଇ କହିଲା —ସୁଧାକର ଗୀତ ଗାଇବେ । ଗୀତ ଶୁଣିବ ବୋଲି ତମେ ଏମିତି ଅଥୟ ହେଇ ଏଠିକି ଧାଇଁଲ ଯେ, ଏ ପାଚେରିରେ କବାଟ ନ ଥିଲେ ପାଚେରିକି ଡେଇଁପଡ଼ିଥା'ନ୍ତ । ମୁଁ ଆସିଲି ବୋଲି ଚିଡ଼ୁଚ କାହିଁକି ?··· ବୋଲ ସୁଧାକର, ଗୀତଟିଏ ବୋଲିବଟି ?

ଗୋପୀ : ରମା ! ମୁଁ ଗୀତ ଶୁଣିବ ବୋଲି ଏଠିକି ଆସିଚି ?

ରମା : ଆଉ କାହିଁକି ଆସିଚ ?

ଗୋପୀ : ସୁଧାକର କେମିତି ଗୀତ ନ ଗାଇବ, ସେ ବ୍ୟବସ୍ଥା କରିବାକୁ ମୁଁ ଆସିଚି ।

ସୁଧା : (ସୁରଧରି) ଭି—ହୁଁ—ହୁଁ···ଭି—ହୁଁ···

ରମା : ଏଇ ପରା ସେ ସୁର୍ ଧରିଲେଣି ।

ଗୋପୀ : ସୁଧାକର !

ସୁଧା : କ'ଣ ଗୋପୀଭାଇ ?

ଗୋପୀ : ସତରେ ତମେ ଗୀତ ଗାଇବ ?

ସୁଧା : ଭାବୁଚି ।

ଗୋପୀ : ହେ ଭଗବାନ୍ ! ତମର ଯୋଉ ଗଲା ! ତମେ ପୁଣି ଗୀତ ଗାଇବ ?···ଛବି କୁଆଡ଼େ ଗଲା ? ···ଛବି···(ଛବି ଆସିଲା)

ଛବି : କ'ଣ ଗୋପୀଭାଇ ?

ଗୋପୀ : ସୁଧାକରର ଏ କ'ଣ ହେଲା କହିଲୁ ଛବି ! ତା' ଅବସ୍ଥା ଦେଖୁଚୁ ?

ଛବି : ଦେଖୁଚି ତ ! କାଲି ରାତିରେ ସେ ପାଲା ଦେଖି ଯାଇଥିଲେ ।···ଆଜି ସକାଳୁ—

ଗୋପୀ : ଆଜି ସକାଳୁ ତା'ହେଲେ ଏ ଅବସ୍ଥା ହେଇଚି ? (ରମା କିଛି ବୁଝିପାରୁନଥାଏ)

ରମା : ହଇଓ, କି ଅବସ୍ଥା ? କଣ ତାଙ୍କର ହେଇଚି ?

ଗୋପୀ : ସେ କଥା ଦେଖିବାର ଆଖି ତମର ନାହିଁ—ଆଖି ଥିଲେ ବୁଝିବାର ବୁଦ୍ଧି ନାହିଁ —ବୁଦ୍ଧି ଥିଲେ ବି—କଥାଟାକୁ ଏ ପାଖ ସେ ପାଖ କରିବାର ବସ୍ତୁର-ଶକ୍ତି ତମର ନାହିଁ—ବୁଝିଲ ?

ରମା : ନାହିଁମ ! କଣ ହେଉଚ ଟିକିଏ ମତେ ବୁଝେଇଦିଅ ।

ଗୋପୀ : ଏଇ ଦେଖ, ଦେଖୁଚ ? ଇଏ କଣ ଯେଉଁ ପୁଷ୍କର ସେଇ ସୁଧାକର !! କେମିତି ଗୋଟାଏ ଖାଲି ଖାଲି—ଶୂନ୍‌ଶାନ୍—ଫାଙ୍କା ଫାଙ୍କା ଢଙ୍ଗ ।

ସୁଧା : ନାହିଁମ ଗୋପୀଭାଇ ! ଆଉ ଫାଙ୍କା ନାହିଁ । ସବୁ ଭର୍ତ୍ତି, ସବୁ ଭର୍‌ପୁର ହୋଇ-ଗଲାଣି ।

ଗୋପୀ : କାଲି ତମେ କୋଉଠିକି ପାଲା ଦେଖି ଯାଇଥିଲ ?

ସୁଧା : କାଠଗଡ଼ା ସାହି, ବାଘ ପାଲା । ଶୁଣ, ମୁଁ ଗାଉଚି··· ଏ ଛାନ୍ଦ ପଦକ ଗାୟକ ମହାଶୟଙ୍କ କଣ୍ଠରୁ ମୁଁ ଏକାବେଳକେ ଛଡ଼େଇ ଆଣିଚି ।

( ଏ କଥାରେ ପୋପୀ ମୁହଁରେ ହସ ଫୁଟିଉଠିଲା )

ଗୋପୀ : ତା'ହେଲେ ତମେ ଛାନ୍ଦ ଗାଇବ ?

ରମା : ଏଁ ! ତମ ମୁହଁରେ କଣ ହସ ଫୁଟିଉଠିଲାଣି ?

ଗୋପୀ : ସୁଧାକର ଯେବେ ଛାନ୍ଦ ଗାଇବ ଗାଉ । ମୋର ଅପତ୍ତି ନାହିଁ ।···ହେଲେ ସୁଧାକର୍ ତମର ଯୋଉ କଣ୍ଠ···

ସୁଧା : ନାହିଁମ ଗୋପୀଭାଇ—ମୋର ସେ କଣ୍ଠ ଆଉ ନାହିଁ । କାଲି ପାଲା ଦେଖିଲା-ବେଳଠୁ ମୋ କଣ୍ଠ ବଦଳିଗଲାଣି । ଶୁଣ ।

ରମା : ଟିକିଏ ବୁଝ ସୁଧାକର । ( ଗୋପୀକୁ ) ହେଇଢ, ଶୁଣୁଚ ?

ଗୋପୀ : ମତେ କହୁଚ ?

ରମା : ହଁ, ଆମ ଘରୁ ମୃଦଙ୍ଗଟା ନେଇ ଆସିବ କି ? ସୁଧାକର ଛାନ୍ଦ ଗାଇବେ—ତେମେ ମୃଦଙ୍ଗ ବଜେଇବ । ( ଗୋପୀ ରାଗିଗଲା )

ଗୋପୀ : ତମେ ଚାଲିଯାଅ—ଚାଲିଯାଅ ଏଠୁ । ମୂର୍ଖ ! ଅବୋଧ । ନନ୍‌ସେନ୍‌ସ୍ !

ରମା : ମିଛଟାରେ କାହିଁକି ଗାଳି ଦଉଚ ମ ?

ଛବି : ତୁ ଏମିତି ପିଲାଙ୍କ ଭଳି କଣ ହଉଚୁ ରମା ଅପା ! ଗୋପୀ ଭାଇ କଣ ମୃଦଙ୍ଗ ବଜେଇ ଜାଣନ୍ତି ?

ରମା : ଶିଖିଚନ୍ତି ପରା ! କାଲି ସଞ୍ଜବେଳେ ପରା ତେରେକିଟା ଖିଟା—ତେରେକିଟା ଖିଟା—

ଗୋପୀ : ତେମେ ଚୁପ୍ କର ।

ସୁଧା : (ଗାଇଲା)—

"କାମକଳା ବଳା ଶବଦେ ଚମକି ଉଠିଲା ବାରୁଣୀ କଟକ
ନଗରଜନେ କ୍ଷଣେ ଅଟକି ରହିଲେ ଦେଖି ସେ ବାଳାର ଛଟକ
କୁସୁମ, ମାଳା ସେ ଦେଇଛି ଲମ୍ବାଇ,
ମାଳା ଛଳେ କାମଦେବ ସତେ କି'ବା ବାଳିକା ଅଧର ଚୁମ୍ବଇ ।।"

ଛବି : ଶୁଣିଲ ତ ଗୋପୀ ଭାଇ !

ଗୋପୀ : ଶୁଣିଲି । ହେଲେ ସୁଧାକର ! ଇଏ ତ ଏମିତି ଗୋଟାଏ ସାଧାରଣ ଛନ୍ଦ ଗୀତ—ସାଧାରଣ ସୁର୍ । କ'ଣ ଗାୟକଙ୍କ କଣ୍ଠଟା ଖୁବ୍ ସରଳଆ ?

ସୁଧା : ନା, କଣ୍ଠ ନୁହେଁ ।

ଗୋପୀ : ଆଉ ତେବେ କାହିଁକି ତେମେ ଏମିତି ଭୋଳ ହେଇଯାଇଚ ?

ଛବି : ଗାୟକ ଖୁବ ସୁନ୍ଦର ବୁଝାଇଥିବେ—ବ୍ୟାଖ୍ୟା କରିଥିବେ ।

ସୁଧା : ହଁ, ବୁଝେଇଥିଲେ—ବ୍ୟାଖ୍ୟା କରିଥିଲେ ଘଣ୍ଟା ଘଣ୍ଟା ଧରି—ଶହ ଶହ ଉପମା ଦେଇ—ଗାୟକ ମହାଶୟ କାମକଳାର ରୂପ ଗୁଣ ଅନର୍ଗଳ ବୁଝେଇଥିଲେ । ହେଲେ ସେ ସବୁ ମୋର ଏ କାନରେ ପଶି ସେ କାନରେ ବାହାରିଗଲା ।

ଗୋପୀ : ଆଉ ଛନ୍ଦ ଭିତରେ ତା'ହେଲେ ଅଟକି ରହିଲା କଣ ?

ସୁଧା : ଛନ୍ଦଭିତରେ ଅଟକିରହିଚ ସେଇ ଗୋଟିଏକଥା—ଗୋଟିଏପଦ—ଗୋଟିଏ ନାଁ ।

ଗୋପୀ : ଗୋଟିଏ ନାଁ ?

ଛବି : କ'ଣ କାମକଳା ?

ସୁଧା : ହଁ, କାମକଳା ।

ଗୋପୀ : କ'ଣ ହେଲା ? କାମକଳା ଏଇ ନାଁଟା ପାଇଁ ଏତେ କଥା ?

ସୁଧା : ହଁ ଗୋପୀ ଭାଇ, ଯାହା କିଛି ରସ, ଯାହା କିଛି ମାହାତ୍ମ୍ୟ, ତା କେବଳ ଏଇ ନାଁଟି ପାଇଁ । ଏତେ ନାଁ ତ ଦୁନିଆରେ ଅଛି—ଛବି, ଶୋଭା, ଚମ୍ପା, କନକ—ହେଲେ ଚଟ୍‌କିନି ମନକୁ ଚହଲେଇ ଦେଲାଭଳି ନାଁ ହେଲା—ଏଇ କାମକଳା ! ମୁଁ ତ ଖରୁଚ, ଗାୟକ ମହାଶୟ ନାଚ, କୁଦ, ଚିତ୍କାର ହଲେଇ ପଦେ ଛନ୍ଦକୁ ଏତେ ଅର୍ଥ-ଅନର୍ଥ ବାହାର ନ କରି, "କାମକଳା"—କେବଳ ଏଇ ନାଁଟି କହି ଦେଇଥିଲେ—"ନଗ୍ରଜନେ କ୍ଷଣେ ଅଟକି ରହିଲେ ପରି" ମୋ ପରି ଶହ ଶହ ସଜ୍ଜନଙ୍କ ଆଖିର ପଲକ—ହାତର ନାଡ଼ି—ନାକର ନିଃଶ୍ୱାସ ସବୁ ଅଟକି ଯାଇଥାନ୍ତା !!...କି' ନାଁରେ ! କାମକଳା !!!

ଗୋପୀ : ସୁଧାକର !

ସୁଧା : ମୁଁ ମିଛ କହୁନ ଗୋପୀ ଭାଇ !...ଏଇ ଛବି କହୁ—ତା' ନାଁ ଆଉ କାମକଳା...

ଛବି : ଛବିକୁ ଶଲ୍ୟା ପାଇଲ କି ? ତମ କାମକଳା ତମକୁ ବଡ଼, ମୋ ନାଁ ମତେ ବଡ଼ ! ତମେ କିଏ ମତେ ଏକଥା ପଚାରିବାକୁ ? ଆଁ' ରମା ଅପା, ଯିବା ।

ରମା : ହଉଓ ସୁଧାକର, ଏ କାମକଳା କିଏ ? ତା' ଘର କୋଉଠି ? ବାହା ସାହା ହେଇଚ ?

ଛବ : ଶୁଣିଲ ତ ଗୋପୀ ଭାଇ !

ଗୋପୀ : ଶୁଣିଲି । ହେଲେ ସୁଧାକର ! ଇଏ ତ ଏମିତି ଗୋଟାଏ ସାଧାରଣ ଛନ୍ଦ ଗୀତ— ସାଧାରଣ ସୁର୍ । କ'ଣ ଗାୟକଙ୍କ କଣ୍ଠଟା ଖୁବ୍ ସରଳଆ ?

ସୁଧା : ନା, କଣ୍ଠ ନୁହେଁ ।

ଗୋପୀ : ଆଉ ତେବେ କାହିଁକି ତେମେ ଏମିତି ଭୋଳ ହେଇଯାଇଚ ?

ଛବ : ଗାୟକ ଭାରି ସୁନ୍ଦର ବୁଝାଇଥିବେ—ବ୍ୟାଖ୍ୟା କରିଥିବେ ।

ସୁଧା : ହଁ, ବୁଝେଇଥିଲେ—ବ୍ୟାଖ୍ୟା କରିଥିଲେ ' ଘଣ୍ଟା ଘଣ୍ଟା ଧରି—ଶହ ଶହ ଉପମା ଦେଇ—ଗାୟକ ମହାଶୟ କାମକଳାର ରୂପ ଗୁଣ ଅନର୍ଗଳ ବୁଝେଇଥିଲେ । ହେଲେ ସେ ସବୁ ମୋର ଏ କାନରେ ପଶି ସେ କାନରେ ବାହାରିଗଲା ।

ଗୋପୀ : ଆଉ ଛନ୍ଦ ଭିତରେ ତା'ହେଲେ ଅଟକି ରହିଲା କଣ ?

ସୁଧା : ଛନ୍ଦଭିତରେ ଅଟକିରହିଚ ସେଇ ଗୋଟିଏକଥା—ଗୋଟିଏପଦ—ଗୋଟିଏ ନାଁ ।

ଗୋପୀ : ଗୋଟିଏ ନାଁ ?

ଛବ : କ'ଣ କାମକଳା ?

ସୁଧା : ହଁ, କାମକଳା ।

ଗୋପୀ : କ'ଣ ହେଲା ? କାମକଳା ଏଇ ନାଁଟା ପାଇଁ ଏତେ କଥା ?

ସୁଧା : ହଁ ଗୋପୀ ଭାଇ, ଯାହା କହୁ ରସ, ଯାହା କହୁ ମାହାତ୍ମ୍ୟ, ତା କେବଳ ଏଇ ନାଁଟି ପାଇଁ । ଏତେ ନାଁ ତ ଦୁନିଆରେ ଅଛୁ—ଛବ, ଶୋଭା, ଚମ୍ପା, କନକ—ହେଲେ ଚଟ୍‌କରି ମନକୁ ଚହଲେଇ ଦେଲାଭଳି ନାଁ ହେଲା—ଏଇ କାମକଳା ! ମୁଁ ତ ଭାବୁଚ, ଗାୟକ ମହାଶୟ ନାଚ, କୁଦ, ଚଅଁର ହଲେଇ ପଦେ ଛନ୍ଦରୁ ଏତେ ଅର୍ଥ-ଅନର୍ଥ ବାହାର ନ କରି, "କାମକଳା"—କେବଳ ଏଇ ନାଁଟି କହି ଦେଇଥିଲେ—"ନଗ୍ରଜନେ ଖଣେ ଅଟକି ରହିଲା ପରି" ମୋ ପରି ଶହ ଶହ ସଭାଜନଙ୍କ ଆଖିର ପଲକ—ହାତର ନାଡ଼—ନାକର ନିଶ୍ୱାସ ସବୁ ଅଟକି ଯାଇଥାନ୍ତା !!...କ' ନାଁରେ ! କାମକଳା !!!

ଗୋପୀ : ସୁଧାକର !

ସୁଧା : ମୁଁ ମିଛ କହୁନ ଗୋପୀ ଭାଇ !...ଏଇ ଛବ କହୁ—ତା' ନାଁ ଆଉ କାମକଳା...

ଛବ : ଛବକୁ ଶନ୍ତା ପାଇଲ କି ? ତମ କାମକଳା ତମକୁ ବଡ଼, ମୋ ନାଁ ମତେ ବଡ଼ ! ତମେ କିଏ ମତେ ଏକଥା ପଚାରିବାକୁ ? ଆ' ରମା ଅପା, ଯିବା ।

ରମା : ହଇଓ ସୁଧାକର, ଏ କାମକଳା କିଏ ? ତା' ଘର କୋଉଠି ? ବାହା ସାହା ହେଇଚ ?

ଗୋପୀ : ହେ ଭଗବାନ୍, ବୋତଲ ବୋତଲ ଘିଣି ତେଲ, ଜଡ଼ାତେଲ ମଥାରେ ଘଷୁଚ, ସେ ଗୁଡ଼ିକ ସବୁ କଣ ବୃଥା ଯାଉଚ !! ତମ ନାଁ କଏ କାମକଳା ନ ଦେଲ କାହିଁକି ? ଖାଲି ନାଁଟିଏ ହେଇ ରହିଥାନ୍ତା । ମଣିଷ ରକ୍ଷା ପାଇଥାନ୍ତା !

ରମା : କାମକଳା ତା'ହେଲେ ଖାଲି ନାଁଟିଏ ...? ଏମିତ କେହି ମଣିଷ ନାହାନ୍ତି ?

ସୁଧା : ନା ରମା ଅପା—ଖାଲି ନାଁର ଏ ମାହାତ୍ମ୍ୟ—ଏ ପ୍ରକୋପ ?

ରମା : ତୁ ତା'ହେଲେ ସୁଧାକରଙ୍କ ଉପରେ ରାଗୁଚୁ କାହିଁକି ଲୋ ଛବ ? ଗୁରୁଛଳର ନାଁଟାଏ ତ, ତାକୁ ନେଇ କଣ ସେ ଜପାମାଳି କରିବେ ?

ଛବ : ତୁ ଆସିବୁ କ ନାହିଁ କହୁବୁଟି ! ତେଣେ ବାପା ଆସିବେଣି—ମୁଁ ଯିବ ।

ରମା : ହଁ ଗୁଲ । (ଗୋପୀକୁ) ହେଇତ, ମୁଁ ଯାଉଚ ।

ଗୋପୀ : ହଁ, ଯାଅ—ଛବକୁ ସାଙ୍ଗରେ ନେଇ ତମେ ଯାଅ । (ଛବ ଓ ରମା ଗୁଲିଗଲେ) ସୁଧାକର !

ସୁଧା : ଉଁ ।

ଗୋପୀ : ତମେ ହୋସ୍‌ରେ ଅଛଟି ?

ସୁଧା : କେଜାଣି ? ମୁଁ ତ କିଛୁ ଜାଣିପାରୁନ ।

ଗୋପୀ : ଛବ ମୁହଁ ଉପରେ ତମେ କହୁଚ କଣ ନା—ଛବ ନାଁଟା ବାଜେ ଆଉ କାମକଳା ନାଁଟା...

ସୁଧା : (ବାଧାଦେଇ) ଲୁହ ଗୋପୀ ଖୁଇ—ସେ ଭକ୍ତ ନାୟିକା 'କାମକଳା' ନାଁଟିକୁ ଆଉଥରେ କୁହ—ଅଶୁଗା ସୁଧାକର କାନରେ ସୁଧା ବର୍ଷେଇ ଦିଅ ।

ଗୋପୀ : ତମେ କଣ ଗୋଟାଏ ଚଙ୍ଗ ବାହାର କରୁଚ କି ସୁଧାକର ?

ସୁଧା : ନା, ମୁଁ କିଛୁ କରୁନ । ଯା' ହବାର କଥା, ତା' ଆପେ ଆପେ ହେଇଯାଉଚ ।

ଗୋପୀ : ଛବ କଥା ତା'ହେଲେ କଣ ହବ ?

ସୁଧା : କୋଉ ଛବ ?

ଗୋପୀ : କୋଉ ଛବ ? ହଇଏ ସୁଧାକର, ତମେ ପୁଣି କହୁଚ କୋଉ ଛବ ? ଏକଥା ତମେ କହୁଚ ନା ଇଏବ ଆପେ ଆପେ କହି ହେଇଯାଉଚ ? କଣ, ଛବକୁ ଭୁଲିବ ?

ସୁଧା : କିଛୁ ଲଭନାହିଁ । ବରଂ ତମେ ମତେ କିଛୁ ଉପାୟ ବତେଇଦିଅ—ସବୁ ଯେମିତ ମୁଁ ଭୁଲିଯିବ ।

ଗୋପୀ : ସବୁ ଭୁଲିଯିବ ? ମାନେ ?

ସୁଧା : ଏ ଇହସଂସାରର ସବୁକିଛୁ ମୁଁ ଭୁଲିଯିବ । ତା ହେଲେ ଖାଲି କାମକଳା ନାଁଟି ମୋର ସବୁବେଳେ ମନେ ରହିବ ।

ଗୋପୀ : ଶୁଣ ସୁଧାକର ! ତୁମେ ମେଟିକ୍ ପ୍ଲକ୍ଡ୍ ।

ସୁଧାକର : ବଞ୍ଚେଇଦ୍ଧ କର କହୁଛ କାହିଁକି ଗୋପୀ ଭାଇ ! ସଫା କୁହ ଫେଲ୍ ହୋଇଛ । ସେଣ୍ଟଅପ୍ ବି ହୋଇପାରିନି ।

ଗୋପୀ : ତା'ପରେ ତମ ଗାଁ ପ୍ରାଇମେରୀ ସ୍କୁଲରେ ବର୍ଷେ ଦୁଇବର୍ଷ ମାଷ୍ଟରୀ ଚାକିରି କରି ସେ ଚାକିରି ଛାଡ଼ିଲ, ପୋଷେଇଲା ନାହିଁ ।

ସୁଧା : ମତେ ପୋଷେଇ ନ ଥିଲା କାହିଁକି—ମୁଁ ସର୍କାରଙ୍କୁ ପୋଷେଇଲି ନାହିଁ । ମତେ ବିଦାୟ କରିଦେଲେ ।

ଗୋପୀ : ସେଇ କଥା ତ ! ତା'ପରେ ତମେ ଅନ୍ନ-ସଂସ୍ଥାନ ପାଇଁ କଟକ ଆସି ଏଠି ରହୁଛ । ଆମେ ତମର ପଡ଼ୋଶୀ ।

ସୁଧା : ମୁଁ ଜାଣେ ତମେ ମୋର ଭାଇ !

ଗୋପୀ : ଆଉ ଛବି···ସେ ମଧ୍ୟ ତମର ପଡ଼ୋଶୀ ।

ସୁଧା : ଭାରି ବାଜେ ଆଉ ଥାର୍ଡ଼କ୍ଲାସ୍ ନାଁଟା ଏଇ ଛବି ।

ଗୋପୀ : ଗାୟକ ମୁହଁରୁ ଗୋଟାଏ ନାଁ ଶୁଣି ତମେ ତମର ପ୍ରକୃତ ଅବସ୍ଥାଟା ଭୁଲିଯାଉଛ ସୁଧାକର ।

ସୁଧା : ତମକୁ କହିଲି ପରା—ମୁଁ ସବୁ ଭୁଲିଯାଉଛି ।

ଗୋପୀ : କିନ୍ତୁ ଭୁଲିଗଲେ ସେ ଚଳିବ ନାହିଁ । ତମେ ଏଠି ଆସି ନବଘନ ବାବୁଙ୍କ ଘରେ ରହୁଛ ।

ସୁଧା : ରହୁଛି ଆଉ କଣ—ତାଙ୍କ ଘର ଜଗି ପଡ଼ିଛି । ତାଙ୍କ ପୁଅ ଶରତ୍ ବାବୁ ବଡ଼ ଅଫିସର । ଆଶା ଅଛି ତାଙ୍କ ଦୟାରୁ ହୁଏତ ଖଣ୍ଡେ ଚାକିରିବାକିରି ପାଇବି ।

ଗୋପୀ : ସେ ଆଶା ଆମର ମଧ୍ୟ ଅଛି—ଛବି ବାପାଙ୍କର ମଧ୍ୟ ଅଛି; କିନ୍ତୁ ବର୍ତ୍ତମାନ ତମେ ବେକାର । ତଥାପି ଛବି ବାପା ତମକୁ ତାଙ୍କ ପୁଅଭଳି ସ୍ନେହ କରନ୍ତି । ସିଏ ଚାହାନ୍ତି, ଆଉ ତମେ ମଧ୍ୟ ଚାହିଁଛ ସେ ଦିନେ ଛବି ସହିତ ତମର ବାହାଘର···

ସୁଧା : ସତ କହୁଛ ଗୋପୀଭାଇ ! ଆଜି ଏସବୁ କଥା କିଛିହେଲେ ମୋର ମନକୁ ଛୁଉଁନି । ଛୁଉଁଛି କେବଳ ସେଇ ପଦେ କଥା—ଗୋଟିଏ ନାଁ—କାମକଳା ।

ଗୋପୀ : ତମକୁ ଲୋକେ ପାଗଳ ଛଡ଼ା ଆଉ କିଛି କହିବେ ନାହିଁ ସୁଧାକର ! କିଏ ସେ କାମକଳା—ଏ ସଂସାରରେ କେବେ ସେ ଜନ୍ମ ହୋଇଛି କି ନାହିଁ ସନ୍ଦେହ—ଅଥଚ ତା'ର ନାଁଟି ପାଇଁ ତମେ ଛବିଭଳି ଝିଅକୁ ହତାଦର କରୁଛ ?

ସୁଧା : ହେଲେ ତମେ ମୋ ପ୍ରତି ଅବିଚାର କରନାହିଁ ଗୋପୀଭାଇ ! ଶହ ଶହ ହଜାର ହଜାର ଝିଅଙ୍କ ନାଁ ତମେ ଶୁଣିଥିବ । ହେଲେ କାମକଳା !!!

ଗୋପୀ : ମୋ ରାଗ ଆଉ ଜଳାନାହିଁ ସୁଧାକର ! ମୁଁ ଯାଉଛି । ଦେଖିବ, ଗୋଟାଏ ନାଁ ପାଇଁ ତମେ କେତେ ପାଗଳାମି କରିବ । (ଚାଲିଗଲା)

ସୁଧା : ହଁ, ଯାଅ ତମେ—ଯାଅ । ବୈରସିକ ଲୋକ ତମେ—ସ୍ୱର୍ଗ୍ୟବଳରୁ ସ୍ୱଳ୍ପର ଖଣ୍ଡେ ପାଇଯାଇଚ ସିନା—ତମେ କୁଆଡ଼ୁ ବୁଝିବ ଭକ୍ତ-ନାୟିକା କାମକଳାର ନାମ-ମାହାତ୍ମ୍ୟ । (ଗୋପୀ ତରବର ହୋଇ ପୁଣି ଆସିଲା)

ଗୋପୀ : ସୁଧାକର—ସୁଧାକର !

ସୁଧା : ଚାଲିତ ଯାଇଥିଲ, ପୁଣି କୁଆଡ଼େ ଆସିଲ ?

ଗୋପୀ : ନବଘନବାବୁ ଆସୁଚନ୍ତି ।

ସୁଧା : କିଏ ?

ଗୋପୀ : କଣ କାମକଳା ନାଁଟା ତମକୁ ଏମିତି ଘାଣ୍ଟି ରଖିଚ ଯେ ନବଘନବାବୁଙ୍କ ନାଁଟା ବି ଭୁଲିଯାଉଚ ?...ତମର ଏଇ ଘର ମାଲିକ ନବଘନ ବାବୁ, ବୁଝିଲ ?
(ସୁଧାକର ଯେମିତି ଡରିଯାଉଚ)

ସୁଧା : ସେ କାହିଁକି ଆସୁଚନ୍ତି ?

ଗୋପୀ : ତାଙ୍କ ଘର ଇଏ, ସେ ଏଠିକି କାହିଁକି ଆସୁଚନ୍ତି ବୋଲି ତମେ ମତେ ପଚାରିବ, ଆଉ ତା'ର ଉତ୍ତର ମୁଁ ତମକୁ ଦେବି, ନା ? ଏଇ ସେ ଆସିଲେଣି—ମୁଁ ଯାଉଚି ।

ସୁଧା : ଗୋ-ଗୋ-ଗୋପୀଭାଇ—ଗୋପୀଭାଇ, ତମ ହାତ ଧରୁଚି—ଯାଅ ନାହିଁ—ରୁହ ।

ଗୋପୀ : କଣ ହେଲା ? ତମ ପାଟି କାହିଁକି ଶୁଖି ବାଜି ଯାଉଚି ? ମୁଁ ପୁଣି କାହିଁକି ରହିବି ?

ସୁଧା : ମୋ ଅବସ୍ଥା ଦେଖି ତମର କଣ ଦୟା ହଉନି ଗୋପୀଭାଇ ! ଦେଖୁଚ ତ ମୋର କେମିତି ହୋସ ଉଡୁନି । ନବଘନ ବାବୁ ଯେମିତି ଅଣ୍ଡିରା ଲୋକ—ସେ ମତେ କଣ ନାହିଁ କଣ ପଚାରିବେ—ମୁଁ ତାଙ୍କୁ କଣ ନାହିଁ କଣ ଜବାବ ଦେବି...ଏଇ, ଆସିଲେ ! (ନବଘନ ବାହାରୁ ଆସିଲେ)

ନବ : କିଓ ସୁଧାକର !

ସୁଧା : ଦ...ଦ...ଦଣ୍ଡବତ ଆଜ୍ଞା !

ନବ : (ହସିଉଠି) ତମର ଏ ଢଙ୍ଗ କେବେ ଯିବ ସୁଧାକର ? ଆଗରୁ ଖବର ନଦେଇ ମୁଁ ହଠାତ୍ ଚାଲିଆସିଲି ବୋଲି ତମେ ଏମିତି ଡରିଯାଉଚ, ତମ ପାଟି ଶୁଖି ବାଜି-ଯାଉଚି । ତମେ ପଚା ଗୁଳିକିଣ କରିବ ବୋଲି କଟକ ଆସିଚ—ଏମିତି ଡରକୁଳା ହେଲେ ଚଳିବ ?

ଗୋପୀ : ଦଣ୍ଡବତ ଆଜ୍ଞା !

ନବ : ଆରେ ଗୋପୀନାଥ ! ସବୁ ଭଲ ତ ?

ଗୋପୀ : ଆଜ୍ଞା !

ନବ : ସୁଧାକର, ତମ ବାବୁ ଆଜି ଅସୁଚନ୍ତି ।

ସୁଧା : ବାବୁ !! ଆପଣ ତ ଏଇ...ଆସିଲେଣି !

ନବ : ଆହେ ମୁଁ ମୋ କଥା କହୁନି—ଆମ ବାବୁଙ୍କ କଥା କହୁଚି ।

ଗୋପୀ : କିଏ ଶରତ୍ ବାବୁ—ଆପଣଙ୍କ ପୁଅ ?

ନବ : ହଁ, ମୁଁ ଗାଁରେ ଥିଲି । ତା'ଠୁ ଚିଠି ପାଇଲି ଯେ ସେ ଆଜି କଟକ ଆସୁଚି । ଚିଠିପାଇ ମୁଁ ଅସିଲି ।

ଗୋପୀ : କ'ଣ ଏମିତି ବୁଲି ଅସୁଚନ୍ତି ?

ନବ : ନା, ତାଙ୍କର ହଠାତ୍ କଟକ ବଦଳି ହେଲା । ବଦଳି ହୋଇ କଟକ ଆସୁଚନ୍ତି ।

ଗୋପୀ : ତା'ହେଲେ ପିଲାପିଲି ସମସ୍ତଙ୍କୁ ନେଇ ଆସିବେ ?

ନବ : ହଁ, ହଁ ସମସ୍ତେ । ସିଏତ ଭଞ୍ଜନଗରରେ ଥିଲା !

ସୁଧା : ଭଞ୍ଜନଗର !! (କଣ୍ଠରେ ଆଶ୍ଚର୍ଯ୍ୟ ହେବାର ଭାବ)

ନବ : କାହିଁକି ଶରତ୍ ଭଞ୍ଜନଗରରେ ଥିଲା ବୋଲି କଣ ତମେ ଜାଣ ନାହିଁ ଯେ, ଏମିତି କାହିଁ ଅସିଲା ଭଳି ପଚାରୁଛ ? ଭଞ୍ଜନଗରରୁ ସେ ପିଲାପିଲିଙ୍କୁ ନେଇ ସିଧା କଟକ ଆସୁଚି । ଇଏ···ବୁଝିଲ ଗୋପୀନାଥ···

ଗୋପୀ : ଅଜ୍ଞା !

ନବ : ମୁଠା ମୁଠା ଟଙ୍କା ଖର୍ଚ୍ଚ କରି କଟକ ସହରରେ କୋଠା ତୋଳାଇଥିଲି ଯେ—ମୁଁ ବର୍ଷକରୁ ଏଗାର ମାସ ରହୁଥିଲି ଗାଁରେ । ପୁଅଙ୍କର ବଦଳି ଚାକିରି—ସେ ଓଡ଼ିଶା ସାରା ବୁଲୁଚନ୍ତି । ଏତେ ଦିନେ ଭଗବାନଙ୍କର ଦୟା ହେଲା—ଶରତ୍ କଟକ ବଦଳିହୋଇ ଆସିଲା ।

ଗୋପୀ : ଭଲ ହେଲା ଆଜ୍ଞା—ଏଠି ଆସି ନିଜ ଘରେ ରହିବେ ।

ନବ : ସେଇ କଥା ପରା ! ସେତକ ଦେଖିଲେ ମୋ ମନ ଖୁସି—ମୋ କୋଠା ତୋଳା ସାର୍ଥକ ହବ ! ···କଉ ସୁଧାକର ! (ଜୋର୍‌ରେ) ସୁଧାକର !

ସୁଧା : ଆ···ଜ୍ଞା !

ନବ : ତମର ହୋଇଚି କଣ ? ଶୁଣୁଚ ସେମାନେ ଆଜି ଅସିବେ—ତମେ ଆଁ କରି ମୋ' ମୁହଁକୁ ଅନାଇଁ ଠିଆହୋଇଚ ?

ସୁଧା : ନାହିଁ ଆଜ୍ଞା !

ନବ : ଶୁଣ, ଶରତ୍ କଟକ ଆସିଲାଣି । ତମ ପାଇଁ କିଛୁ ଗୋଟାଏ ବ୍ୟବସ୍ଥା ସେ ନିଶ୍ଚୟ କରିବ । ଗଲା ମାସରେ ମୁଁ ଯେତେବେଳେ ଭଞ୍ଜନଗର ଯାଇଥିଲି, ତମ କଥା ମୁଁ ଶରତ୍‌କୁ କହିଥିଲି । ତମର ଖୁବ୍ ପ୍ରଶଂସା ତା ଆଗରେ ମୁଁ କରିଚି । ସେ ନିଜେ ଯେତେବେଳେ କଟକ ଅସୁଚି, ତମର ଆଉ ଚିନ୍ତା କ'ଣ ? ଛ'ମାସ ହେଲା କେବଳ ପେଟକୁ ଦି'ଟା ଖାଇ ଏଠି ଘର ଜଗି ପଡ଼ିରହିଥିଲ—ଏଇଥର ତମ ଭାଗ୍ୟ ଖୋଲିଲା ଜାଣ—ବୁଝିଲ !

ସୁଧା : ଆଜ୍ଞା !

ନବ : ଆଜ୍ଞା ତ···ଆଉ ଠିଆହୋଇ ରହିଲ କାହିଁକି ? ସେମାନେ ଏଇ ଦଶ ବ'ଟା ପୁଣା ଏଠି ଆସି ପହଞ୍ଚିବେ । ଯାଅ, ଘର ଦ୍ୱାର ଟିକିଏ ସଜଡ଼ାସଜଡ଼ି କରିଦିଅ ।···ହ ଶୁଣ, ଏ ମଝିଘରଟା ତମ ବାବୁଙ୍କ ଶୋଇଲା ଘର ହବ । ସେ ଘରଟା ଅଫିସ ଘର —ଆଉ ଏଇଟା ବୈଠକଖାନା । ବାହାର ଘରଟାରେ ପିଲାମାନେ ପଢ଼ାପଢ଼ି କରିବେ । ଆଉ ତମେ ଯୋଉ ଘରଟାରେ ରହୁଚ, ସେଇଟା କାମକଳା ପାଇଁ ଛାଡ଼ିଦିଅ । କାମକଳା ସେଇ ଘରେ ଶୁଆବସା କରିବ । ବୁଝିଲ ? ମୁଁ ଯାଏଁ, ଟିକେ ରାମବାବୁଙ୍କ ଘରେ ଖବରଟା ଦେଇଦିଏ । (ଚାଲିଗଲେ)

ସୁଧା : (ଚକ୍ରାର କଲାଭଳି) ଗୋପୀଭାଇ !!

ଗୋପୀ : (ଚାପା ଗଳାରେ) ଚୁପ୍ ! (ନବଘନ ଫେରିଆସିଲେ)

ନବ : ଏଁ, କଣ ହେଲା ? କଣ ହେଲା ସୁଧାକର ? ଏମିତି ପାଟିକରି ଉଠିଲ କାହିଁକି— ଯେମିତି ସାପ କି କଙ୍କଡ଼ାବିଛା କାମୁଡ଼ିଲା । କଣ ହୋଇଚ ସୁଧାକର ? (ପାଟିକରି) ସୁଧାକର !!

ସୁଧା : ଆ···ଆ···ଆଜ୍ଞା !

ନବ : ଆରେ ଏ ଲୋକଟା କଣ ମୁଁ ତ କିଛି ବୁଝିପାରୁନି ? ଆଁ କରି ମୋ ଆଡ଼କୁ ଚାହିଁ ରହିଚ—ଆଖିରେ ପଲକ ପଡ଼ୁନି—ଥରକୁ ଥର ପାଟି ଶବ୍ଦ ବାଜିଯାଉଚ । ···କିଓ ଗୋପୀନାଥ, ସୁଧାକରର କ'ଣ ହେଲା ?

ଗୋପୀ : ନାହିଁ ଆଜ୍ଞା, ହବ କଣ ? କିଛି ହୋଇନି ।···ସୁଧାକର କାଲି ରାତିରେ ବାଘପାଲ ଦେଖିଯାଇଥିଲା ଯେ···

ନବ : (ହସି) ଓ, ଏଇଆ । ପାଲା ଦେଖି ରାତି ଅନିଦ୍ରା ହୋଇଚ ବୋଲି ଠିଆ ଠିଆ ନିଦ ଘାରୁଚ—କଥାବାର୍ତ୍ତାରେ ହୋସ୍ ରହୁନି । ଆରେ ବାବୁ, ଟୋକା ମଣିଷ ତୁମେ—ଏଇନେ ଦେହ ଝଟେଇ ପଥର ଭାଙ୍ଗିବା କଥା । ଆମବେଳେ ଦର୍କାର ପଡ଼ିଲେ ଆମେ ପାଞ୍ଚ ପାଞ୍ଚ ରାତି ଅନିଦ୍ରା ରହୁଥିଲୁ । ତମେ ରାତିଏ ଅନିଦ୍ରା ହୋଇଚ ବୋଲି ହାଲିଆ ହୋଇ ପଡ଼ୁଚ ।···କାମକଳା ଆସୁ, ଦେଖିବ···

ସୁଧା : କିଏ ଆସିବ ଆଜ୍ଞା ?

ନବ : କହିଲି ପରା କାମକଳା ।

ସୁଧା : କାମକଳା ! ସିଏ ତ ଆଜ୍ଞା···ଭଞ୍ଜନାୟିକା···

ନବ : ଭଞ୍ଜନାୟିକା ! (ହସି ଉଠି) କିଓ ଭଞ୍ଜନାୟିକା କଣ ? ଶୁଣୁଚ ଗୋପୀନାଥ । ସୁଧାକର କୁଆଡ଼େ ମାଟ୍ରିକ୍ ଯାଏ ପାଠ ପଢ଼ିଚ । ଭଞ୍ଜନଗରକୁ କହୁଚ ଭଞ୍ଜନାୟିକା ।···ଆରେ ବାବୁ···ଶରତ୍ ସାଥିରେ ଭଞ୍ଜନଗରରୁ କାମକଳା ଆସୁଚ । ଆସୁ ସେ—ତାକୁ ଦେଖିବ ।···ଜାଣିଲ ଗୋପୀନାଥ—

ଗୋପୀ : ଆଜ୍ଞା, ଏ କାମକଳାଟି କିଏ ଆଜ୍ଞା ?

ନବ : ତା' ଘର ସେଇ ଭଞ୍ଜନଗର ଇଲାକାରେ । ଶରତ୍‌ର ଆମର ପିଲାପିଲି ହେଲେଣି । ବୋହୂଙ୍କୁ ଚଳିବାକୁ ଅସୁବିଧା ହେଲା । ପିଲା ଛୁଆଙ୍କ କଥା ବୁଝିବାପାଇଁ ଏଇ କାମକଳାକୁ ଆଣି ରଖିଲେ । ହେଲେ ତା'ର ସେ କ କାମ । କ ଫୁର୍ତ୍ତି ତା ହାତ । ଘର ଗୋଟାକର କାମ ତାକୁ ହିଅଣ୍ଟ ।...ଏଇନେ ଶରତ୍‌ର ସାରା ସଂସାରର ଭାର ତା' ଉପରେ । ତାକୁ ଛାଡ଼ି ରହିପାରୁଚନ୍ତି କୋଉଠି ? ସାଥିରେ ନେଇଆସୁଚନ୍ତି ।

ଗୋପୀ : କାହିଁକି ଆଜ୍ଞା, ଏଠି କଣ କେହି ମିଳି ନ ଥା'ନ୍ତେ ଯେ ଏତେ ଦୂରରୁ ତାକୁ ନେଇକରି ଆସୁଚନ୍ତି ?

ନବ : ତମେ ବୁଝିନ ଗୋପୀନାଥ ! ତା' ଭଳିଆ ଲୋକଟାଏ କଣ ସହଜରେ ମିଳିବ ? ଶରତ୍ ଲେଖିଚ ପତ୍ର—ଏଠିକି ଆସିବାକୁ ସେ ମୋଟେ ରାଜି ହେଉ ନ ଥିଲା ! କେତେ କୁହାବୋଲାରେ, ଖାଲି ଆମ ବୋହୂଙ୍କ ମୁହଁକୁ ଚାହିଁ ଆସୁଚ ।

ସୁଧା : କାମକଳା ତା'ହେଲେ ଆସୁଚ ?

ନବ : ହଁରେ ବାବୁ ଆସୁଚ  ସେ ଆସିଯାଉ ଦେଖିବ, ତମେ ଗୋଡ଼ ଉପରେ ଗୋଡ଼ ପକେଇ ବସିଥିବ—ଏଣେ ଘର ଗୋଟାକର କାମ ହୋଇଯାଉଥିବ ।...ବୁଝିଲ ଗୋପୀନାଥ, ଆମେ ଜାଣୁ ଦକ୍ଷିଣ ଓଡ଼ିଶାର ଲୋକେ ଭାରି କାମିକା...ହେଲେ କାମକଳା ଯେମିତି କାମିକା ସେମିତି ସଫା ସୁତୁରା । ପାଟଲି ଅମୃତପଣ ଗୋରା-ତକ୍ ତକ୍ ଦେହ । ତା' ନିଜ ଦେହରେ କେଉଁଠି ଟିକେ ମଇଳା ଲାଗିବ ନାହିଁ କି ଘରେ ବାହାରେ କେଉଁଠି ଟିକେ ମଇଳା ସେ ରଖେଇ ଦବ ନାହିଁ । ସବୁବେଳେ ଚକ୍ ଚକ୍ ଝକ୍ ଝକ୍ ।

ସୁଧା : କାମକଳା କୋଉ ଘରେ ରହିବ କହିଲେ ଆଜ୍ଞା ?

ନବ : କେଇଥର ସେ କଥା କହିବ ? ତମେ ଯୋଉ ଘରେ ଶୁଆବସା କରୁଚ, ସେଇ ଘରଟା କାମକଳା ପାଇଁ ଛାଡ଼ିଦେଇ ତମେ ଶିଡ଼ି ଘରକୁ ଚାଲିଯାଅ । ଟିକିଏ ଖୋଲାମିଆ ଘର ନ ହେଲେ ସେ ଚଳିପାରିବ ନାହିଁ । ସୁକୁମାରୀଟା ସେ—ବୁଝିଲ ଗୋପୀନାଥ !

ଗୋପୀ : ଆଜ୍ଞା !

ନବ : କାମକଳାଟା...

ସୁଧା : ସୁକୁମାରୀ !

ନବ : ମୁଁ ତ ସେଇ କଥା କହୁଚ...ତମେ ଉପରେ ପଡ଼ି ଆଉ କହୁଚ କଣ ? ଭାରି ସୁକୁମାରୀ ସେ—ଅସୁବିଧାରେ ଚଳିପାରିବ ନାହିଁ । ତମକଥା ମୁଁ ତାକୁ କହିଚ ଯେ ! ସେ ଆସୁ, ତାକୁ ଦେଖିବ, ତା' ଗୁଣ ବୁଝିବ । ମଣିଷ ନୁହେଁ ସେ—

ସ୍ୱାଗ ଖଣ୍ଡେ !···ହଉ, ମୁଁ ଟିକିଏ ରାମବାବୁଙ୍କ ଘର ଆଡ଼୍ ଆସେ···ତମେ ଏଣେ ଘର ଦ୍ୱାରର ବ୍ୟବସ୍ଥା ଦେଖ···ଅଉ ସେମିତ ଥାଁ କରି ଠିଆ ହୁଅନାହିଁ—ବୁଝିଲ ? (ଗ୍ଳଲଗଲେ)

ସୁଧା : ଗୋପୀଭାଇ !

ଗୋପୀ : ଉଁ ! (ଗୋପୀନାଥଙ୍କର ଭାବାନ୍ତର ଆସିଲଣି)

ସୁଧା : ମୋ' ପିଠିରେ ଗୋଟାଏ ବାଇଶିପଳଥା ବଧା ଥୋଇଲ !

ଗୋପୀ : ପାରିବ ନାହିଁ ।

ସୁଧା : ତା'ହେଲେ ଗାଲରେ ଗୋଟାଏ ଚଟକଣା କ ଝୁନ୍ଦା ଦିଅ ।

ଗୋପୀ : ତା'ବି ପାରିବ ନାହିଁ । ହାତ ଗୋଡ଼ ସବୁ ଅଚଳ ।

ସୁଧା : ତମର ବ ସବୁ ଅଚଳ ?

ଗୋପୀ : ହଁ, ଏ ଭାନୁମତୀ କାହାଣୀ ଶୁଣି ତମ ପରି ମୁଁ ବି ଅଚଳ ପଥର ପାଲଟି ଗଲଣି । ପାରୁତ ଯଦି ମୋ ଦେହରେ ଗୋଟାଏ ଛୁଞ୍ଚି ଫୋଡ଼ି ଦେଖ—ମୋଠି ଅଉ ଜୀବନ ଅଛି କି ନାହିଁ ! ହାସ୍ୟ-ହାସ୍ୟ—କାମକଳା ଆଜି ଆସୁଚ !!

ସୁଧା : ତମେ ମୋଠୁ ବୟସରେ ବେଶୀ ବଡ଼ ନହେଲେ ବି ଗୋପୀ ଭାଇ, ମୁଁ ତୁମକୁ ଗୁରୁଜନ ବୋଲି ଭାବିଥାଏ ।···ତମେ ମତେ କହିଲ ମୁଁ କଣ କରିବ ? ହସିବ ନା କାନ୍ଦିବ, ନା ସେଇ ଗୀତଟା ଗାଇବ !···କାମକଳା ଆଜି ଆସୁଚ !! (ଦୀର୍ଘଶ୍ୱାସ)

ଗୋପୀ : ମୁଁ ମାନିଲି ସୁଧାକର—କାମକଳା ପାଖରେ ମୁଁ ହାରିଗଲି !···(ଦୀର୍ଘଶ୍ୱାସ ମାରି) କାମକଳା ଆଜି ଆସୁଚ ।

ସୁଧା : ସେଇ କଥା ତ ! ମତେ ତୁମେ କହ—ମୁଁ କଣ କରିବ ! କାମକଳା ଯେ ଆଜି ଆସୁଚ ।

ଗୋପୀ : ନବଘନ ବାବୁ କଣ କହିଗଲେ ?

ସୁଧା : ସୁକୁମାରୀଟା ସେ—ଭାରି ସୁକୁମାରୀ !

ଗୋପୀ : ତମର ଏଇ ଘରଟିରେ ସେ ପରା ରହିବ ?

ସୁଧା : ଇଏ ମୋ ଭାଗ୍ୟ ।

ଗୋପୀ : ବସ୍ତୁରୀ ଛବର ଦୁର୍ଭାଗ୍ୟ । ଶରତ୍‌ବାବୁ ଆସିଲେ ତମର ଗ୍ଳକର ହୋଇଯିବ । କନ୍ତୁ ଛବି ବାପା ତମକୁ ଆଉ କ୍ଷମା କରି ପାରୁନାହାନ୍ତି ।···ହାସ୍ୟ ! କାମକଳା ଆଜି ଆସୁଚ !

ସୁଧା : ମୁଁ ଜାଣିଥିଲି ସେ ଆସିବ, ତାଙ୍କୁ ଦେଖି ନଗରଜନେ ଷଣେ ଅଟକି ରହିବେ । ହେଲେ ଯେ କନେ ଅଟକିଯିବ ମୋର ଏଇ ଷ୍ଟେଟ କୋଠରିଟିରେ । ହିଁ ଯାଉଚ—କାଳୁ ଚଟାଣ ସବୁକୁ ଘଷି ମାଜି ସାଫ୍ କରିଦେବ ।

ଗୋପୀ : ତମେ ଏକା ପାରିବ ?

ସୁଧା : ପାରିବ ଗୋପୀଭାଇ ! ଆଉ କିଏ ଅଛୁ ମତେ ସାହାଯ୍ୟ କରିବ ?

ଗୋପୀ : କାହିଁକି ମୁଁ ମୋର ଖୁବ୍ ଇଚ୍ଛା ହେଉଛି ତମର ଏ କାମରେ ସାହାଯ୍ୟ କରିବାକୁ ।

ସୁଧା : ତମର ଇଚ୍ଛା ହେଉଛି ।···ନାହିଁ ଗୋପୀ ଭାଇ, ତମ ଇଚ୍ଛାଟାକୁ ତମେ ଦବେଇ ଦେଇ ତମ ବସାକୁ ତମେ ଯାଅ । ଘରସଂସାରୀ ଲୋକ ତମେ—ରମା ଅପା ତମ ବାଟ ଗୁହିଁ ବସିଥିବ—ଯାଆ । ମୋ କାମ ମୁଁ ବୁଝିବି । ତମେ ଯାଅ ।

ଗୋପୀ : (କୁଣ୍ଠା ସହିତ) ହଉ···ଯାଉଛି । (ଗ୍ଲଲଗଲା)

ସୁଧା : ହୁଁ···ଘର ପଙ୍ଖା ! ଆଗେ ମୋର ଘର—ଏଇ ଘରେ ରହିବ କାମକଳା ।

[ ଏତକବେଳେ ବାହାରୁ ଜଣେ ଫେରିବାଲାର ଡାକ ଶୁଭିଲା । ]

ଫେରିବାଲା : (ବାହାରୁ) ନିଅ···କଣ୍ଟା, ପାନିଆ, କ୍ଲପ୍, ରିବନ୍, ସ୍ନୋ, ପାଉଡର, ଅଲତା, ସିନ୍ଦୂର, ଆଇନା—

ସୁଧା : (ମନକୁ ମନ) ଏଇ ଫେରିବାଲା ଆସିଲାଣି ! ଆଜ କାମକଳା ଆସୁଚି ବୋଲି ସବୁ ଯୋଗ ଏଇଠି ହେଉଚି । ତା' ପାଇଁ କଣ କିଛୁ କିଣିବ ନା ନାହିଁ ? ···ହଁ, ନିଶ୍ଚେ କିଣିବ । ତା' ଗୋରା ପାଦକୁ ନାଲି ଅଲତା ଭାରି ସୁନ୍ଦର ମାନିବ । (ଡାକିଲା) ହେ ଫେରିବାଲା ! ତୁ ସେ ଗଳିବାଟେ ବୁଲି ଏ ପଟ ଅଗଣାକୁ ଆ' ।

( ଟିକିଏ ପରେ ଫେରିବାଲା ଆସିଲା )

କଣ ଅଛୁ ତୋ' ପାଖରେ ?

ଫେରିବାଲା : ଏଇ—ଅଲତା, ସିନ୍ଦୂର, ଆଇନା···

ସୁଧା : ଆଉ କଣ ଅଛୁ ?

ଫେରିବାଲା : କଣ୍ଟା, ପାନିଆ, କଲପ୍ ।

ସୁଧା : ଆଉ ? ( ଏ ଭିତରେ ଛବି ଅଲକ୍ଷ୍ୟରେ ଆସି ସୁଧାକର ପଛରେ ଠିଆହୋଇଛି । )

ଫେରିବାଲା : କଣ ବାବୁ ତମର ବାହାଘର ହେଉଚି କି ? ଯଦି ବାହାଘର ହେଉଚି, କୁହ, ତାଲିକା ଦର୍କାର ନାହିଁ । ତାଲିକା ମୋ ମୁହେଁ ମୁହେଁ । ସବୁ ସରଞ୍ଜାମ ଯୋଗାଇ ଦେଇପିବ ।

ସୁଧା : ଆରେ ନାହିଁ, ତୁ ରହ—ମୁଁ ଟିକିଏ ଭଲକରି ଦେଖେ—କଣ ଭଲ ଭଲ ଜିନିଷ ତୋ ପାଖରେ ଅଛୁ ?

ଫେରିବାଲା : ଦେଖ—ଆଖି ପୂରାଇ ଦେଖନ୍ତୁ ! ଯାହା ମନକୁ ପାଉଚି ନିଅ । ହେଲେ ବାବୁ, ତମକୁ ମିଛ ମତେ ସତ—ଏ ଯୋଉ ପାନିଆ ଦେଖୁଚ, ଯାହା ମୁଣ୍ଡରେ ଏ ପାନିଆ ବାଜିବ ନା, ଚିରଦିନକୁ ତମ ପାଖରେ ତା' ମୁଣ୍ଡ ନଇଁବ । ଆଉ ଏ ଯୋଉ ଅଲତା ଦେଖଚ, ଏ ଅଲତା ଯୋଉ ପାଦରେ ଲଗିବ ନା···

ଛବ : ତରବନ ପାଇଁ ସେ ପାଦ ପାଖରେ ସୁଧାକରବାବୁଙ୍କ ମୁଣ୍ଡ ନଇଁବ ।

ସୁଧା : କ'ଣ ଛବ, ତୁ କେତେବେଳେ ଆସିଲୁ ? ଏଠି ତୁ କଣ କରୁଚୁ ?

ଛବ : କାମକଳା ଆସିବ ଶୁଣି ଆସିଲି ଯେ, ଦେଖିଲି ତମେ ଏଠି ଫେରିବାଲା ପାଖରେ ଜିନିଷ ମୂଲଉଚ । କଣ କିଣିଲଣି ?

ଫେରିବାଲା : ନାଇଁମ ଦେଇ ! ବାବୁ ଖାଲି ଆଖି କଥାରେ ପଶିଲେ ଭଲ ହଉଚନ୍ତି । ତେମେ ହେଲେ ପସନ୍ଦ କରିଦିଅ ଦେଇ । ତମ ପସନ୍ଦ ଖାସ ବଢ଼ିଆ ।

ଛବ : ତମେ କେମିତି ଜାଣିଲ ?

ଫେରିବାଲା : ତମ ମୁଣ୍ଡରେ ଯେଉଁ କଲପ୍ ନାଇଚ, ଏକ ନମ୍ବର କଲପ୍ ।

ଛବ : ତାକୁ ସୁଧାକରବାବୁ ମୋ' ପାଇଁ ପସନ୍ଦ କରି କିଣିଦେଇଥିଲେ ।

ଫେରିବାଲା : ଆଜ ତେମେ ତାଙ୍କ ପାଇଁ ପସନ୍ଦ କରି କିଣିଦିଅ ।

ଛବ : ଠିକ୍ କଥା ! ଆଚ୍ଛା, ତମ ପାଖରେ କଳା ଅଛୁ ?

ଫେରିବାଲା : କଳା···କି କଳା ?

ଛବ : କଳା ତ କଳା···କି କଳା ପୁଣି କ'ଣ ?

ଫେରିବାଲା : ଅଚ୍ଛୁ ଦେଇ ! କଳା ପାଉଡର୍—ଥେଟର୍ ବାଲା ମୁହଁରେ ମାରି ପେଣ୍ଟିଂ କରନ୍ତି ।

ଛବ : ସୁଧାକରବାବୁ, ସେଇଥିରୁ ଗୋଟାଏ କିଣ ?

ସୁଧା : ଛବ, ମୋ ସାଙ୍ଗରେ ଥଟ୍ଟା ଖେଳୁଚୁ ନା ? ହେ ଫେରିବାଲା, ଗୋଟାଏ ଭଲ ପାନିଆ ଦେଖି ।

ଫେରିବାଲା : ଏଇ ନିଅ ବାବୁ, ଏଇ ପାନିଆ—ଯେମିତି ଲମ୍ବା ସେମିତି ଚଉଡ଼ା । ପୁଣି ନାଁ ଲେଖା ହେଇଚ ।

ସୁଧା : କାହା ନାଁ ?

ଫେରିବାଲା : ଆମ ଦେଇଙ୍କ ନାଁ—ଏଇ ଦେଖନ୍ତୁ—ହିନ୍ଦୀ, ବଙ୍ଗଳା, ଓଡ଼ିଆ ସବୁ ଭାଷାରେ ଲେଖା ହୋଇଚ—ଛବ ।···ଦେବି ଗୋଟାଏ ଏଇଥିରୁ ?

ସୁଧା : (ବାହାରକୁ ଚାହିଁ) ଅରେ ବାପ୍‌ରେ—ନବଘନବାବୁ ଆସୁଚନ୍ତି—ତୁ ପଳା ।

(ଘର ଭିତରକୁ ପଶିଗଲେ)

ଫେରିବାଲା : ଆରେ—ରେ । ହୋ ବାବୁ, ଜିନିଷ ଦେଖୁ ଦେଖୁ ଏମିତି ପଳେଇଲ କଣ ? ଭଲ କଥାତ ! (ଡାକ ଡାକ ଚାଲିଗଲା) (ନବଘନ ଆସିଲେ ।)

ନବ : କଣ୍ଠେ ଛବ ? ଏଠି ଠିଆହୋଇ କଣ କରୁଚୁ ?

ଛବ : ନାଇଁ, ସୁଧାକରବାବୁ ଫେରିବାଲାଠୁ ଜିନିଷ ମୂଲଉଥିଲେ ଯେ ତମକୁ ଦେଖି ପଳେଇଲେ ।

ନବ : ପଳେଇଲା କାହିଁକି ? ମାଇଚଥା···ତୋ ବାପା ଭଲ ଅଛନ୍ତି ଛବ ?

ଛବ : ହଁ ।

ନବ : ବାପାଙ୍କୁ କହିବୁ, ଶରତ୍ ଆସିଲେ ସେ ଠିକଏ ଆସିବେ । ସୁଧାକରର କେମିତ ଖଣ୍ଡେ ଘୁକର ହୋଇଗଲେ ରକ୍ଷା । ସବୁ ଅଡ଼୍ୟା ତୁଟିଯିବ । (ବଡ଼ ପାଟିରେ) କାହିଁଗଲ ସୁଧାକର ? କଣ କରୁଚ ?

(କହି କହି ଘୁଲଗଲେ । ଏ ପାଖରୁ ଗୋପୀନାଥ ଆସିଚ । )

ଗୋପୀ : କଲେ ଛବ, ତୁ ପୁଣି କାହିଁକି ଆସିଲୁଣି ?

ଛବ : ତମେ କାହିଁକି ଆସିଚ ?

ଗୋପୀ : ମୁଁ ? ମାନେ—ଏଇ ଶରତ ବାବୁଙ୍କ ପିଲପିଲ ଏଇନେ ଆସିବେ ତ···ମୁଁ ଆସିଚ···ମାନେ···ବୁଝିଲୁ···ମୁଁ ଯେତେବେଳେ ତାଙ୍କ ପଢ଼ଣା···

ଛବ : ମୁଁ କଣ ସେମିତ ତାଙ୍କ ପଢ଼ଣା ନୁହେଁ ?

ଗୋପୀ : ନଷ୍ଟସ୍ୟ—ନଷ୍ଟସ୍ୟ—କଏ ମନାକଲା ?

ଛବ : ମୁଁ ସେମିତ ଆସିଚ । (ନବଘନ ପୁଣି ଆସିଲ)

ନବ : ସୁଧାକର କୁଆଡ଼େ ଗଲା କ ? ତା'ର କଣ ଦେଖା ଦର୍ଶନ ନାହିଁ ! କୁଆଡ଼େ ଗଲକ ସୁଧାକର ?

ସୁଧା : (ଘର ଭିତରୁ) ମୁଁ ଏଇଠି ଅଛୁ ଆଜ୍ଞା—ଏ ଘରେ ।

ନବ : (ଘର ଦୁଆରମୁହଁକୁ ଯାଇ) କଣ କରୁଚ ଏଠି ?···ଏ' କଣ ? ଏକାବେଳକେ ସାବୁନ୍ ଆଉ ବ୍ରସ୍ ଦେଇ ଚଟାଣ ସଫା ହଉଚ ?

ସୁଧା : ଠିକଏ ରହନ୍ତୁ ଆଜ୍ଞା—ପାଣି ଢାଳ ଦେଇ ପୋଛିଦଏ— ଏକାବେଳକେ ଚକ୍ ଚକ୍ ଦେଖାଯିବ ।

ନବ : ଚକ୍ ଚକ୍ ତ ଦେଖାଯିବ—କନ୍ତୁ ଏ ବ୍ୟବସ୍ଥା ଏଠି ହଉଚ କାହିଁକ ?

(ସୁଧାକର ବାହାରକୁ ଆସିଲା)

ସୁଧା : ଆଜ୍ଞା !

ନବ : ଏ ଘରେ କଏ ରହିବ ?

ସୁଧା : ଆପଣ କହିଥିଲେ ଆଜ୍ଞା—କାମକଳା ।

ନବ : କାମକଲା ରହିବ ବୋଲି ଏ ଘର ଚଟାଣ ସାବୁନ ଆଉ ବ୍ରସ୍‌ରେ ସଫା ହଉଚ ?

ସୁଧା : ଆପଣ କହିଥିଲେ—ଖୁବ ସୁକୁମାରୀଟା ସେ !

ନବ : ଓ ! ସେ ସୁକୁମାରୀଟା ବୋଲି ତା' ପାଇଁ ତମର ଏତେ ଦରଦ ? ହଉ, କାମକଲା ଆସୁ, ଏ ସୁସମ୍ବାଦଟା ତାକୁ ନଷ୍ଟସ୍ୟ ଦିଆହେବ । ହେଲେ ତମ ବାବୁଙ୍କ ଶୋଇବା ଘର ?

ସୁଧା : ତାଲ ଫିଟେଇ ନାହିଁ ଆଜ୍ଞା !

ନବ : ଅପଦାର୍ଥ କୋଉଠିକାର ! ସେମାନେ ତ ଆସି ପହଞ୍ଚି ଯିବେ—ତାଲା ଫିଟିବ କେତେବେଳେ ? ଆସ—ଆସ ମୋ ସାଥିରେ—ଘୁବ ନେଇ ଆସ ।

ସେମାନେ ହୁଏତ ଏଇ ପାଞ୍ଚ ମିନଟ୍ ଭିତରେ ପହଞ୍ଚିଯିବେ । ଅପଦାର୍ଥ କୋଉଠିକାର, ଆସ । (ଚାଲିଗଲେ)

ସୁଧା : (ମନକୁମନ) ଆପଣ ମତେ ଆଜ ଯୋଉ ଶୁଭ ସମ୍ବାଦ ଦେଇଚନ୍ତି, ସେଥିରେ ଯେତେ ଗାଳିଦେଲେ କଣ ମତେ ବାଧିବ ?

ନବ : (ଦୂରରୁ) କଉଁ ଆସିଲ ?

ସୁଧା : ଚାଲନ୍ତୁ ଆଜ୍ଞା—ଚାଲନ୍ତୁ ! (ପୁର୍ବ ଗ୍ରନ୍ଥିକୁ ଘୁଣ୍ଟୁଘୁଣ୍ଟୁ ହୋଇ ଗାଇ ଚାଲିଗଲା)

ଛବ : ଦେଖୁଚନ୍ତି ଗୋପୀବାଇ ?

ଗୋପୀ : ତୁ ବ ତ ଦେଖୁଚୁ ।

ଛବ : ଆଚ୍ଛା, ସୁଧାକର ଭାଇ ସତ ପାଗଳ ହେଇଯା'ନ୍ତି !

ଗୋପୀ : ଜମା ପାଗଳ ହବନାହିଁ ।

ଛବ : ନ ହବ କେମିତି ! ଏ କଥାରେ ତ ଯିଏ ପାଉ ସିଏ ପାଗଳ ହେଇଯିବାର କଥା !

ଗୋପୀ : ପାଗଳ ହେଇଥାନ୍ତା ସତ କାମକଳା ଆସିନଥାନ୍ତା । କାମକଳା ଯେତେବେଳେ ଆସୁଚି···

ଛବ : ସେତେବେଳେ ତମେ ପାଗଳ ହେଇଯିବ !

ଗୋପୀ : କାହିଁକି ? ଏକଥା କହୁଚୁ କାହିଁକି ? ଏଥିରେ ମୋର କି ଦୋଷ ?

(କହୁ କହୁ ରମା ଆସିଲା)

ରମା : ହଁ, ତମର ଦୋଷ ଅଛି ।

ଗୋପୀ : କିଏ ରମା ? ଘର ଛାଡ଼ି ତମେ ପୁଣି କାହିଁକି ଆସିଲଣି ?

ରମା : ମତେ କୁହ, ଘର ଛାଡ଼ି ତମେ କାହିଁକି ଆସିଚ ? ଘରଟା କଣ ଏକା ମୋର; ତମର ନୁହେଁ ? ତମେ ଏଠିକି କାହିଁକି ଆସିଚ ?

ଗୋପୀ : ମୁଁ···ମୁଁ···ମାନେ···ଶରତ୍‌ବାବୁ ଆସିବେ ଯେ···

ରମା : ନା, କାମକଳା ଆସିବ ?

ଗୋପୀ : ହେଃ ! କଣ ଗୁଡ଼ାଏ ଏମିତି କହୁଚ ? ଚୁପ୍ ଚୁପ୍ ।

ରମା : ଚୁପ୍ ରହିବ ! ସତେ ! କାମକଳା ଆସୁଚି ବୋଲି ଏଠୁ ଶୁଣିକରି ଯାଇ ତୁମେ ଗୁମ୍ ହୋଇ ଘରେ ବସିଚ । କାହିଁକି ଲୋ ମା ? ଏମିତି କି କାମକଳା କି ଯେ, ସମସ୍ତଙ୍କ ମୁହଁରେ କଳା ବୋଳିଦେବାକୁ ବସିଚ ।

ଗୋପୀ : ଆରେ ମୁଁ କାହିଁକି ଚୁପ୍‌ହେଇ ବସିଥିଲି ଜାଣ ?

ରମା : କାହିଁକି ?

ଗୋପୀ : କାମକଳା ଆସିଲେ ସୁଧାକରର ଅବସ୍ଥା କଣ ହବ ସେଇକଥା ଭାବେ ।

ରମା : ମିଛକଥା ।

ଛବ : ମୁଁ ତ କହୁଚି ସୁଧାକର ଭାଇ ପାଗଳ ହେଇଯିବେ ।

ଗୋପୀ : ହେଲା ଏବେ ସେ ହେଉ ପାଗଳ···ଯାଃ !

ରମା : କଏ ଯିବମ ? ତମେ ଗୃଲ । (କହୁ କହୁ ନବଘନ ଆସିଲେ)

ନବ : ସୁଧାକର—କପ୍ ଆସିଗଲା । ସୁଧାକର ! ଆରେ ! ଏ ଲୋକଟା କୁଆଡ଼େ ଯାଉଚ···ସୁଧାକର ! ସେମାନେ ସବୁ ଆସିଗଲେଣି ପରା ! ସୁଧାକର !··· ଏଁ ! କ ଆଶ୍ଚର୍ଯ୍ୟ ! ତମେ କଣ ଭୂତ ପାଲଟିଗଲଣି କ ସୁଧାକର ! ଏଇଠି ମୋ ପଛରେ ଖୁଣ୍ଟ ଉଢ଼ାଳରେ ମୁହଁ ତଳକୁ କର ଠିଆହେଇଚ—ମୁଁ ଡାକ ଡାକ ଥକଲଣି—ପାଟି ଫିଟଉନ ।

ସୁଧା : (ଧୀରସ୍ୱରେ) ସେମାନେ ଅସିଗଲେଣି ଆଜ୍ଞା !

ନବ : ଉଃ !! ତମ ମନପକ୍ଷୀ ପୁଣି କୁଆଡ଼େ ଉଡ଼ିଯାଉଚ ଯେ ଏମିତ ଧୀର ସ୍ୱରରେ କଥା ବାହାରୁଚ ? ଆସ—ଜଳଖିଆ କୋଉଠି ରହବ ସେ ବ୍ୟବସ୍ଥା କରିବ ଆସ । ···ହୋ ଡ୍ରାଇଭର ବାବୁ— (କହୁ କହୁ ପୁଣି ଗୃଲଗଲେ)

ଛବ : ମୁଁ ଯାଉଚୁ ରମା ଅପା—ଦେଖିଆସେ । (ପ୍ରସ୍ଥାନ)

ଗୋପୀ : ମୁଁ ବ ଯାଉଚୁ ରମା !

ରମା : ତମେ କୁଆଡ଼େ ଯିବ···ଏଇଠି ଠିଆହୁଅ—ଏଇ ଖୁଣ୍ଟ ଉଢ଼ାଳରେ ।

(ରମା ଓ ଗୋପୀ ଖୁଣ୍ଟ ଉଢ଼ାଳରେ ଠିଆହେଲେ)

ଗୋପୀ : ହଉ—ହେଲେ ନବଘନବାବୁ ସୁଧାକରକୁ ଡାକଗଲେ—ସିଏ ତ କାହିଁକ ଯାଉନାହିଁ ।

(ସୁଧାକର ତା'ଘର ଦୁଆରମୁହଁରେ ଠିଆହୋଇ ମନକୁମନ କହୁହେଉଥାଏ)

ସୁଧାକର : ମୁଁ ଯିବ ? କୁଆଡ଼େ ଯିବ ! କପ୍ ପାଖକୁ ? ନାଇଁ ନାଇଁ—ସେଇ କପ୍‌ରେ କାମକଳା ଆସିଚ—ମୁଁ ସେଠିକ ଯିବ କେମିତ ? ଭଗବାନ୍ ! ମତେ ବୁଦ୍ଧି ଦିଅ—ମୁଁ କଣ କରିବ ? ସିଏ ନ ଆସିଥିଲେ ଭଲହୋଇଥା'ନ୍ତା । କାମକଳା— ଏଇ ନାଁଟିକୁ ସମ୍ବଳ କର ମୁଁ ରହୁଥାନ୍ତି । ଆସିଲା କାହିଁକ—ମତେ ଏ ହଇରାଣ କଲା କାହିଁକ ? ମୋର ତ ମୋଟେ ସାହସ କୁଲଉନ ତା'ପାଖକୁ ଯିବାକୁ । କଣ କରିବ ? ସିଏତ ଏଇନେ ମାଡ଼ିଆସିବ—କେମିତ ଭେଟିବ ତାକୁ ? ଗୋଟାଏ ପାନିଆ କ ହ'ଗଜ ଶବନ୍ ତ କଣି ପାରିଲନାହିଁ – କେମିତ ଭେଟିବ, କଣ ତାକୁ କହବ ? ସେଇ ଗୀତ ପଦକ ଗାଇବ···"କାମକଳା ବାଳା···" ଉହୁଁ—ହଉନ—ଗଳା ବସିଯାଇଚ । କଣ କରିବ ପ୍ରଭୁ···ଏ କଣ ! ମତେ କାହିଁକ କାନ୍ଦମାଡ଼ୁଚ !! ଭଞ୍ଜନଗରରୁ ମୋର ଛନ୍ଦନାୟିକା କାମକଳା ଆସିଲା—ମତେ କାନ୍ଦ ମାଡ଼ୁଚୁ କାହିଁକ ?

(କାନ୍ଦୁଥାଏ । ହସି ହସି ଛବ ଆସିଲା । ସୁଧାକର ଘର ଭିତରେ ଲୁଚିଗଲା । )

ଗୋପୀ : ଏ କଣ ଛବ—ସୁଧାକର ସେ ଘରେ ସୁଁ ସୁଁ ହେଇ କାନ୍ଦୁଚ—ଉ ଏମିତ ହସୁଚୁ—କଥା କ'ଣ ?

(ଘରଭିତରେ ସୁଧାକର କଇଁକଇଁ ହୋଇ କାନ୍ଦୁଥାଏ—ଅଗଣାରେ ଛବ ହସୁଥାଏ । ଇଙ୍ଗିତରେ କାମକଳାର ଆଗମନବାର୍ତ୍ତା ଛବ, ରମା ଓ ଗୋପୀଙ୍କୁ ଜଣାଇଦେଲ । କାମକଳା ଆସିଲା । ପ୍ରାୟ ପଞ୍ଚଷଠି ବର୍ଷର ବୃଦ୍ଧା; କନ୍ତୁ କର୍ମକୁଶଳା ଓ କର୍ମଚଞ୍ଚଳା । କଥା କହିଲେ ଯେମିତ ଝଣଝଣ କଂସାପିଟା ଶବ୍ଦ ହେଉଚ । ମୁହଁରେ ହସ ହସ ଭାବ । )

କାମକଳା : କାଇଁ, ସୁଧାକର କେଉଁଠି ଅଛ ? ସୁଧାକର !

(ସୁଧାକରର କାନ୍ଦ ବନ୍ଦ ହୋଇଗଲଣି । ଗୋପୀ ଓ ରମା ମୁହଁରେ ସ୍ୱସ୍ତିବକ ପ୍ରତକ୍ରିୟା । )

କାମକଳା : କ ରେ ସୁଧାକର, କୋଉଠି ମୁହଁଛପା ଦେଇ ରହିଚୁ କ ?

ଛବ : ଏଇ ସେ ଘରେ ।

କାମକଳା : ( ଝଣଝଣ ସ୍ୱରରେ ) ଏଁ—ଘରଟା ଭିତରେ କାହିଁକ ପଶିଚୁ । ପଦାକୁ ବାହାରଆ···ମାଇଚଅ । ସେ ପାଖରେ ଲୋକଗହଳ ଭାଙ୍ଗିପଡୁଚ—ଉ ଏଠି ଘର ଭିତରେ ଲୁଚଚୁ—ଆ' ଏଠିକ ।

( ଯେମିତ ଭୟଭୀତ ଅବସ୍ଥାରେ ସୁଧାକର ଆସିଲା । ଖାଲ ବୋକାଙ୍କ ପରି ଚାହିଁ ରହିଥାଏ । ସେଇ ଅବସ୍ଥାରେ ସୁଧାକର କାମକଳାକୁ ନମସ୍କାର କଲ । କାମକଳା ଖିଲଖିଲ ହୋଇ ହସିଉଠିଲା । )

କାମକଳା : (ସୁଧାକରର ବାହାକୁ ଧରି) ଉ ତା'ହେଲେ ସୁଧାକର !! ବୁଢ଼ାବାବୁ ଆମର ସେଠିକ ଯାଇଥାନ୍ତି ସେ ତୋ କଥା କେତେ ପ୍ରଶଂସା କରୁଥାନ୍ତି—ସୁଧାକର ଏମିତ —ସୁଧାକର ସେମିତ ! ଉ ସେଇ ସୁଧାକର ନାଁ ? କରେ, ମୋ ମୁହଁକୁ ଏମିତ ବଲବଲ କରି ଅନେଇଚୁ କଣ ? ମତେ ଚହ୍ନିପାରୁନୁ ? ମୁଁ ପରା କାମକଳା !

ସୁଧାକର : (ରହି ରହି ଧୀରଗଳାରେ ମୁହଁ ତଳକୁ କରି) ଭଞ୍ଜନାୟିକା···

କାମକଳା : (ହସହସ ମୁହଁରେ ଝଟେଇ ହେଲାଭଳି) ଭଞ୍ଜନାୟିକା ନୁହେଁରେ ଓଲୁ— ଭଂଜନଗରରୁ ମୁଁ ଆସିଚ, କାମକଳା । କଣ—ପରତେ ହଉନ ! ହାତରେ ମୋର ଚତାକୁଟା ହୋଇ ମୋ ନାଁ ଲେଖାହୋଇଚ—କାମକଳା ! ପଢ଼ିଲୁଟି ? ···କରେ, ଉ ଏମିତ ମୁହଁ ଶୁଖେଇଦଉଚୁ କାହିଁକ ରେ ? କଣ ତୋତେ ଉ' ତା' କରୁଚ ବୋଲି ! ଉ ନ କହି କଣ ତମେ ଆପଣ କହିବ ? ତୋ' ବୟସ କେତେ ହବ କହିଲୁ ? ଅଠର କ କୋଡ଼ିଏ ! ଏଇ ଗଲା ପଅର ଦନ ପରା ମୋ ନାତକୁ ସତର ପୂରି ଅଠର ଗଲା । (ହସିଲା)

ଗୋପୀ : (ଏକାନ୍ତରେ) କି କଂସାପିଟା ହଉ !

ରମା : (ଏକାନ୍ତରେ) ତମ ମନକୁ ପାଉଛଟି ?

କାମକଳା : ଘରେ ତ ମୋ ନାତିନାତୁଣୀଙ୍କୁ ଗ୍ରୁଡ଼ ଆସିଲି—ଏଠି ତୁ ଜାଣି ମୋ ନାତି ହେଲୁ ।

ଗୋପୀ : (ଏକାନ୍ତରେ) ସୁଧାକରଟା ସତରେ ପାଗଳ ହେଇଯିବ ।

କାମକଳା : ହଇରେ, ତୁ ବୋକା ପାଲଟିଗଲୁଣି କି ? କିଛି କହୁନୁ କାହିଁକି ? ଜାଣିଚୁ, ଏମିତି ଦିନେ ମୋ ବଡ଼ ନାତି ରୁଷିବସିଲା—ତାକୁ ମାଇଲି ଏମିତି ଖୁଦ୍ଦାଏ ଯେ···

(ସୁଧାକରକୁ ଖୁଦ୍ଦା ମାରି ଖିଲଖିଲ ହେଇ ହସିଉଠିଲା)

କଣ—ମତେ ହସି ହସି କଥା କହୁନୁ ନା ପୁଣି ଏ ଗାଲରେ ଖୁଦ୍ଦାଏ ଦେବି !

ଛବି : (ଆଗେଇଆସି) ନା ଆଉ, ଆଉ ମାରନାହିଁ ।

କାମକଳା : ତୁ କିଏ ଲୋ ?

ଛବି : ମୁଁ ପରା ଛବି ।

କାମକଳା : (ଖୁସିହୋଇ) ଆଲୋ ତୁ ଛବି ? କେଡ଼େ ସୁନ୍ଦରଆଟିଏ ହେଇଚୁ ଲୋ ! ବୁଢ଼ାବାବୁ ତୋର କଥା ତ କହୁଥିଲେ । ହଉ, ସୁଧାକର ମୋ ନାତି ହେଲେ ତୁ ମୋର କଣ ହବୁ କହ ? ତା ପାଇଁ ତ ମନା କଲୁ—ମୋ ହାତରୁ ତୁ ତା'ହେଲେ ଖୁଦ୍ଦାଏ ଖା ।

ସୁଧା : ନାଇଁ ନାଇଁ—ତମ ଖୁଦ୍ଦା ଭାରି ଟାଣ । ତାକୁ ମାରନାହିଁ ।

କାମକଳା (ମଧୁର ହସି) ସତେ ! ମୋ ନାତିର ମୁହଁ ଫିଟିଚି ତା'ହେଲେ । (ହସୁଥାଏ)

□□□

# କରୁଣାନିଧି

**ଚରିତ୍ର**

କରୁଣାକର : ବିବାହିତ ପୂର୍ଣ୍ଣବୟସ୍କ ଯୁବକ । ଶିକ୍ଷାଦୀକ୍ଷା ଅଳ୍ପ ।

ନିଧିରାମ : ମଧ୍ୟବୟସ୍କ ଗ୍ରାମବାସୀ ।

ଗଦାଧର : ଅବିବାହିତ ଯୁବକ । ନିଧିରାମଙ୍କ ଭଣଜା । ସୁନ୍ଦର ରୂପ ।

ପୂଜକ : ମନ୍ଦିରର ପୂଜକ

ରବି : ୨୦ । ୨୧ ବର୍ଷର ଯୁବକ । ରମାର ସାନଭାଇ ।

ରମା : କରୁଣାକରଙ୍କ ସ୍ତ୍ରୀ । ସୁନ୍ଦରୀ ।

[ ଗ୍ରାମ୍ୟ ଅଞ୍ଚଳର ଏକ ଦେବସ୍ଥାନ । ମଞ୍ଚରେ ମନ୍ଦିର ଦୃଶ୍ୟମାନ ନୁହେଁ; କିନ୍ତୁ ମନ୍ଦିର ସମ୍ମୁଖସ୍ଥ ଏକ ସୁନ୍ଦର ଚଉତରା ଦୃଶ୍ୟମାନ । ଚଉତରାର ଗୋଟିଏ ପାର୍ଶ୍ୱରେ କେତକୀ ବଣ ଓ ଅନ୍ୟ ପାର୍ଶ୍ୱମାନଙ୍କରେ ଚମ୍ପା ଓ କଦମ୍ବ ଆଦି ବୃକ୍ଷାଦିରୁ ଏକ ଚିତ୍ତାକର୍ଷକ ପରିବେଶ ସୃଷ୍ଟି କରିଛି ।

ସମୟ—ଏକ ଉଜ୍ଜ୍ୱଳ ଅପରାହ୍ନ । କରୁଣାକର ଓ ରମା ମଞ୍ଚକୁ ଆସିଲେ । ପରିଚ୍ଛନ୍ନ ଧୋତି ସିଲ୍କ ପଞ୍ଜାବି ପରିହିତ କରୁଣାକର ଅନୁରୂପ ଶାଢ଼ି ଅଳଙ୍କାରରେ ଭୂଷିତା ରମାକୁ ଦେଖିଲେ ଜଣାଯାଏ ଦୁହେଁ ଅବସ୍ଥା-ସମ୍ପନ୍ନ ପରିବାରର ଦମ୍ପତି । ଦୁହିଁଙ୍କଠାରେ ହସ-ଖୁସିର ଭାବ । ]

କରୁଣାକର : ଆମ ବେଳେ ଯଦି ଏମିତି ହୋଇପାରିଥା'ନ୍ତା !

ରମା : କେମିତି ?

କରୁଣା : ଏଇ, ଏଠି ଆଜି ଯେମିତି ହବାକୁ ଯାଉଛି ।

ରମା : (ହସି) ଓ, ଏଇ ଇଣ୍ଟରଭ୍ୟୁ ?

କରୁଣା : ହଠାତ୍ ଏ ଶବ୍ଦଟା ତମେ କେଉଁଠୁ ଖୋଜି ପାଇଲ ?

ରମା : କାହିଁକି—ଏ ଶବ୍ଦଟା କଣ ଏମିତି ମହର୍ଘ ହୋଇଛି ଯେ, ମୁଁ ଖୋଜି ପାଇବି ନାହିଁ ? ଆଜିକାଲି ତ ସଦାବେଳେ ସବୁ ଜାଗାରେ ଇଣ୍ଟରଭ୍ୟୁ ଲାଗିରହିଛି—ଗୁଡ଼ିକରଠୁ ବାହାଘରଯାଏ ।

କରୁଣା : ହେଲା, ହେଲା ଏବେ, ତମରି କଥା ହେଲା—ଇଣ୍ଟରଭ୍ୟୁ ।...ମୁଁ ସେଇକଥା ଭାବୁଛି । ଆମ ବାହାଘର ଆଗରୁ ଯଦି ତମ ମୋ ଭିତରେ ଏମିତି ଗୋଟାଏ ଦେଖାଚାହାଁ ଇଣ୍ଟରଭ୍ୟୁ ହୋଇଥା'ନ୍ତା !

ରମା : କିଏ କାହାକୁ ଇଣ୍ଟରଭ୍ୟୁ କରିଥା'ନ୍ତା !

କରୁଣା : ଏଠି ଆଜି କିଏ କାହାକୁ ଇଣ୍ଟରଭ୍ୟୁ କରିବ ?

ରମା : ତମେ କୁହ ।

କରୁଣା : ଦୁହେଁ ଦୁହିଁଙ୍କୁ ।

ରମା : ଅର୍ଥାତ୍...

କରୁଣା : କନ୍ୟାପାତ୍ରୀ ବରପାତ୍ରକୁ ଇଣ୍ଟରଭ୍ୟୁ କରିବ, ଆଉ ବରପାତ୍ର କନ୍ୟାପାତ୍ରୀକୁ; ଅର୍ଥାତ୍ ତମ ସାନଭଉଣୀ ରମା ଆଉ ନନ୍ଦକିଶୋରବାବୁଙ୍କ ଭଣଜା ଗଙ୍ଗାଧର...

ରମା : ତମେ କହୁଚ ଆମ ବିବାହ ପୂର୍ବରୁ ତମ ମୋ ଭିତରେ ଏମିତି ଗୋଟାଏ ଇଣ୍ଟରଭ୍ୟୁ ହୋଇଥାନ୍ତା ?

କରୁଣା : ହିଁ—କିଛି ମନ୍ଦ ହୋଇଥା'ନ୍ତା କି ? ଏମିତି ଗୋଟାଏ ଜାଗାକୁ ତମେ ଆସିଥାନ୍ତ—ମୁଁ ଆସିଥାନ୍ତି । ତମେ ମତେ ଦେଖିଥାନ୍ତ—ମୁଁ ତୁମକୁ ଦେଖିଥାନ୍ତି । ତମେ ମତେ ପଚାରିଥାନ୍ତ—ମୁଁ ତମକୁ ପଚାରିଥାନ୍ତି । ତମେ ମୋ ପ୍ରଶ୍ନର ଉତ୍ତର ଦେଇଥାନ୍ତ—ମୁଁ ତମ ପ୍ରଶ୍ନର ଉତ୍ତର ଦେଇଥାନ୍ତି... (ରମା ହସିଉଠିଲା)

କରୁଣା : ହସୁଚ ?

ରମା : ତମେ ହାରିଯାଇଥାନ୍ତ !

କରୁଣା : ମୁଁ ?

ରମା : ହିଁ, ତମେ ।

କରୁଣା : ଇଣ୍ଟରଭ୍ୟୁରେ ତମ ପାଖରୁ ମୁଁ ହାରିଯାଇଥାନ୍ତି ?

ରମା : ହିଁ, ଷୋଳଅଣା —ପୂରା ଷୋଳଅଣା ତମେ ମୋ ପାଖରୁ ହାରିଯାଇଥା'ନ୍ତ ।

କରୁଣା : ସେଇଠୁ ?

ରମା : ସେଇଠୁ ଆଉ କଣ ? ତମେ ହାରିଯାଇଥାନ୍ତ...ମୁଁ ତମକୁ ବାହାହେଇ ନଥାନ୍ତି ।

କରୁଣା : ତମେ ଜିତିଥାନ୍ତ ତ ?

ରମା : ହିଁ—ଷୋଳଅଣା ।

କରୁଣା : ତା'ହେଲେ ଆଉ ଚିନ୍ତା କଣ ଥିଲା ? ମୁଁ ହାରିଯାଇଥାନ୍ତି ବୋଲି ତମେ ମତେ ବାହା ହୋଇ ନ ଥାନ୍ତ । କିନ୍ତୁ ତମେ ଜିତିଥାନ୍ତ ବୋଲି ମୁଁ ତମକୁ ବାହା ହେଇଥାନ୍ତି ! (ରମା ପୁଣି ହସିପକେଇଲା)

କରୁଣା : ଏ ହସ ପୁଣି କୋଉଥିପାଇଁ ?

ରମା : ଆମ ବାହାଘର ପ୍ରାୟ ଦ'ବର୍ଷ ହେଇଗଲା । ଦ'ବର୍ଷ ତଳେ ଏମିତି ଦେଖାଗୁହାଁରେ ମୁଁ ନିଶ୍ଚୟ ତମକୁ ହରେଇ ଦେଇଥାନ୍ତି । କିନ୍ତୁ ଏ' ଦ'ବର୍ଷର ଘରକରଣା ପରେ ଆଜି ତମେ ମତେ ହରେଇଦେଲ ।

କରୁଣା : ସେଇ କଥା ମୁଁ କହୁଥିଲି ରମା ! ଆମ ଜୀବନରେ ଯଦି ଏମିତିକା ଗୋଟେ ଦେଖାଗୁହାଁ ଇଣ୍ଟରଭ୍ୟୁ ହେଇଥାନ୍ତା—ଏମିତି ହାର୍ ଜିତ ଚାଲିଥାନ୍ତା...

ରମା : ପାଠ କ'ଣ ହେଉଛି ବୁଝିଥାନ୍ତା ସ୍ୱରୂପ ? ବୁଝି ନଥାନ୍ତା । ସ୍ୱାମୀ-ସ୍ତ୍ରୀଙ୍କର ଏ ଯେଉଁ ଘରକରଣା—ଇଏ କଣ ଥରେ ଦେଖାଯାଉଁ, ଗୋଟାଏ-ଅଧେ ଇଣ୍ଟରଭ୍ୟୁ କ ପଦେ ଦ'ପଦ କଥା କଟାକଟିରେ ଶେଷହୁଏ ?

କରୁଣା : ମୁଣ୍ଡ ଖେଲେଇ ବେଶ୍ ଚମତ୍କା କଲଭଳି କଥାଟାଏ ତ କହୁଚ !

ରମା : ଅମର କଥା ଦେଖ । ଏ ଦ'ବର୍ଷ ଭିତରେ ଆମ ଦୁହିଁଙ୍କର କେତେଥର ଦେଖାଯାଉଁ ହେଲଣି ?

କରୁଣା : ମାନେ ?

ରମା : ତମେ ମତେ କେତେ ପ୍ରଶ୍ନ ପଚାରିଲଣି—ଅଉ ମୁଁ ତମକୁ କେତେ ପ୍ରଶ୍ନ ପଚାରିଲଣି ?

କରୁଣା : ଓ ! ଶହ ଶହ—ହଜାର ହଜାର ।

ରମା : ତମେ କେତେ ଉତ୍ତର ଦେଲଣି—ଆଉ ମୁଁ କେତେ ଉତ୍ତର ଦେଲଣି ?

କରୁଣା : ଲକ୍ଷ ଲକ୍ଷ— କୋଟି କୋଟି ।

ରମା : ତେବେ କି ତମ ମନକାମନା ପୂର୍ଣ୍ଣ ହେଇନି ଯେ, ଏଠି ଆସି ପୁଣି ନୂଆ ଜୀବନ ଆରମ୍ଭ କରିବାକୁ ତମ ମନ ଯକଯକ ହେଲାଣି ?

କରୁଣା : ନୂଆ ଜୀବନ ନୁହେଁ ରମା, ଏ ଜୀବନ ଚାଲିଯିବା ପରେ ମଧ୍ୟ କାମନା ପୂରଣ ହୁଏ ନାହିଁ । ସେଇଥିପାଇଁ ସ୍ୱାମୀ ମରିଯିବା ପରେ ସ୍ତ୍ରୀ—କି ସ୍ତ୍ରୀ ମରିଯିବା ପରେ ସ୍ୱାମୀ ସାଧନା କରି, ମାନେ ଭୂତ, ପ୍ରେତ, ବେତାଳ, ବ୍ରହ୍ମରାକ୍ଷସ ସାଧନା କରି ଜଣେ ଏ ପୁରରେ ଥାଇ ସେପୁରବାସୀ ଆଉ ଜଣକ ସାଥିରେ କଥାବାର୍ତ୍ତା କରୁଚ—
...“କହୁଯା ! କଣ କଣ କଥା ତୋ' ମନରେ ଚୁପ୍ ମାରି ରହିଗଲା କହୁଯା । ମଲା-ବେଳକୁ ତ ଏମିତି ଠକିଲୁ ଯେ ତିନିଦିନ କାଳ ବେହୋସ ହେଇ ପଡ଼ି ପଡ଼ି ମଲୁ, ମନକଥା ତୋର ମନରେ ରହିଲା—ତୁ ଶ୍ମଶାନ ଭୂଇଁକୁ ଗଲୁ । ଏବେ ସବୁ କଥା ମତେ ଫିଟେଇ କହୁଯା । ଆଗ ପୁଅ ବାହାଘର କରିବାକୁ ମନ ଥିଲା କି ଆଗ ଝିଅ ବାହାଘର ? ବଡ଼ା କଳସ ସବୁ ରଖିଚୁ—ଟିପା ନାହିଁ—ମୁଁ କେମିତି ଜାଣିବି କାହାର କି କଳସ ? ଜୀବନବୀମା କିସ୍ତି ଟଙ୍କା ଦେଇଚୁ କି ନାହିଁ ? ଯଦି ଦେଇ ନ ଥାଉ ତେବେ ପଛ ତାରିଖ ପକେଇ ଆସି ଦେଇଯା—ନ ହେଲେ ବୀମା କମ୍ପାନୀ ଟଙ୍କା ଦେବନାହିଁ । ଜୁଆଣିଅର୍କ ଶିଶିଟା କୋଉଠି ରଖିଗଲୁ ଖୋଜି ଖୋଜି ପାଉନି । ଦେଢ଼ ଗ୍ରାମର ଭଲ ଅର୍କ ସେଥିରେ ଥିଲା । ବେଳେବେଳେ ମୋର ଆମ୍ବିଳା ହାକୁଟି ଉଠେ ଯେ, ହେଲେ ତୁ ଚାଲିଗଲା ପରଠୁଁ ତ ମତେ ତିନିପୁର ଅନ୍ଧାର ଦିଶୁଚି—ନୂଆ ଶିଶିଟାଏ କିଣିବାକୁ ଆଉ ଗୋଡ଼ହାତ ଚଳୁନି । ପୁନାଟା ପରା—ଧନଟା ପରା—ଜୁଆଣି ଅର୍କ ଶିଶିଟା କେଉଁଠି ରଖି ଯାଇଚୁ କହିଦେ...”
ଏମିତି କେତେ କେତେ କଥା ! ଏ ବନ୍ଧନ କଣ ଗୋଟାଏ ଯୁଗର ନା ଗୋଟାଏ

ଖବରର···! ଏ କଣ ? ତମ ଆଖିରେ ଲୁହ ? ତମେ କାନ୍ଦୁଚ ?

( ରମା ଲୁହ ପୋଛୁଥାଏ )

ରମା : କଏ ନ କାନ୍ଦିବ କହିଲ ? ଯୁଗ ଯୁଗର ଏ ବନ୍ଧନ କଥା ଭାବିଲାବେଳକୁ କାହା ମନ ନ ତୁଟିବ ? କାହା ଆଖିରୁ ଲୁହ ନ ଝରିବ ?

କରୁଣା : ଜନ୍ମଜନ୍ମାନ୍ତର ପାଇଁ ଏ ବନ୍ଧନ···ତୁଟେ ନାହିଁ କି ଭାଙ୍ଗେ ନାହିଁ ।

ରମା : ଯଦି ଭାଙ୍ଗେ ତେବେ ଆପେ ଆପେ ଯୋଡ଼ିହୋଇଯାଏ ।

କରୁଣା : ସେଇ କଥା କହୁଥିଲି—ଏ ସାତ ପରସ୍ତିଆ ବନ୍ଧନରେ ବାନ୍ଧିହବା ପୂର୍ବରୁ ଯଦି ଆମେ ଦୁହେଁ ଥରେ ଭେଟାଭେଟି ମୁହାଁମୁହିଁ ହୋଇପାରିଥାନ୍ତେ—

ରମା : ହୋଇଥିଲେ ଆଉ ଅଧିକ କିଛି ହୋଇଥାନ୍ତା ଭାବୁଛ ? କିଛି ନୁହେଁ । ଯୋଉ ବାଟରେ ଯାଅ—ଘାଟୀ ସେଇ ଗୋଟିଏ ।

କରୁଣା : ସେ କଥା ଅବଶ୍ୟ ଠିକ୍, ଯୋଉ ବାଟରେ ଯାଅ ପହଞ୍ଚିବ ସେଇ ଘାଟିରେ—ସେଇଠି ଜନ୍ମଜନ୍ମାନ୍ତର ପାଇଁ ବନ୍ଧନରେ ବାନ୍ଧି ହୋଇ ରହିବ । ତମ ସାନଭଉଣୀ ଉମା ଆଉ ତାର ଭାବୀ ସ୍ୱାମୀ ଗଙ୍ଗାଧର ପାଇଁ ଆମେ ସମସ୍ତେ କେମିତି ବାଟଟା ସଫା କରିଦେଉଚୁ । କିନ୍ତୁ ଆମ ପାଇଁ କେହି ବାଟ ସଫା କରିନଥିଲେ । ଆମେ ଦୁହେଁ ହଠାତ୍ ହାବଡ଼ା-ହାବୁଡ଼ି ହୋଇ ବାନ୍ଧି ହୋଇପଡ଼ିଲୁ କୋଉ ଜନ୍ମଜନ୍ମାନ୍ତର ପାଇଁ । କୋଟି ଯୁଗର ଏ ବନ୍ଧନ । ସମାପ୍ତ ମୁଗ ଯାଇଚ, ସମବାଜ୍ୟର ଯୁଗ ଆସୁଚ—ଏ ବନ୍ଧନ କିନ୍ତୁ···

ରମା : ତୁଟି ନାହିଁ···

କରୁଣା : କି ତୁଟିବ ନାହିଁ । (ଦୁହେଁ ଟିକିଏ ବୁଲାଚଲା କଲେ )

ରମା : ଭାରି ସୁନ୍ଦର ଏ ଜାଗାଟି ।

କରୁଣା : ଦେବସ୍ଥାନ—ଦେବତା ପୀଠ—ସୁନ୍ଦର ହବ ତ କଥା ।

ରମା : ସେପାଖରେ କେତକୀ ବଣ—ଏ ପାଖରେ ଚମ୍ପାଗଛ—ଏ ପାଖରେ ନଇବନ୍ଧରେ କଦମ୍ବ—ସେ ପାଖରେ ମନ୍ଦିର - ମଝିରେ ଚଉତରା । ଯେମିତି ସୁନ୍ଦର—ସେମିତି ନିକାଞ୍ଚନ—କେହି କୁଆଡ଼େ ନାହାନ୍ତି । (ପୂଜକ ଆସିଲେ)

କରୁଣା : ଏଇ, ପୂଜକ ଗେ ସାଇଁ ଆସିଲେଣି···ପ୍ରଣାମ ଆଜ୍ଞା !

ପୂଜକ : ସର୍ବାରିଷ୍ଟ ଶାନ୍ତିର୍ଭବତୁ । ଆଜ ଏଠି ବରକନ୍ୟା ଦେଖାଚାହାଁର ପ୍ରସ୍ତାବ ଅଛି ଯେ ?

କରୁଣା : ଆଜ୍ଞା !

ପୂଜକ : ଆପଣ କଣ···

କରୁଣା : କନ୍ୟାପକ୍ଷ ।

ପୂଜକ : ଏଇ ମା' ଲକ୍ଷ୍ମୀ ହଉଚନ୍ତି କନ୍ୟା ପାତ୍ରୀ ?

କରୁଣା : ନା—ନା—ସେ ହେଉଚନ୍ତି ମୋର...
ପୂଜକ : ସହଧର୍ମିଣୀ ?
କରୁଣା : ଆଜ୍ଞା ! କନ୍ୟାପାକ୍ଷୀ ହେଉଚନ୍ତି ସ୍ୱାଙ୍କ ସାନଭଉଣୀ । ଆସିନାହାନ୍ତି ।
ପୂଜକ : ଆସିନାହାନ୍ତି ?
କରୁଣା : ଆସିନାହାନ୍ତି ମାନେ ଆସୁଛନ୍ତି । ଆମେ ଆମ ଘରୁ ଆସିଲୁ—ସିଏ ତାଙ୍କ ଘରୁ ତାଙ୍କ ଭାଇ ଆଉ ମା'ଙ୍କ ସାଥିରେ ଆସୁଚନ୍ତି ।
ପୂଜକ : ଆପଣେ ତେବେ କନ୍ୟାକର୍ତ୍ତା ?
କରୁଣା : ଆପଣଙ୍କ ଦୟାରୁ ।
ପୂଜକ : ଆପଣଙ୍କ ଶୁଭନାମ ?
କରୁଣା : କରୁଣାକର ମହାପାତ୍ର ।
ପୂଜକ : ଏଇ ଆମ ଖଇତପଡ଼ା କରୁଣାକର ମହାପାତ୍ର ?
କରୁଣା : ଆଜ୍ଞା !
ପୂଜକ : ଆଉ ବରପାତ୍ର ?
କରୁଣା : ବରପାତ୍ର ହେଉଛନ୍ତି ପଦ୍ମପୁରର ନିଧିରାମ ସାମନ୍ତରାଙ୍କ ଭଣଜା ।
ପୂଜକ : ହଉ...ସବୁ ସେଇ କରୁଣାନିଧିଙ୍କ ଇଚ୍ଛା ।
କରୁଣା : ତା' ଅର୍ଥ ?
ପୂଜକ : କାହା ଅର୍ଥ ପୁଚ୍ଛିବାହେଲେ ?
କରୁଣା : ଯେହେତୁ ମୋନାମ କରୁଣାକର, ଆଉ ତାଙ୍କ ନାମ ନିଧିରାମ...
ପୂଜକ : ନାଇଁ ନାଇଁ ମହାପାତ୍ରେ, କରୁଣାନିଧି ହେଉନ୍ତି ସ୍ୱୟଂ କରୁଣାନିଧି । ତାଙ୍କ କରୁଣା ବିନା ଏଠି କାହାରିକୁ ନିଧି ପ୍ରାପ୍ତ ହେବନାହିଁ । ତେବେ ଏ ନାମର ଏକ ମାହାତ୍ମ୍ୟ ଏଠି ରହିଚ...ଗୂଢ଼ ତତ୍ତ୍ୱ ରହିଚ ।
ରମା : କି ତତ୍ତ୍ୱ ପୂଜକ ଗୋସେଇଁ ?
ପୂଜକ : ଶୁଣିଥିବେ ତ, ଏ ପୀଠରେ ଆମର ବହୁ ବନ୍ଧୁ ବିବାହର ଆୟୋଜନ-ଦେଖାଚାହିଁ ନିର୍ବନ୍ଧ ଆଦି ହେଇଥାଏ ।
କରୁଣା : ସେଇ ମାହାତ୍ମ୍ୟ ଶୁଣି ତ ଆମେ ଏଠିକି ଆସିଚୁ ।
ପୂଜକ : ଅନେକ ଦିନ ତଳର କଥା । ଝିଅଟିର ନାଁ କରୁଣା—ଆଉ ପୁଅଟିର ନାଁ ନିଧି ।
ରମା : ସେମାନଙ୍କର ଦେଖାଚାହିଁ ଇଣ୍ଟରଭ୍ୟୁ ସବୁ ଏଇଠି ହେଇଥିଲା ?
ପୂଜକ : ନା, ସେସବୁ ପାଠ ତାଙ୍କ ନିଜ ନିଜ ଭିତରେ ତୁଟିଯାଇଥିଲା । ବିବାହ କରିବାପାଇଁ ସେ ଦୁହିଁଙ୍କର ରାଜି—କିନ୍ତୁ ସେମାନଙ୍କର ବାପା-ମା' ଏ ପ୍ରସ୍ତାବରେ ରାଜି ନୁହଁନ୍ତି ।

କରୁଣା : ସେମାନେ ବାପ ମା' ନୁହଁନ୍ତି—ଦୁଇଟା କଂସ—ଦୁଇଟା ରାବଣ—ଦୁଇଟା ମହିଷାସୁର !

ପୂଜକ : ଦୁହେଁ ଘର ଛାଡ଼ି ପଳେଇ ଆସିଲେ ଏଠିକି । ଏଠି ଆସି ଧାରଣା ଦେଲେ । ଦିନ ଦିନ-ରାତି ରାତି—ଖିଆ ନାହିଁ ପିଆ ନାହିଁ—ଧାରଣା ।

କରୁଣା : ବନ୍ଧନ—ଜନ୍ମଜନ୍ମାନ୍ତରର ବନ୍ଧନ···

ରମା : ସେ ବନ୍ଧନ ତୁଟି ନାହିଁ···

କରୁଣା : କି ତୁଟିବ ନାହିଁ ।

ରମା : ତା'ପରେ ?

ପୂଜକ : ସାଇ ବନ୍ଧୁ କୁଟୁମ୍ବ ସିଏ ଯେତେ ବୁଝାଇଲେ ସେମାନେ କିଛି ଶୁଣିଲେ ନାହିଁ । ତାଙ୍କ ପ୍ରତିଜ୍ଞାରେ ସେ ଦୁହେଁ ଅଟଳ । ପ୍ରାଣବଳି···ବୁଝିଲେ ମହାପାପେ—ପ୍ରାଣ-ବଳି ।

କରୁଣା : ପ୍ରାଣବଳି ! ତା' ଅର୍ଥ କେଦାର ଗୌରୀ ! !

ପୂଜକ : କେଦାର ଗୌରୀ ତ ପୋଥିଗତ ବିଦ୍ୟା···ଇଏ ତ ଆଖି ଆଖିଦେଖା କଥା !

ରମା : ଦୁହେଁ ତେବେ ପ୍ରାଣବଳି ଦେଇ ମରିଗଲେ ?

ପୂଜକ : ମରିଗଲେ !! ନାହିଁ ମା, ମରିବେ କାହିଁକି ? ବିବାହ କରି ସୁଖରେ ଘର ସଂସାର କରି ରହିଲେ । ସେମାନଙ୍କର ବଂଶ ନାତି ନାତୁଣୀ ବର୍ତ୍ତମାନ ବିଦ୍ୟମାନ ।

ରମା : ସେମାନେ ପ୍ରାଣବଳି ଦେବା କଥା ପରା ଆପଣ କହିଲେ ?

ପୂଜକ : ପ୍ରାଣବଳି ଅର୍ଥ ଦୁହେଁ ଦୁହିଁଙ୍କ ପାଖରେ ନିଜ ନିଜ ପ୍ରାଣ ବଳି ଦେଇ ଦେଇଥିଲେ—ଶରୀର ବଳି ନୁହେଁ । ···ଛାର ଶରୀରଟା କଥା ସେମାନେ ଚିନ୍ତା କରନ୍ତେ ବା କାହିଁକି ?

କରୁଣା : ଶେଷରେ ତେବେ ସେ ଦୁହିଁଙ୍କର ବିବାହ ହେଲା ?

ପୂଜକ : ହଁ—ମହାସମାରୋହରେ ।···ସେଇ ଦିନଠୁଁ ଏଠି ଏ କରୁଣାବନ୍ଧ ନାଁର ମାହାତ୍ମ୍ୟ ଗଢ଼ିଆସିଛି—ଆଉ ସେଇ ଦିନଠୁ ଏଠିକି ଯେତେ ଯେତେ ପାତ୍ରପାତ୍ରୀ ଦେଖାଚାହାଁ କରିବାକୁ ଆସିଛନ୍ତି, ସେମାନେ କେହି ବିଫଳ ହୋଇ ଫେରିନାହାନ୍ତି ।

ରମା : କେହି ଫେରିନାହାନ୍ତି ?

ପୂଜକ : ନା···କେହି ଫେରିନାହାନ୍ତି । ଶୁଣିବେ ମା' ଗୋଟିଏ ଘଟଣା । ପାତ୍ରୀଟି ଅସୁନ୍ଦରୀ—ଯାହାକୁ କହନ୍ତି ଅସୁନ୍ଦରୀ । ପାତ୍ରୀକୁ ଦେଖିବାକ୍ଷଣି ଅନ୍ୟ ପକ୍ଷର ସମସ୍ତେ ନାକ ଟେକିଲେଣି । କିନ୍ତୁ ବରପାତ୍ର ଆଖିରେ ପଲକ ପଡ଼ୁନି । ଏକଲୟରେ ସେ ପାତ୍ରୀକୁ ଚାହିଁରହିଛି ।

ରମା : କାହିଁକି ?

କରୁଣା : ହୁଏତ ବନ୍ଧୁ ଆଶା କରି ସେ ଆସିଥିଲେ । କିନ୍ତୁ ପାତ୍ରୀର ଅସୁନ୍ଦର ରୂପ ଦେଖି ସେ ଏମିତି ହତାଶ ହୋଇପଡ଼ିଲେ ଯେ ତା' ଆଖିରେ ଆଉ ପଲକ ପଡ଼ିଲାନାହିଁ ।

ପୂଜକ : ନା' ତା' ନୁହେଁ ମହାପାତ୍ରବାବୁ !

ରମା : ଆଉ ତେବେ କାହିଁକି ତା ଆଖିରେ ପଲକ ପଡ଼ୁନଥିଲା ?

ପୂଜକ : ସେକଥା କହିଲେ ସେ । କହିଲେ—ମୁଁ ମାନୁଛି ପାତ୍ରୀ ଅସୁନ୍ଦର । ତା' ମୁହଁ ଅସୁନ୍ଦର —ତା' ଆଖି ଅସୁନ୍ଦର—ନାକ ଅସୁନ୍ଦର—ହାତର ନଖ ଅସୁନ୍ଦର । କିନ୍ତୁ··· କିନ୍ତୁ ତା' ପାଦର ଅଲତାଧାର···

ରମା }
କରୁଣା } : ଅଲତାଧାର ?

ପୂଜକ : ହଁ ଅଲତାଧାର । କି ସୁନ୍ଦର ! କି ଚୋଫା ! ବରପାତ୍ରଟି କହିଲେ—କହିଲେ, ବନ୍ଧୁ ଅଲତାପିନ୍ଧା ପାଦ ସେ ଦେଖିଛି—କିନ୍ତୁ ଏ ପାଦକୁ ଏ ଅଲତାଧାର ଯେମିତି ଘେରିଛି—ଠିକ୍ ଯେମିତି କଳା ମେଘରେ ବିଜୁଳିଗାର ।

କରୁଣା : ହୁଏତ ଅଲତାଟା ଖୁବ୍ ଦାମିକା !

ପୂଜକ : ନା' ତା' ନୁହେଁ, ତା'ନୁହେଁ କରୁଣାକର ବାବୁ ! ସେ କହିଲେ—କହିଲେ ମୋ ଆଖି ଦି'ଟା ଯେ ଆପେ ଆପେ ଏ ଅଲତାପିନ୍ଧା ପାଦ ପାଖକୁ ଟାଣି ହୋଇ ଯାଉଛି—ଇଏ ଅଲତାର ଗୁଣ ନୁହେଁ କି ନାପିତୁଣୀର ଗୁଣ ନୁହେଁ—ଇଏ ହେଉଛି ଏ ପାଦର ଗୁଣ ।

ରମା : ସେମାନଙ୍କର ତେବେ ବିବାହ ହେଲା ?

ପୂଜକ : ମହାସମାରୋହରେ ।

ରମା କେବଳ ଅଲତାପିନ୍ଧା ପାଦପାଇଁ ?

ପୂଜକ : ହଁ ମା, କେବଳ ଅଲତାପିନ୍ଧା ପାଦ ।

କରୁଣା : ଉମା ତା' ପାଦରେ ଅଲତାପିନ୍ଧି ଆସିବଟି ରମା ?

ପୂଜକ : (ହସି) ସବୁ ପାତ୍ର ତ ଆଉ ଅଲତାପିନ୍ଧା ପାଦ ଖୋଜିବେ ନାହିଁ···କିନ୍ତୁ ଆପଣ ବ୍ୟସ୍ତ ହେଉଛନ୍ତି କାହିଁକି ? ଦେଖିବେ—କରୁଣାନିଧିଙ୍କ ମାହାତ୍ମ୍ୟରୁ ସବୁ ଠିକ୍ ହୋଇଯିବ । କହୁଛି ପରା, ଏଠୁ କେହି କେବେ ନିରାଶ ହୋଇ ଫେରିନାହାନ୍ତି କି ଫେରିବେନାହିଁ ।···ହଉ ମହାଶୟ, ମୁଁ ଆସୁଛି—ଆପଣମାନଙ୍କର ଦେଖାଶୁଣା କାମ ସରୁ—ମୁଁ ପୁଣି ଆସିବି ।

କରୁଣା : ଏ ଜାଗାର ତା'ହେଲେ ଏ ମାହାତ୍ମ୍ୟ ରହିଛି !

ରମା : କିଏ ଜାଣେ ? ଥିବ । ଆଖିଦେଖା କଥା ତ ନୁହେଁ—ଶୁଣା କଥା ।

କରୁଣା : କିନ୍ତୁ ପୂଜକ ମହାଶୟ ଯାହା କହୁଛନ୍ତି—

ରମା : ସିଏ ତ ଅତି ଭଲ କଥା କହୁଚନ୍ତି । ତମେ ଏମିତି ଡରଯାଉଚ କାହିଁକି ? ଉମା ତା' ପାଦରେ ଅଳତା ନ ପିନ୍ଧିଲେ ବରପାତ୍ର ତାକୁ ଅପସନ୍ଦ କରିଦେବ ବୋଲି ତମେ ଭାବୁଚ ବା କାହିଁକି ? ଉମା ଭଳି ଝିଅକୁ ପୁଣି କିଏ ଅପସନ୍ଦ କରିବ ? ···ମୋର ଖାଲି ଡର ହଉଚି—

କରୁଣା : କି ଡର ?

ରମା : ଉମା ମନକୁ ବରପାତ୍ର ଯଦି ନଯାଏ ?

କରୁଣା : ଭୁଲ ହୋଇଗଲା । ଏ କଥାଟା ପୂଜକଙ୍କଠୁବୁଝିରଖିଥିଲେ ହୋଇଥାନ୍ତା ।

ରମା : କି କଥା ?

କରୁଣା : କି କି ଦେବତାର ବରପାତ୍ର ଏଠି ପାରଉତ୍ତୀର ହୋଇଯାନ୍ତି ।

ରମା : ପୂଜକ ପରା କହୁଲେ ଏଠୁ କେହି ବିଫଳ ହୋଇ ଫେରନ୍ତିନାହିଁ ।

କରୁଣା : ହୁଁ, ଏଇ ହେଲା କରୁଣାନ୍ଧଙ୍କ କରୁଣା ।

ରମା : କେନ୍ତ ବରପାତ୍ର ନାଁରେ ଯଦି ବଳେଇ କୁକୁର ଆସି ଏଠି ଥପାହେବେ ?

କରୁଣା : ନନ୍ଧିରାମ ବାବୁଙ୍କ ଭଣଜା ଗଦ୍ଧାଧରକୁ ତମେ ବଳେଇ କୁକୁର ସଙ୍ଗେ ତୁଳନା କରୁଚ ?

ରମା : ଗଦ୍ଧାଧରକୁ ଦେଖିଚ ତମେ ?

କରୁଣା : ଦେଖିଲି ଆଉ କୋଉଠି ? ଆଜି ଏଇଠି ଯାହା ଦେଖିବ ।

ରମା : ତା' ହେଲେ ସେ କନ୍ଦର୍ପ ଭଳି ସୁନ୍ଦର କି ହନୁମାନ ଭଳି ବାନ୍ଦର ଜାଣିବ କେମିତି ? ···ଉମାର ଭାଗ୍ୟ ! କନ୍ମଜନ୍ମାନ୍ତର ପାଇଁ ଯାହା ସାଙ୍ଗରେ ସେ ବନ୍ଧାହବାକୁ ଯାଉଚି···

କରୁଣା : ସିଏ ସୁନ୍ଦର ହଉ କି ବାନ୍ଦର ହଉ···

ରମା : ସେ ବନ୍ଧନ ତୁଟେ ନାହିଁ···

କରୁଣା : କି ତୁଟିବ ନାହିଁ । ହେଲେ କାହାନ୍ତି—ତମ ଗୁମେଣି ଯାନ ଭଳି ରହନ୍ତି କାହାନ୍ତି ? ଉମା କାହିଁ ? ତମ ବୋଉ କାହାନ୍ତି ? କିଏ କାହାନ୍ତି ?

ରମା : ତମେ ବ୍ୟସ୍ତ ହୁଅନାହିଁ, ରବି ସେମାନଙ୍କୁ ଠିକ୍ ନେଇକରି ଆସିବ ।

କରୁଣା : ଆଉ କେତେବେଳେ ? ଆମ ଆଗରୁ ସେମାନଙ୍କର ଏଠି ଆସି ପହଞ୍ଚିବାର କଥା ।

ରମା : ଆସିବେ ବାବୁ, ଠିକ୍ ବେଳେ ଆସି ପହଞ୍ଚିବେ । ଆଚ୍ଛା, ଦେଖାଗୁହାଁ—କଥାବାର୍ତ୍ତା —ଇଣ୍ଟରଭ୍ୟୁ—କୋଉଠି ହବ କହିଲ ?

କରୁଣା : ଏଇ ଚଉତରା ଉପରେ । ଏଠି ତ ଆଉ କେହି ନାହାନ୍ତି ।

ରମା : ଉମା କୋଉଠି ବସିବ କହିଲ ?

କରୁଣା : ଉମା ?···ଉମା···ଉମା—ବସିବ ଏଇ, ଏଇଠି ଏଇ, ଯୋଉ ପଦ୍ମଫୁଲ ଚିତ୍ର ଏଠି କଟାହୋଇଚି ତା'ରି ଉପରେ । ଆଉ ଗଦ୍ଧାଧର ବସିବ ସେଠି—ସେଇ ଯୋଉ

ପକ୍ଷିରାଜ ଘୋଡ଼ା ଚଢ଼ କଟାହେଇଚ ତା' ଉପରେ । ମଝିରେ ରହିବ ଏ ପଶାପାଲି-ଚଢ଼ ।

ରମା : ଖୁବ ଭଲ ହବ । ସତେ ଏକୋ—ଖୁବ ଭଲ ହବ ।

କରୁଣା : ପଗ୍ଲୁରୁଚ ପୁଣି ! ରାଜପୁଅ ଭଳି ପକ୍ଷିରାଜ ଘୋଡ଼ାରେ ବସି ଗପ୍ମାଧର ଆସିବ ପଦ୍ମ-ଗନ୍ଧା ଉମାରାଣୀ ପାଖକୁ । ମଝିରେ ପଶାପାଲି । ଦୁହିଁଙ୍କର ପଶାଖେଳ ଚାଲିବ ।

ରମା : ଆଉ ଆମେ ସବୁ ?

କରୁଣା : ଆମେ ଏ ପାଖରେ ଉମାକୁ ଘେରି ବସିବା—ଆଉ ତାଙ୍କ ପକ୍ଷର ସେମାନେ ସେ ପାଖରେ ଗପ୍ମାଧରକୁ ଘେରି ବସିବେ ।

ରମା : ତା'ପରେ ?

କରୁଣା : କରୁଣାନିଧି— ତା' ପରେ ଯାହା ହବ ସେ କଥା ଜାଣନ୍ତି ସେଇ କରୁଣାନିଧି ! ଆରେ ! ଏଇ ନିଧିରାମବାବୁ ଆସୁଚନ୍ତି ।

ରମା : କାହାନ୍ତି ?

କରୁଣା : ଏଇ ସେ କଦମ୍ବଗଛ ପାଖରେ ନଈବନ୍ଧକୁ ଉଠିଲେ ।

ରମା : ସାଙ୍ଗରେ କିଏ ?

କରୁଣା : ଗପ୍ମାଧର ! ଗପ୍ମାଧର ନିଶ୍ଚୟ ।

ରମା : ଖୁବ ସୁନ୍ଦର ତ ଦେଖିବାକୁ ।

କରୁଣା : କରୁଣାନିଧି ! କରୁଣାନିଧିଙ୍କ କରୁଣା ଆମ ପ୍ରତି ଥିଲେ ହେଲେ ଊଣା ହେବନାହିଁ । ଏଇ ଗପ୍ମାଧର ସେ କଦମ୍ବଗଛ ମୂଳେ ଅଟକିଲ—କାହାକୁ ଯେମିତି ଅପେକ୍ଷା କରୁଚ । ନିଧିରାମ ବାବୁ ଏଣିକି ଆସୁଚନ୍ତି । ତମେ ଟିକେ ସେ କେତକୀ ବୁଦା ଉହାଡ଼କୁ ଯାଅ—ମୁଁ ତାଙ୍କୁ ସ୍ୱାଗତ ସମ୍ଭାଷଣ ଜଣାଏ ।

[ ରମା ଅନ୍ତରାଳକୁ ଚାଲିଗଲେ । ନିଧିରାମ ଆସିଲେ । ପରିଧାନ ସାଧାରଣ ଧୋତି ଓ ପଞ୍ଜାବି । କରୁଣାକର ଓ ନିଧିରାମ ଦୁହେଁ ଦୁହିଁଙ୍କୁ ଅଭ୍ୟର୍ଥନା ଜଣାଇବା ପାଇଁ ଆଗେଇଆସିଲେ । ]

ନିଧିରାମ }
କରୁଣା } : ( ଏକସାଥିରେ ) ପ୍ରଣାମ···ପ୍ରଣାମ ଗ୍ରହଣ କରନ୍ତୁ ।

ନିଧି : କି ଭାଗ୍ୟ, କି ଭାଗ୍ୟ ମୋର ! ଆଜି ସକାଳୁ ଉଠି ମୁଁ ଶଙ୍ଖଚିଲ ମୁହଁ ଚାହିଁଥିଲି ।

କରୁଣା : ମୁଁ ଘରୁ ବାହାରିଲାବେଳେ ପୂର୍ଣ୍ଣକୁମ୍ଭ—ବାଟରେ ଭଦଭଦଲିଆ ଉଡ଼ିଗଲା । କି ଆନନ୍ଦ ! କି ଆନନ୍ଦ !!

ନିଧି : ଦେବସ୍ଥଳୀରେ ମିଳନ···କି ଭାଗ୍ୟ···କି ଭାଗ୍ୟ···କି ଭାଗ୍ୟ !

କରୁଣା : ନମସ୍କାର ନନ୍ଦରାମ ବାବୁ !
ନନ୍ଦ : ନମସ୍କାର...ନମସ୍କାର କରୁଣାକର ବାବୁ, ନମସ୍କାର !
କରୁଣା : ଆପଣଙ୍କର ସବୁ ଭଲ ତ !
ନନ୍ଦ : ଭଲ, ଆଉ ଆପଣଙ୍କର ? ଆପଣଙ୍କର ସବୁ କୁଶଳତ ?
କରୁଣା : କୁଶଳ ।
ନନ୍ଦ : ଘରେ ପିଲାମାନେ କୁଶଳ-ମଙ୍ଗଳରେ ଅଛନ୍ତି ତ ?
କରୁଣା : ଆପଣଙ୍କ କୃପାରୁ ସମସ୍ତେ ମଙ୍ଗଳରେ ଅଛନ୍ତି । ଆଉ ଆପଣଙ୍କ ପିଲାମାନେ ?
ନନ୍ଦ : ଆଉ ଅଧିକ କିଛି କହିବାକୁ ପଡ଼ିବନାହିଁ । ଆପଣଙ୍କର ଯାହା, ମୋର ସେଇଆ । ଆପଣଙ୍କ ପିଲାମାନେ ଯେତେବେଳେ ଭଲରେ ଅଛନ୍ତି—ମୋ' ପିଲାମାନେ ନିଶ୍ଚୟ ଭଲରେ ରହିବେ । (ହସ)
କରୁଣା : ତା'ହେଲେ ?
ନନ୍ଦ : ନମସ୍କାର !
କରୁଣା : ଆପଣଙ୍କର ଯୋଉମାନେ ଆସିବାର କଥା ସମସ୍ତେ ଆସିଚନ୍ତି ତ ?
ନନ୍ଦ : ଆସିଚନ୍ତି, ଆସୁଚନ୍ତି, ଆସିବେ । ସେଥିରେ କିଛି ମଲଧୂଲ ନାହିଁ । ଆଉ ଆପଣଙ୍କର ?
କରୁଣା : ଠିକ୍ ସେଇଆ । ତୋଉଥିରେ କିଛି ମଲଧୂଲ ନାହିଁ । ଆସିଚନ୍ତି, ଆସୁଚନ୍ତି—ଆସି ପହଞ୍ଚିଗଲେ ବୋଲି ଜାଣନ୍ତୁ ।
ନନ୍ଦ : କି ଭାଗ୍ୟ !! ସାନ୍ତ-ସାନ୍ତାଙ୍କର ଭେଟ ହବା ପୂର୍ବରୁ ଆମ ଦୁହିଁଙ୍କ କଥାରେ କାମରେ ଯେମିତ ଦଶମେଳକ ଅଉ ରାଜଯୋଟକ ହେଇଯାଉଚ ।
କରୁଣା : ସବୁ ସେଇ କରୁଣାନନ୍ଦଙ୍କ ଲୀଳା ! ଜାଣିଚନ୍ତି ତ ? କଥାଟାର ମାହାତ୍ମ୍ୟ ଜାଣିଚନ୍ତି ତ ?
ନନ୍ଦ : ଜାଣେ କରୁଣାକର ବାବୁ—ଏଠିକାର ନନ୍ଦଙ୍କ ମାହାତ୍ମ୍ୟ ଜାଣେ ।
କରୁଣା : ଆଉ ତା' ହେଲେ ବାକି ରହିଲା କଣ ? ମୁଁ ଯାହା ଜାଣେ ଆପଣ ଜାଣନ୍ତୁ—ଆପଣ ଯାହା ଜାଣନ୍ତି ମୁଁ ଜାଣେ । ଆପଣମାନେ ଏବେ ଟିକିଏ ସୁସ୍ଥ ହୁଅନ୍ତୁ—ଆମେ ବି ଟିକିଏ ସୁସ୍ଥ ହଉଚ୍ । ତା'ପରେ ଆରମ୍ଭ କରିଦେବା ।
ନନ୍ଦ : ନିଶ୍ଚୟ—ଯେତେ ଚଞ୍ଚଳ ପାରନ୍ତି ଆରମ୍ଭ କରିଦେବା । ଡେରି କରି ଲାଭ କଣ ? ହଉ ଆସନ୍ତୁ ।
କରୁଣା : ଆସିବା ହେଉନ୍ତୁ । ( ନନ୍ଦରାମ ବିଦାୟନେଲେ )
କରୁଣା : ରମା, ରମା—କେତକୀ ଉଢ଼ାଲରୁ ବାହାର ଏଣିକି ଆସ । ନନ୍ଦରାମ ବାବୁ ଗଲେଣି—ଆସ—ଶୁଣ ।

ରମା : (କହୁ କହୁ ଆସିଲେ) ଆଉ ଆସିବ କଣ—ଶୁଣିବ କଣ ? ତମେ ଆସି ଦେଖ, ରବି କଣ କହୁଚ । (ରମା ଓ ରବି ଆସିଲେ)

କରୁଣା : କ'ରେ ରବି, ସେମାନେ କାହାନ୍ତି ?

ରବି : ଆସିଲେ ନାହିଁ ।

କରୁଣା : ଆସିଲେ ନାହିଁ ?

ରବି : ନା ।

କରୁଣା : ମାନେ ?

ରବି : କ'ଣ ମାନେ ?

କରୁଣା : କ'ରେ ଆସିଲେ ନାହିଁ କଣ କହୁଚୁ ?

ରବି : ଆସିଲେ ନାହିଁ ମାନେ— ସେମାନେ ଏଠିକି ଆସିଲେ ନାହିଁ ।

କରୁଣା : ଉମା ଆସିଲା ନାହିଁ ?

ରବି : ନା ।

କରୁଣା : ତୋ' ବୋଉ ?

ରବି : ବୋଉ କହିଲା ଉମା ଯାଉନ ତ ମୁଁ କାହିଁକି ଯିବ ?

କରୁଣା : ରବି !

ରବି : ଭାଇ !

କରୁଣା : ତୋ ମୁଣ୍ଡ ଖରାପ ହେଇଗଲାଣି କି ?

ରବି : ସେକଥା ମୁଁ କେମିତି କହିବ ?

କରୁଣା : କି ରେ, ଉମାକୁ ରୁ ଜୋର୍ କରି ରିକ୍ସାରେ ବସେଇ ନେଇଆସିଲୁ ନାହିଁ ?

ରବି: ସେ ଚେଷ୍ଟା କରିଥିଲି । ହେଲେ ଉମା କହିଲା—ଦେଖ ରବିଭାଇ, ଯେବେ ମତେ ଜୋର୍ କରି ରିକ୍ସାରେ ବସେଇ ନେବ ତେବେ ମୁଁ ବେହୋସ ହେଇଯିବ ।

କରୁଣା : ବେହୋସ୍ ହେଇଥିଲେ ହେଇଥାନ୍ତା—ରୁ ନେଇଆସିଲୁ ନାହିଁ କାହିଁକି ?

ରବି : କି କଥା ଯେ ତମେ କୁହ କରୁଣା ଭାଇ ! ଉମା ବେହୋସ୍ ହେଇଯାଇଥିଲେ ମୁଁ ସେଇ ସାଙ୍ଗେ ସାଙ୍ଗେ ବେହୋସ୍ ହେଇଯାଇଥାନ୍ତି । ଅପା କଣ ଜାଣିନାହିଁ ?

ରମା : ହଁ, ରବିଟାର ସେ ଦୋଷ ଅଛି । ଅଉ କାହାକୁ ବେହୋସ୍ ହେବାର ଦେଖିଲେ ସେ ନିଜେ ବେହୋସ୍ ହେଇଯିବ ।

ରବି : ଥରେ ଗୋଟାଏ ପ୍ରଜାପତି ବେହୋସ୍ ହେଇଗଲା ବୋଲି ପରା ମୋ ଚେତା ବୁଡ଼ିଗଲା !

କରୁଣା : ଚେତା ବୁଡ଼ିଗଲା ? ମରି ପାଉଁଶ ହେଇଗଲୁ ନାହିଁ ! ଅପଦାର୍ଥ, କୁଳାଙ୍ଗାର କୋଉଠିକାର··· ହୁଇହେ, ଏ କି ପାଠ, ଏ କି କଥା ?

ରମା : ମତେ କହୁଚ···ମୁଁ କଣ କରିବ ? ହେଦିନ ତ ଆମେ ବଢ଼େଇଯାକ ଆମଘରକୁ ଯାଇ ସବୁ ଠିକ୍‌ଠାକ୍ କରି ଆସିଲେ—ଆଜ ବୋଉ ଆଉ ଉମା ଏଠିକି ଆସିବାର କଥା ।

କରୁଣା : ହଇରେ ରବି !
ରବି : **ଆଜ୍ଞା** !
କରୁଣା : ରମା ଘରେ କଣ କରୁଚି ?
ରବି : ସେ କ'ଣ ଘରେ ଅଛି ?
କରୁଣା : ଆଉ ?
ରବି : ପଞ୍ଚୁଦୋଳ ମେଲଣ ଦେଖି ଗଲଣି ।
କରୁଣା : କଣ ହେଲା ?
ରବି : ଯୋଉ ଶକ୍ୟାରେ ଏଠିକି ଆସିବାର କଥା, ସେଇ ଶକ୍ୟାରେ ବସି ରମା ଆଉ ବୋଉ ପଞ୍ଚୁଦୋଳ ମେଲଣ ଦେଖିଗଲେ ।
କରୁଣା : ହେ କରୁଣାନିଧି !
ରମା : ଆଉ ନିଧି ! ନିଧି ଆଉ କଣ କରିବେ ?
କରୁଣା : ତମେ ଏକଥା କହୁଚ ?
ରମା : କଣ ଖୁସିରେ କହୁଚି ? ଯାହା ଦେଖୁଚି, ସେଇଆ କହୁଚି ।
କରୁଣା : ତୁ ମତେ ଠିକ୍ ଠିକ୍ କହିଲୁ ରବି···ରମା କଣ କହିଲା ?
ରବି : କହିଲା ମୁଁ ଯିବନାହିଁ—ବାସ୍ !
କରୁଣା : କାହିଁକି ଆସିବ ନାହିଁ ? ନ ଆସିବାର କାରଣଟା କଣ ?
ରବି : କାରଣ ?
କରୁଣା : ହଁ କାରଣଟା କଣ ? (ରବି ଯିବାକୁ ବାହାରିଲା) କି ରେ କୁଆଡ଼େ ଚାଲିଲୁ ?
ରବି : ଯାଉଚି କାରଣଟା ବୁଝିଆସିବି ।
କରୁଣା : ଦେଖୁଚ, ଦେଖୁଚ ଏ ବୋକା ଗଧଟାକୁ ! କାରଣ ବୁଝିବାକୁ ଯାଉଚି ।
ରବି : ବୁଝିନଥିଲି ଯେତେବେଳେ ତମକୁ କଣ ମିଛ କହିଥାନ୍ତି ?
କରୁଣା : ତୁ ଯା ଏଠୁ ।
ରବି : କୁଆଡ଼େ ଯିବି ?
କରୁଣା : ତୋ ମୁହଁ ମୁଁ ଚାହିଁବି ନାହିଁ । ଯା' ବାହାରି ଏଠୁ ।
ରବି : ଯାଉଚି ଅପା !
ରମା : ଯାଉନୁ ।
ରବି : ଯାଉଚି ତ । ମୋର କଣ ଅଛି ? ମତେ କଣ ଏଠିକି ଆସିବାକୁ ବାଧିଥିଲା ନା ଏଠୁ ଯିବାକୁ ବାଧିଯାଉଚି ! ଯାଉଚି । (ରବି ଚାଲିଗଲା)
କରୁଣା : ହଇଏ କଣ କରିବା କହିଲୁ ? ତମ ବାପା ନାହାନ୍ତି ବୋଲି ନିଜେ ମୁରବି ସାଜି ସବୁ ଦାୟିତ୍ୱ ସବୁ ବୋଝ ମୁଁ ମୋ ନିଜ ମୁଣ୍ଡକୁ ନେଇଥିଲି ଯେ—ତମେ ମା'ଝିଅ ମତେ ଭସେଇଦେଲ—ମୋ ଗଳାରେ ତମେ ଛୁରି ଚଳେଇଦେଲ । ନିଧିରାମ

ବାବୁଙ୍କୁ ମୁଁ କ କୈଫିୟତ ଦେବ ? ପୁଅପକ୍ଷ ସେ—ହେଲେ ଏତେ ଉଦାର—ଏତେ ମହତ୍—ମତେ ଦେଖି ଆନନ୍ଦରେ ଗଦ୍‌ଗଦ୍ ହୋଇ କୁଣ୍ଢେଇ ପକେଇଲେ । ଏଇନେ ଯେ ମୁଁ କଣ କରିବ—କୁଆଡ଼େ ଯିବି, କୋଉଠି ଯାଇ ମରିବ ? (ରମା ସ୍ୱାମୀର ହାତ ଧରିଲା) ଛାଡ଼ ହେ, ହାତଟା କାହିଁକି ଧରୁଚ ? ହାତଟା ଧରିଲେ ସତେ ଯେମିତି କିଛି ଝରିପଡ଼ିବ ।

ରମା : ତମେ ମତେ ଦୋଷ ଦେଉଚ ? ମତେ ନିନ୍ଦୁଚ ?

କରୁଣା : ହଁ ହଁ ତମକୁ ନିନ୍ଦୁଚି । ତମେ କଣ ଜାଣିନଥିଲ ତମ ଭଉଣୀଙ୍କ ଗୁଣ ? ସବୁ ଜାଣିଶୁଣି ମତେ ମହିଁଦରିଆକୁ ଠେଲିଦେଲ କାହିଁକି ?

ରମା : (କାନ୍ଦ କାନ୍ଦ ହୋଇ) ମୁଁ ମୋ ଭଉଣୀକି ଜାଣେ କି ନଜାଣେ, ତମେ ତ ମୋତେ ଜାଣିଚ ! ଆମ ବାହାଘର ଆଗରୁ ଆମର ଯିନା ଦେଖାଶୁଣା ଇଣ୍ଟରଭ୍ୟୁ ହୋଇ ନଥିଲା—ହେଲେ ତମେ ତ ମତେ ଏମିତି ଖାଲି ଦେଖିବାକୁ ଯାଇଥିଲ !

କରୁଣା : ଦେଖିବାକୁ ଯାଇଥିଲି ତ କଣଟା ହୋଇଗଲା ?

ରମା : ଘଣ୍ଟାଏ କାଳ ପରା ତମେ ମୋ ଆଡ଼କୁ ଜଳଜଳ କରି ଚାହିଁରହିଥାଅ—ଆଉ ମୁଁ ଯେମିତି ଘଣ୍ଟାଏ କାଳ ଓଢ଼ଣା ତଳୁ ତମକୁ ଜୁଳୁଜୁଳୁ କରି ଚାହିଁରହିଥାଏ—ଟିକିଏ ହଲ ନାହିଁ କି ଚଳ୍ ନାହିଁ । ଏଇଥିରୁ ବୁଝିନ ଯେ···

କରୁଣା : (କିଛିକ୍ଷଣ ଭାବି) ଅଚ୍ଛା ଅଚ୍ଛା···

ରମା : କ···କଣ ଅଚ୍ଛା ଅଚ୍ଛା ହଉଚ ?

କରୁଣା : ଆଜି ତମେ ଟିକିଏ ପୁଣି ସେମିତି ଜୁଳୁଜୁଳୁ କରି ଚାହିଁପାରିବ ?

ରମା : କାହାକୁ ଚାହିଁବ ? ତମକୁ ?

କରୁଣା : ମତେ ଚାହିଁଲେ କଣ କିଛି ମିଳିବ ? ଚାହିଁବ ଗଙ୍ଗାଧରକୁ ।

ରମା : ଗଙ୍ଗାଧରକୁ ?

କରୁଣା : ହଁ, ଗଙ୍ଗାଧରକୁ । ତମେ ମତେ ବଞ୍ଚାଅ ରମା ! ଏବେ ଗଙ୍ଗାଧର ସାଥିରେ ତମର ଇଣ୍ଟରଭ୍ୟୁ ହବ ।

ରମା : ମୋ-ମୋ-ମୋ-ମୋ-ମୋ-ମୋ-ମୋ-ମୋର···

କରୁଣା : ତମ ପାଟି ଯଦିଓ ଖଞ୍ଜ ବାଜୁ, ହେଲେ କାମ ନଅଟକୁ । କିଷ୍ଟରାମବାବୁ ଜାଣନ୍ତୁ ମୁଁ ମଇଁଷିଟାଏ ନୁହେ, ମଣିଷଟାଏ । ତଣ୍ଟିକଟା ଭଦ୍ରଲୋକ ନୁହେଁ···ସାଦାସିଧା ଖାଣ୍ଟି ଭଦ୍ରଲୋକ । ଏବେ ଏଇ ଘଣ୍ଟାକ ପାଇଁ ତମେ ରମା ନହୋଇ ତମ ସାନଭଉଣୀ ଉମା ସାଜିବ ?

ରମା : ମୁଁ-ମୁଁ ବୋବାଟାଏ—ମୁଁ କେମିତି ଝିଅହୋଇ ଇଣ୍ଟରଭ୍ୟୁ ଦେବ ?

କରୁଣା : ଭଗବାନ ତମକୁ ଏମିତି ସକଳ କରି ଗଢ଼ିଛନ୍ତି ଯେ, ତମେ ବୋବାକି ଝିଅ କେହି ଜାଣିପାରିବେ ନାହିଁ ।

ରମା : କି ସ୍ୱଜ୍ୟନ୍ଥଡ଼ା କଥା ତମେ କହୁଚ ? ଈଶ୍ୱରଭସ୍ମ ସିନା ଦେବ—ତା'ପରେ ?

କରୁଣା : ତା'ପର କଥା ତା'ପରେ । ଲୋକେ ଗୁଣୀଙ୍କ ଦେଖେଇ ଜାଣୀଙ୍କୁ ବାହା କରେଇ ଦଉଚନ୍ତି । ଆମେ ତ କାହିଁ କେତେ ପଛରେ !

ରମା : ନାହିଁ ନାହିଁ ହେ, ମୁଁ ପାରିବ ନାହିଁ ।

କରୁଣା : ପାରିବ ନାହିଁ ?

ରମା : ନାଇଁ, ମୁଁ ପାରିବନାହିଁ ।

କରୁଣା : ତମେ ନପାରିଲେ ମୁ ପାରିବ ।

ରମା : କଣ ପାରିବ ?

କରୁଣା : ନଈରେ ପାଣି ଅଛି । ମୋର ଦ'ଟା ଗୋଡ଼ ଅଛି । ଏଠୁ ସିଧା ଯାଇ ନଈରେ ବୁଡ଼ିମରିପାରିବ । କରୁଣାବନ୍ଧୁ ସିନା ପ୍ରାଣବଳ ଦେଇଥିଲେ—ମୁଁ ଏକାବେଳକେ ଶରୀର ବଳ ଦେବି । କୁହ କଣ କହୁଚ ?

ରମା : ତମେ ଯେତେବେଳେ ଏକଥା କହୁଚ, ମୁଁ ଅଉ କଣ କରିବ ? ହେଇଟି, ମୋ ହାତର ଏ ଶଙ୍ଖା···?

କରୁଣା : ପଣତ ତଳେ ଲୁଚେଇ ରଖିବ ।

ରମା : ସିନ୍ଥିରେ ସିନ୍ଦୁର ?

କରୁଣା : ଇଏ ସିନ୍ଦୁର ନୁହେଁ—ପଞ୍ଚୁଦୋଳ ମେଳଣରେ ଅବିର । ନହେଲେ, ଓଢ଼ଣାଟା ଟିକଏ ବେଶି ଟାଣିଦେବ । (ରମା ଅସ୍ଥିର ହୋଇଉଠୁଥାଏ)

ରମା : ମୁଁ ଏବେ କି ବୁଦ୍ଧି କରିବ ଲୋ ମା'—କି ବୁଦ୍ଧି କରିବ ! ହେ କରୁଣାବନ୍ଧୁ !

କରୁଣା : ହଁ, ଡାକୁଥାଇ ତାଙ୍କ । ଏକଥାରେ ସେଇ ଠିକ୍ ବୁଦ୍ଧି ଶିଖେଇଦେବେ ।

ରମା : ହେଇଟି, ହେଇଟି ଶୁଣ···ଆଉ ଗୋଟାଏ କଥା !

କରୁଣା : କଣ ?

ରମା : ସେ ପୋଡ଼ାମୁହାଁ ଗଙ୍ଗାଧର···

କରୁଣା : ପୋଡ଼ାମୁହାଁ ନୁହେଁ—ଖୁବ ସୁନ୍ଦର ତା ମୁହଁଟି ।

ରମା : ସିଏ ମତେ କଣ ନାଇଁ କଣ ପଚାରିବ—ମୁଁ ତାଙ୍କୁ କଣ କହିବ ?

କରୁଣା : ହଇହେ, ମତେ ବାହାହେଇ, ମୋ ଭଳି ଲୋକ ସାଥିରେ ତମେ ଦ'ବର୍ଷ କାଳ ଘରକରଣା କଲଣି···ସେ ମେଞ୍ଚଡ଼ା ଟୋକା ଗଙ୍ଗାଧର—ତାଙ୍କୁ ତମେ ପାଠ ପଢ଼େଇ ପାରିବ ନାହିଁ ଯେ ମତେ ପଚାରୁଚ ! ଶୁଣିବ କେବେ ? କଣ ତମେ ତାଙ୍କୁ କହିବ ସେକଥା ଶୁଣିବ ମୋ'ଠୁ ?

ରମା : ନାଇଁ, ଥାଉ । ତମେ କଣ ନାଇଁ କଣ କହିବ—ମୁଁ ସେଠି କଣ ନାଇଁ କଣ କହିବ । ଯାହା ଭାଗ୍ୟରେ ଥିବ, ହବ ।

କରୁଣା : ସ୍ୱର୍ଗ୍ୟରେ ଆଉ କଣ୍ଟ ନାହିଁ—ଅଛୁ କେବଳ ଗସ୍ତାଧର ସାଥିରେ ଦେଖାଗ୍ରହା। ଇଣ୍ଟର୍ ଭ୍ୟୁ···ଆସ ।

ରମା : କୁଆଡ଼େ ?

କରୁଣା : ଅ.ଉ ଅରେ ମନ୍ଦର ଦୁଆରମୁହଁରେ ମୁଣ୍ଡିଆ ମାଣ ଆସିବ, ଆସ ।

( ଦୁହିଁଙ୍କର ପ୍ରସ୍ଥାନ । ଟିକଏ ପରେ ଆସିଲେ ନ୍ୟଗ୍ରମ ଓ ମାସ୍ତାଧର । ମାସ୍ତାଧରର ପରିଧାନ ରୁଚିସମ୍ମତ ପ୍ୟାଣ୍ଟ ଓ ସାର୍ଟ । ଦୁହେଁ ଟିକଏ ଚକିତ ଜଣାପଡ଼ୁଥାନ୍ତି । )

ମାସ୍ତାଧର : କାଇଁ, କରୁଣାକରବାବୁ ନାହାନ୍ତି ତ ଏଠି !

ନଧି : ଥିଲେ ତ ! ବୋଧହୁଏ ମନ୍ଦର ଅ.ଡ଼େ ଯାଇଚନ୍ତି ।

ମାସ୍ତାଧର : କଣ କରିବା କହିଲ ମାମୁ ?

ନଧି : ମତେ ପଚ୍ଚରଚ—ମୁଁ କହିବ ? ମୋ ବୁଦ୍ଧି ବୃତ୍ତି ସବୁ ଲୋପପାଇଲଣି ।

ମାସ୍ତାଧର : ଆମ ଏ ଅଞ୍ଚଳରେ ତମେ ସବୁଠୁ ବୁଦ୍ଧିଆ ମାମଲତକାର ବୋଲି ତମର କେତେ ନାଁ ଡାକ ! ଏଠି ଏମିତି ନର୍ଭସ ହେଲେ ଚଳବ ? କଣ କରିବା କୁହ ?

ନଧି : ମୁଣ୍ଡରେ ଚଡ଼କ ପଡ଼ିବା କଥାଟା ଶୁଣିଥିଲି—ହେଲେ ଆଜ ଜାଣିଲି ଚଡ଼କଟା କେମିତି ପଡ଼େ । ବାପଛେଉଣ୍ଡ ବୋଲି ତମ ବ୍ଦ'ଭାଇଙ୍କ ବୋଝ ନଜ ମୁଣ୍ଡରେ ଆବୋର ନେଇଥିଲି ଯେ ଶେଷକୁ ଏଇ ଫଳ ଫଳାଇ । ···ମାସ୍ତାଧର !

ମାସ୍ତା : ଆଜ୍ଞା !

ନଧି : ପଢ଼ିଲୁ—ଆଉଥରେ ପଢ଼ିଲୁ—ଗସ୍ତାଧର କଣ ଚଠି ଲେଖି ପଠେଇଚ ?

ମାସ୍ତା : ପଢ଼ୁଚ । (ପଢ଼ିଲ) "ମାମୁ, ଠିକ୍ ଯିବାକୁ ବାହାରିଲାବେଳକୁ ମୋର ମନେହେଲା —ଏ ଦେଖାଗ୍ରହା ବ୍ୟାପାର ଗୋଟାଏ ଫାର୍ସ । ସେଥିପାଇଁ ମୁଁ ଗଲି ନାହିଁ । ମତେ ଅପେକ୍ଷା କର ବସି ରହିଲେ ମୁଁ କସ୍ମିନ୍ କାଳେ ଯିବନାହିଁ । ରହୁଚ, ସ୍ନେହର ଗସ୍ତାଧର ।"

ନଧି : ଖ୍ଲୁଆ ଗଲଣି ?

ମାସ୍ତା : ହଁ, ଚଠି ଖଣ୍ଡିକ ଧରେଇଦେଇ ସେ ଖୁଲିଗଲଣି ।

ନଧି : କ'ଣ ଏବେ କରିବ ? କରୁଣାକର ବାବୁଙ୍କୁ କେମିତି ମୁହଁ ଦେଖେଇବ ? ତାଙ୍କ ଭଳି ଭଦ୍ରଲୋକ—ସେ ପୁଣି ଜାଣିଚନ୍ତି ଯେ ଗସ୍ତାଧର ମୋ' ସାଥିରେ ଆସିଚ ।

ମାସ୍ତା : ମୁଁ କହୁଥିଲି ମାମୁଁ···

ନଧି : କଣ ?

ମାସ୍ତା : ମୁଁ ବସିଯିବ କି ?

ନଧି : କନ୍ୟାପାକ୍ଷୀ ସାମନାରେ ତୁ ଗସ୍ତାଧର ସାଜ ବସିବୁ ?

ମାସ୍ତା : ହଁ, ସେମାନେ ଆମ ଦୁହିଁଙ୍କୁ କେବେ ଦେଖିନାହାନ୍ତି ତ ?

ନଧି : କଥାଟା କିଛି ମନ୍ଦ କହିଲୁ ପୁଅ ! ହେଲେ ଯଦି ଧରାପଡ଼ିଯାଉ ?

ମାୟା : ମୁଁ କଣ ଏଡ଼େ ବୋକା ନବୁଝିଆ ହୋଇଚି ଯେ ଧରାପଡ଼ିଯିବି ?

ନିଧି : ନା—ନା—ମୁଣ୍ଡ ଭିତରେ ତୋ'ର ଏତେ ବୁଦ୍ଧି—ତୋତେ ପୁଣି ନବୁଝିଆ କିଏ କହିବ ?

ମାୟା : ତେବେ ଗୋଟାଏ କଥା !

ନିଧି : କଣ ?

ମାୟା : ଦେଖାଚାହାଁ ଇଣ୍ଟରଭିଉ ତ ହେବ···ହେଲେ ତା'ପରେ ?

ନିଧି : ତା'ପର କଥା ତା'ପରେ । ଆଗେ କରୁଣାକର ବାବୁଙ୍କ ପାଖରେ ମୋର ମାନ୍ ଟା ରହିଯାଉ । ହଁ, ଶୁଣ—ଏବେଠୁ ତୁ ମାୟାଧର ନୋହୁଁ ଗୟାଧର—ବରପାଲି ଗୟାଧର । ଭଲକରି ହେନ ରଖ । ରଖିଲୁଟି ?

ମାୟା : ହଁ, ରଖିଲି । ମୁଁ ମାୟାଧର ନୁହେଁ—ବରପାଲି ଗୟାଧର ।

ନିଧି : ଠାକୁରେ ତୋତେ କୋଟି ପରମାୟୁ ଦିଅନ୍ତୁ ।

ମାୟା : ଏଇ କରୁଣାକରବାବୁ ବୋଧେ ଆସୁଚନ୍ତି !

ନିଧି : ହଁ ତ···କରୁଣାକରବାବୁ ! ତୁ ଚାଲିଯା ଏଠୁ—ମୁଁ ଡାକିଲେ ଆସିବୁ । ଚାଲିଯା ।
(ମାୟାଧର ଚାଲିଗଲା । କରୁଣାକର ଆସିଲେ । ବର୍ତ୍ତମାନ ଦୁହେଁ ବିଭିନ୍ନ ଛଳନାର ଆଶ୍ରୟ ନେବାକୁ ପ୍ରସ୍ତୁତ ।। ଉଭୟଙ୍କ ଖଣ୍ଡି କାଶ ଓ ମିଛ ହସ ଭିତରେ କିଛି କ୍ଷଣ ଚାଲିଗଲା । କଣ କିଛି କଥା ଆରମ୍ଭ କରିବେ, ଦୁହେଁ ଯେମିତି ଖୋଜି ପାଉନଥାନ୍ତି । ଶେଷକୁ ନିଧିରାମ ଆରମ୍ଭକଲେ···)

ନିଧି : କରୁଣାକର ବାବୁ !

କରୁଣା : ଆପଣଙ୍କ ପଞ୍ଜାବିଟା ଆପଣଙ୍କୁ ବେଶ୍ ମାନିଚି···ବେଶ ।

ନିଧି : ଇଏ ଡାକୁଆ ଧାନ···ବୁଝିଲେ ନା···ଡାକୁଆ ଧାନ ଏ ବର୍ଷ ଛୁଇହୋଇଯାଇଚି । ଧାନ ଯଦି ଫଳେ ଲୋକେ ଅମଳ କରିପାରିବେ ନାହିଁ ।

କରୁଣା : ମୁଁ କହୁଥିଲି···ମାନେ ପଞ୍ଚାୟତ ଇଲେକ୍‌ସନ । ଭାବିଥିଲି ଏଥର ମୁଣ୍ଡ ଖେଳେ-ଇବି ନାହିଁ । ହେଲେ ଲୋକେ ଯଦି ମୋ ପାଇଁ ମୁଣ୍ଡ ଖେଳେଇବେ, ମୋର ଆଉ ଚାରା କଣ ?

ନିଧି : ସେଇଆ ସବୁ ! ବାଲିବାଡ଼ି ନଈ ପୋଖରୀ ସେତେ ଯୋଉଠି ମଶାଥିଲେ ସବୁ ଆସି ଘରେ ଭର୍ତ୍ତି ହୋଇଗଲେଣି । ରାତି ସାରା ମଶା'ର ଗୁଣଟେ ହଜାର ହଜାର ମଶା ପଇଁତରା ମାରୁଚନ୍ତି । କାଲି ଦେଇଛୁ ତାଙ୍କୁ ବୁଦ୍ଧି ଶିଖେଇ ! ମଶାରି ଚାରିପଟେ ଯେମିତି ଆସି ଗୁଣୁଗୁଣୁ ରାବ କରୁଚନ୍ତି—ଚୁପକରି ବାହାର ଆସି ପଦାରେ ଶୋଇଲି । ବାପ, ଏଥର ହଉଥା ତୁଏ ଗୁଣୁଗୁଣୁ···ବୁଦ୍ଧି ଶିଖୁଥା ।

କରୁଣା : ଆଚ୍ଛା, ସିମେଣ୍ଟ୍ ଦର ଯଦି ବଢ଼ିଲା, ଲୁହାଛଡ଼ ବଜାରରୁ ଉଭେଇଯିବ ନାହିଁନା ? ଆପଣ କୁହନ୍ତୁ—କାହିଁକି ଉଭେଇଯିବ ?

ନଧି : (ସଙ୍ଗେ ସଙ୍ଗେ) କୋଉଠି ତାଙ୍କ ଘର—କାହିଁ ଆମେରିକା—କାହିଁ ଜର୍ମାନୀ—ସେମାନେ ପୁଣି ଏ ଦେଶକୁ ବୁଲି ଆସି ଆମ ଗାଁରେ ଅଧି ହଜାର । ଆମ ଘର-କରଣା—ଆମ ହାଲଚାଲ—ଆମ ଗୃହବାସ – ଏ ସବୁ କୁଆଡ଼େ ଦେଖିବେ । କଣ ଏଥିରୁ ବୁଝିବେ କେଜାଣି ?

କରୁଣା : କେଜାଣି ବାବୁ, ମୋର ତ ଗୋଟାଏ ବଦଅଭ୍ୟାସ ପିଲାଦିନେ ନଥିଲା—ଏବେ ବଢ଼ି ଚାଲିଚ ଯେ ଚାଲିଚ···ଚାଲିଚ···

ନଧି : କରୁଣାକରବାବୁ !

କରୁଣା : ଆମ ତରଫରୁ ଆମେ ପ୍ରସ୍ତୁତ ନଧିରାମବାବୁ :

ନଧି : ଆମେ ତ ବହୁ ଆଗରୁ ପ୍ରସ୍ତୁତ !

କରୁଣା : ତେବେ ଆରମ୍ଭ କରାଯାଉ !

ନଧି : କରାଯାଉ ।

କରୁଣା : ଯାନ୍ତୁ ତେବେ···ତକାତକ ହେଇ ଆସନ୍ତୁ ।

ନଧି : ଆସନ୍ତୁ ଆଜ୍ଞା, ଆପଣ ବି ଆସନ୍ତୁ । (ନଧିରାମଙ୍କ ପ୍ରସ୍ଥାନ)

କରୁଣା : କୁଆଡ଼େ ଗଲ ? ଆସ !

ରମା : (ଭିତରୁ) ଯିବି ?

କରୁଣା : ହଁ ଯିବ—ସେମାନେ ଆସିଗଲେଣି, ଆସ । (ରମା ଆସିଲେ)

ରମା : ସତ କହୁଚ; ଏଠି ବସିବି ?

କରୁଣା : ମିଛ କହିବାର ବେଳ ଆସୁଚି ରମା । ତମ ଭଉଣୀରନ୍ଧିଟି ପାଇଁ ମିଛର ପାରାବାର ଭିତରେ ଆମକୁ ବୁଡ଼ିବାକୁ ହବ ।

ରମା : ମନ ଫିକା ଫିକା ପଡ଼ିଯାଉଚି – ଗୋଡ଼ହାତ ଚଳୁନି ।

କରୁଣା : ମୋର କଣ ଚଳୁଚି ? (ଦୁଃଖରେ) ମୋର ଆଖି ଆଗରେ ତମେ ଆଉ ଜଣଙ୍କ ସାଥିରେ ଇଣ୍ଟରଭ୍ୟୁ ଦବ—ଏକଥା ଭାବିଲାବେଳକୁ ମୋ ଛାତି ଖାଲି ଫାଟି-ଯାଉଚି । ମନ ଖାଲି ହାସ୍ସ ହାସ୍ସ କରୁଚି ।

ରମା : ଟିକିଏ ଦେଖିଲ ?

କରୁଣା : କଣ ?

ରମା : ମୋ ଆଡ଼କୁ ଚାହିଁ—ମତେ ଦେଖ । କନ୍ୟାପାତ୍ରୀ ଭଳିଆ ଦିଶୁଚି ତ ?

କରୁଣା : ମୁହଁ ଖୋଲି ଏଗୁଡ଼ା ମୁଁ ଆଉ କିଛି କହିପାରିବ ନାହିଁ । ତମେ ଖାଲି ଗୋଟିଏ କଥା ମନେରଖିବ···

ରମା : କଣ ?

କରୁଣା : ତମେ—ତମେ ଉମା ନୁହଁ, ରମା—ମୋ ସ୍ତ୍ରୀ—ବୁଝିଲ ! ଏଇ ସେମାନେ ଆସିଲେଣି । ନଧିରାମବାବୁଙ୍କୁ ପ୍ରଣାମ କରିବ ।

(ମୁଣ୍ଡରେ କଢ଼ୁଆ ଓଢ଼ଣା ଟାଣି ରମା ଆସିଲା)

ନଧି : ଆସ ମା' ଲକ୍ଷ୍ମୀ, ଆସ । (ରମା ମୁଣ୍ଡ ଲଗାଇ ପ୍ରଣାମକଲା)
ହଉ, ହଉ, ହେଇଚ । (ମୁହଁ ଫେରାଇ ଡାକଲେ) ଆରେ ବାବୁ, ଆ ।
(ମାସ୍କାଧର ଆସି ଅଣ୍ଟା ଭାଙ୍ଗି କରୁଣାକରଙ୍କୁ ପ୍ରଣାମ କଲା)

କରୁଣା : ଖୁସି ହେଲି । ଖୁବ୍ ଖୁସି ହେଲି ।

ନଧି : ଆସ ମା, ଆସ ବସ ଏଠି ।

କରୁଣା : ହଁ, ଏଇଠି ଏଇ ପଦ୍ମଫୁଲ ଚଉ ଉପରେ । ଆଉ ତୁମେ ବାବୁ—ସେଇ ପକ୍ଷିରାଜ ଘୋଡ଼ା ଉପରେ—ହଁ !
(ଦୁହେଁ ଯଥା ସ୍ଥାନରେ ବସିଲେ । ରମାର କାନ୍ଧକୁ ପଛକୁ ବସିଲେ କରୁଣାକର । ମାସ୍କାଧର ପାଖରେ ବସିଲେ ନଧିରାମ । )

ନଧି : ବେଶ୍—ବେଶ୍ ହେଇଚ—ଏ ଆୟୋଜନ ବେଶ୍ ହେଇଚ । ଏବେ ଆରମ୍ଭ ହଉ ।

କରୁଣା : ଆପଣ ବରପକ୍ଷ—ପ୍ରଥମେ ଆପଣଙ୍କଆଡୁ ଆରମ୍ଭ ହଉ ।

ନଧି : ବେଶ୍ ବେଶ୍—ତାହାହିଁ ହଉ ।

ମାସ୍କାଧର : ନାଁ ଟା କଣ ଜାଣିପାରେ କି ?

ରମା : ମୋ ନାଁ ରମା ।

କରୁଣା : (ନିମ୍ନକଣ୍ଠରେ) ହେଇ···ରମା ନୁହେଁ—ଉମା !

ରମା : ମୋ ନା···

ନଧି : ଜାଣିଲୁ ମା—ଜାଣିଲୁ । ତମ ନାଁ ରମା—ସ୍ୱୟଂ ମା ଲକ୍ଷ୍ମୀଠାକୁରାଣୀ ।

ମାସ୍କା : ମାମୁଁ···

ନଧି : କୁହ ଏବେ, ତମ ନାଁ କୁହ ।

ମାସ୍କା : ଆମେ ଶୁଣିଥିଲୁ, ତାଙ୍କ ନାଁ ଉମା !

ରମା : କହିଲି ତ ମୋ ନାଁ ଉମା—ମୋ ଭଉଣୀ ନାଁ ରମା ।

ନଧି : ଓ; ତୁମେ ଉମା କହିଲ—ଭୁଲରେ ଆମେ ରମା ଶୁଣିଲୁ । (ହସ) ଉମା—ଦକ୍ଷକନ୍ୟା ଉମା—ଭାରି ସୁନ୍ଦର ନାଁ—ଉମା । ଆଚ୍ଛା, ତା'ପରେ !

ରମା : ଆପଣଙ୍କ ନାଁ ଟା ଆପଣଙ୍କ ମୁହଁରୁ ଶୁଣିଲେ ନିଜକୁ ମୁଁ ଭାଗ୍ୟବତୀ ମନେକରନ୍ତି ।

ମାସ୍କା : ମୋ ନାଁ···

ନଧି : ହଁ, କୁହ ବାବୁ ମାସ୍କାଧର, ନିଜ ନାଁଟି ନିଜ ମୁହଁରେ କହିପକାଅ ।

ମାସ୍କା : ମାସ୍କାଧର ! ମାସ୍କାଧର ! ମାସ୍କା କାହିଁ ମାମୁ ? ମୁଁ ପରା ଗସ୍କାଧର !

ରମା : ଆମେ ଜାଣିଥିଲୁ ଆପଣଙ୍କ ନାମ ଗସ୍କାଧର !

ନଧି : ମୁଁ କଣ ଜାଣେ ନାହିଁ ମା ? ମୁଁ ବି ଜାଣେ ଯେ—ହେଲେ ଏଇ ମାସ୍କା ଆଉ ଗସ୍କା ଭିତରେ ଟିକିଏ ଗୋଳମାଳ ହେଇଗଲା ।

କରୁଣା : ହବ ତ ! ହବା ସ୍ୱାଭାବିକ । ଅମ ଅଡ଼ୁ ରମା ଆଉ ଉମା ଭିତରେ ଯେମିତ ଟିକଏ ଗୋଳମାଳ ହୋଇଗଲା—ଅପଣଙ୍କ ଆଡ଼େ ମାସ୍ତାଧର ଆଉ ଗସ୍ତାଧର ଭିତରେ ସେମିତ ଟିକଏ ଗୋଳମାଳ ହୋଇଗଲ ! ଏଇ ତ ହେଲ କରୁଣାନିଧିଙ୍କ ମାହାତ୍ମ୍ୟ ।

ନିଧି : ମାସ୍ତାଧର ଅଉ ଗସ୍ତାଧର ଦହେଁ ଯାଆଁଳା ଭାଇ । ଜଣକର ତ କନ୍ୟାଘର ଠିକଣା ହେଇ ମହାପ୍ରସାଦ ନିବନ୍ଧ ହେଇଯାଇଚ ।

କରୁଣା : କାହାର ?

ନିଧି : କାହାର କରେ ? (ମାସ୍ତାଧରଙ୍କୁ ପଚାରିଲେ)

ମାସ୍ତା : କ କଥା ତମେ କହୁଚ ମାମୁ ? ମୋର କେମିତ ହବ ? ତାର ହେଇଚ, ତା'ର ।

କରୁଣା : ମାସ୍ତାଧରର ।

ନିଧି : ନିଶ୍ଚୟ । ମାସ୍ତାଧରର । ଗସ୍ତାଧର ତ ଏଇ ଅପଣଙ୍କ ସାମ୍ନାରେ ବସିଚ । ସ୍ୱା'ର ଠିକଣା ହେଇଗଲେ ଦୁହିଁଙ୍କର ବାହାଘର ଏକ ଊଥରେ ହେବ ।

କରୁଣା : ଭଲହବ···ଖୁବ ଭଲହବ ।

ନିଧି : ହଁ···ତା'ପରେ ?

ମାସ୍ତା : ଅଚ୍ଛା, ଅପଣ ମୁଣ୍ଡରେ ଏଇ ଯେ ଓଢ଼ଣା ଦେଇଚନ୍ତି···

କରୁଣା : ଲଜକୁଳୀ, ଖୁବ ଲଜକୁଳୀ ସେ । ସେଇଥିପାଇଁ ସେ ଓଢ଼ଣାଟାକୁ ଟିକେ ବେଶି ଟାଣିଦେଇଚନ୍ତି ।

ମାସ୍ତା : ଟାଣନ୍ତୁ—ମୋର ଅପତ୍ତି ନାହିଁ—ମୁଁ ଖାଲ ଜାଣିବାକୁ ଗୁହିଁଥିଲ ଏ ଓଢ଼ଣାର ତାତ୍ପର୍ଯ୍ୟ କଣ ?

କରୁଣା : ଓଢ଼ଣାର ତାତ୍ପର୍ଯ୍ୟ ?

ନିଧି : ବଡ଼ ଜଟିଳ ପ୍ରଶ୍ନ ! ବୁଝିଲେ କରୁଣାନିଧି ବାବୁ, ଭଣଜା ମୋର ବଡ଼ ଜଟିଳ ପ୍ରଶ୍ନ ପଚାରିଚ ।

ରମା : (ନିମ୍ନକଣ୍ଠରେ) କୁହ କଣ କହିବ ?

କରୁଣା : (ନିମ୍ନକଣ୍ଠରେ) ଜୁଲୁଜୁଲୁ—

ମାସ୍ତା : ମୁଁ ଜାଣିବାକୁ ଗୁହୁଁଚ ତା'ର ତାତ୍ପର୍ଯ୍ୟ କଣ ?

ରମା : ଜୁଲୁଜୁଲୁ ।

ମାସ୍ତାଧର : ଜୁଲୁଜୁଲୁ ??

ନିଧି : ଏ ଜୁଲୁଜୁଲୁର ତାତ୍ପର୍ଯ୍ୟ ?

ରମା : ଓଢ଼ଣା ତଳୁ ଜୁଲୁଜୁଲୁ କର ଗୁହିଁବାର ସୁବିଧା ହୁଏ ବୋଲ ସ୍ତ୍ରୀଲୋକମାନେ ମୁଣ୍ଡରେ ଓଢ଼ଣା ଦଅନ୍ତି ।

ନିଧି : ଚମତ୍କାର ! ବାଃ ବାଃ ବାଃ ! ଯେମିତ ପ୍ରଶ୍ନ, ସେମିତ ଉତ୍ତର ! ବାଃ ! ତା'ପରେ ?

ମାସ୍ତାଧର : ମୁ କହୁଥିଲ କଣ କ···ରନ୍ଧାବଢ଼ା ଜାଣନ୍ତି ?

ରମା : ଡ଼'ବର୍ଷ ହେଲା ଘର ଗୋଟାକର ରନ୍ଧାବଢ଼ା ତେବେ କରୁଚ କିଏ ?
କନ୍ଧି : ଡ଼'ବର୍ଷ ? ଡ଼'ବର୍ଷ କାହିଁକି କରୁଣାକର ବାବୁ ? ବେଶି ନୁହେଁ କି କମ୍ ନୁହେଁ, ଠିକ୍ ଡ଼'ବର୍ଷ !
କରୁଣା : ଡ଼'ବର୍ଷ...ଡ଼'ବର୍ଷ ମାନେ...(ନମ୍ରକଣ୍ଠରେ) କଣ କହେ ଡ଼'ବର୍ଷ ?
ରମା : ଡ଼'ବର୍ଷ ହେଲା ବାହାଘର ହେଲା ତ !
କନ୍ଧି : ବାହାଘର ? କାହା ବାହାଘର କରୁଣାକର ବାବୁ ?
କରୁଣା : ବାହାଘର ମାନେ —ମାନେ ତାଙ୍କ ଅପାଙ୍କ ବାହାଘର ।
କନ୍ଧି : ଅର୍ଥାତ୍ ଆପଣଙ୍କ ସ୍ତ୍ରୀ ଙ୍କ ବାହାଘର ?
କରୁଣା : ଆଜ୍ଞା !
ମାୟାଧର : ବୁଝିଲି । ଅପା ବାହା ହେଇ ଗଲା ପରେ ଡ଼'ବର୍ଷ ହେଲା ଘର ଗୋଟାକର ରନ୍ଧାବଢ଼ା...
କରୁଣା : ସେ ସବୁ ଦାୟିତ୍ୱ ସ୍ତ୍ରୀ'ଙ୍କର ଉପରେ ।
ମାୟାଧର : ଖୁବ୍ କଷ୍ଟ ହେଉଥିବ ତ !
ରମା : କଷ୍ଟ ହେଲେ ସେ କଥା ବୁଝିବ ବା କିଏ ?
ମାୟାଧର : ବୁଝିବା ଲୋକ ବୁଝିବ—ନିଶ୍ଚୟ ବୁଝିବ । (ମାୟାଧର କଣ୍ଠରେ ଦରଦ)
କରୁଣା : ଶ୍ରୀମାନ୍ ବାବୁ ମାୟାଧର, ତମର ଆଉ କିଛି ପ୍ରଶ୍ନ ପଗ୍ଭରିବାର ଅଛି କି ?
ମାୟାଧର : କିନ୍ତୁ ଏ ସବୁ ପ୍ରଶ୍ନ ତ ମୋର ଅବାନ୍ତର ନୁହେଁ ?
କରୁଣା : ତଥାପି, ଆଉ କିଛି ପଗ୍ଭରିବାର ଅଛି କି ?
ମାୟାଧର : ଅଛି । ମାତ୍ର ଉତ୍ତର ଦବାରେ ତାଙ୍କର କିଛି ଆପତ୍ତି ଅଛି କି ?
ରମା : ନା, ନାହିଁ । କଣ ପଗ୍ଭରିବେ ପଗ୍ଭରନ୍ତୁ ।
ମାୟାଧର : ପାଦରେ ଏ ଯୋଡ଼ ଅଳତା ପିନ୍ଧିଛନ୍ତି...
କରୁଣା : (ବିକୃତ ଗଳାରେ) ଅଳତା !
କନ୍ଧି : କଣ ହେଲା କରୁଣାକର ବାବୁ ! ଏମିତ ବେଢ଼ଙ୍ଗରେ କାହିଁକି ପାଟି କରି ଉଠିଲେ ?
କରୁଣା : ଖଣ୍ଡେ ପାନ ଗୁଆ ତଣ୍ଟିରେ ଲାଗିଗଲା ।
କନ୍ଧି : ସାମାନ୍ୟ ଖଣ୍ଡେ ଗୁଆ...
କରୁଣା : ଗ୍ରନ୍ଥିରେ ଛୁଞ୍ଚି ଗ୍ଭଲିଗଲା ପରି ମତେ ବୋଧହେଲା ।
ମାୟାଧର : ମୁଁ ପଗ୍ଭରୁଥିଲି, ପାଦରେ ଏ ଯୋଡ଼ ଅଳତା ପିନ୍ଧିଚନ୍ତି...ମାନେ... ମାନେ...
ରମା : ସେଇଟା ମୋ ପାଦକୁ ଖୁବ୍ ସୁନ୍ଦର ଦିଶୁଚ—ଏଇଆ ତ ?
ମାୟାଧର : ନିଶ୍ଚୟ...ନିଶ୍ଚୟ । ବହୁ ଅଳତାପିନ୍ଧା ପାଦ ମୁଁ ଦେଖିଚ...ହେଲେ... ହେଲେ... (କରୁଣାକର ପ୍ରମାଦ ଗଣିଲେଣି)

କରୁଣା : (କମ୍ପକଣ୍ଠରେ) ପାଦଟା ଲୁଚେଇ ଦିଅ ଭଲ ।
ରମା : (ଆନ୍ତରିକତା ସହ) ମୋର ଗୋଟାଏ କଥାର ଉତ୍ତର ଦେବେ ?
ମାୟାଧର : (ଉତ୍ସାହ ସହକାରେ) ଦେବ, ନିଶ୍ଚୟ ଦେବ ।
ରମା : ଏଇଟା ଅଳତାର ନା ମୋ ପାଦର ଗୁଣ ?
ନିଧି : ଓଃ, ଖୁବ୍ ଜଟିଳ ପ୍ରଶ୍ନ । ଦିଅ ବାପଧନ—ଉତ୍ତର ଦିଅ ।
ମାୟାଧର : ସେଇଟା···ସେଇଟା···
କରୁଣା : ଉତ୍ତର ମୁଁ ଦଉଚି । ସେଇଟା ଅଳତାର ଗୁଣ ନୁହେଁ କି ପାଦର ଗୁଣ ନୁହଁ—ସେଇଟା ହେଉଚି କରୁଣାନିଧିଙ୍କ ଗୁଣ ।
ନିଧି : ବାଃ—ବାଃ—ମନକୁ ପାଇଲା ଭଳି କଥାଟା ଏକା ଆପଣ କହିଚନ୍ତି ।···ଅଚ୍ଛା, ଏ ପାଳି ଏବେ ଏଠିକରେ ଶେଷ ହେଉ । (ରମା ଓ ମାୟାଧରଙ୍କର ଦୃଷ୍ଟି ବିନିମୟ ହେଲା । ଏକଥା ନିଧି ଓ କରୁଣାକର ଲକ୍ଷ୍ୟକଲେନି ।)
କରୁଣା : ଶେଷ ତ ହେଲା ଆଜ୍ଞା ! ହଉ କଣ ?
ନିଧି : ଯାଅ ମା' ଲକ୍ଷ୍ମୀ—ଯାଅ ତମେ—ଯାଅ ।···କରୁଣାକର ବାବୁ—ରମା ଧୀରେ ଧୀରେ ଅନ୍ତରାଳକୁ ଗଲା । କରୁଣାକର ଅସ୍ଥିର ହୋଇଉଠୁଥାନ୍ତି )
କରୁଣା : ମୁଁ ଟିକିଏ ଗୁଡ଼ ଆସୁଚି ଆଜ୍ଞା !
ନିଧି : ମୁଁ ବି ଟିକିଏ ଗୁଡ଼ ଆସୁଚି । ଚାଲ ବାପଧନ—ଚାଲ । (ନିଧି ଓ ମାୟାଧରର ପ୍ରସ୍ଥାନ)
କରୁଣା : କୁଆଡ଼େ···କୁଆଡ଼େ ଗଲ ?···ହେ···ହେ···ହେ···ତେଣିକି କୁଆଡ଼େ ଯାଉଚ ? ସେ ପାଖରେ ପରା ସେ ମାମୁ ଭଣଜା ଅଛନ୍ତି । (ରମା ଫେରିଆସିଲା)
ରମା : କଣ କହୁଚ ?
କରୁଣା : ତମେ କୁହ—ଏ କଥା କଣ ? ମୁହିଁ କାନ୍ଦକାନ୍ଦ । ଏମିତି ବାହୁଲବଗଲାତ ଭାବ ?
ରମା : ମତେ ଆଉ କଣ ପଚାରୁଚ ?
କରୁଣା : ଅଳତାପିନ୍ଧା ପାଦକୁ ପଦାକୁ କାଢ଼ି କାହିଁକି ବସିଥିଲ ? ଶୁଣିଥିଲ ପରା—ଗୋଟାଏ ଅସୁନ୍ଦରୀ ପାଟିର ଅଳତାପିନ୍ଧା ପାଦ ଦେଖି ଗୋଟାଏ ବରପାତ୍ର ସବୁ ଭୁଲିଗଲା । ସବୁ ଜାଣିଶୁଣି···
ରମା : ସବୁ ଜାଣିଶୁଣି ତମେ ମତେ ସେଠିକି ପଠେଇଲ କାହିଁକି ?
କରୁଣା : ପଠେଇଥିଲି ବୋଲି କଣ ତମେ କଥା କେଉଁ ପଦରେ ଏମିତି ତରଳିଗଲ ? ତା ସାହସକୁ ଦେଖ—କହୁଚି କ'ଣନା—ତ' ବର୍ଷ ହେଲା ରକ୍ଷାବନ୍ଧା କରୁଚି···ଖୁବ କଷ୍ଟ ହେଉଥିବ ।

ରମା : ଦୁ' ବର୍ଷ ହେଲା ତମେ ତ ମୋ କଷ୍ଟ କଥା ମତେ କେବେ କହୁନଥିଲ । ···ଶିଏ ତ ଦେଖି ଦେଖି କହିଲା । ସତେ କେଡ଼େ ଭଲ ପିଲା ଏଇ ଗଙ୍ଗାଧର—କି ସୁନ୍ଦର କଥା ! ଉମାର ଦୁର୍ଭାଗ୍ୟ !!

କରୁଣା : ଉମାର ଦୁର୍ଭାଗ୍ୟ ନୁହେଁ—ମୋର ଦୁର୍ଭାଗ୍ୟ ।

ରମା : ତମେ ତ କହୁଥିଲ—ଏ ବନ୍ଧନ ଜନ୍ମଜନ୍ମାନ୍ତର ପାଇଁ···

କରୁଣା : ହଉ, ଚାଲ ଏବେ—ଘରକୁ ଚାଲ । ବନ୍ଧନଠାରୁ ରନ୍ଧନ ଯାଏ ସବୁ କଥାବାର୍ତ୍ତା ସେଇଠି···

ରମା : ଏଡ଼େ ସୁନ୍ଦର ପାଙ୍କଟିଏ ହାତଛଡ଼ା ହେଇଯିବ ! ମନଟା ମୋର ଖାଲି ଗୋଳେଇ ଘାଣ୍ଟି ହଉଚି । ଏ ଜାଗା ଛାଡ଼ି ଯିବାକୁ ମନ ହଉନି ।

କରୁଣା : ବୁଝିଲି । ଡାଆଣୀ ଶାପ କଲାଭଳି ତମକୁ କରୁଣାନଧି ଶାପକଲେଣି । ତମେ ଆସ ଏଣିକି ।

(ରମାର ହାତ ଟାଣିନେଇ କରୁଣାକର ଚାଲିଗଲେ । କିଛିଏ ପରେ ଆଗେ ଆଗେ ମାଧବାଧର ଓ ପଛେ ପଛେ ନଧି ଆସିଲେ । ଦୁହେଁ ବିଚଳିତ ଜଣାପଡ଼ୁଥାନ୍ତି ।)

ନଧି : ତୁ କଣ ମତେ ଏ ଉନା କୂଳରେ ରଖେଇ ଦବୁନି କି ରେ ମାଧବାଧର !

ମାଧବାଧର : ମୋ' ମନର ବେଦନା ତମେ ବୁଝି ପାରିବ ନାହିଁ ମାମୁ ! ଉମାରାଣୀଙ୍କୁ ମୁଁ ଠକିପାରିବ ନାହିଁ ।

ନଧି : ଆରେ ବାବୁ, ଗଙ୍ଗାଧର ଆସିଲା ନାହିଁ ବୋଲି ଇଏ ଗୋଟାଏ ମନରଖା କାରବାର ଚାଲିଥିଲା । ଏଣିକି ଆମେ ଆମ ବାଟ ଦେଖିବା କଥା ।

ମାଧବାଧର : ଦୁ' ବର୍ଷ ହେଲା, ଘର ଗୋଟାକର ରନ୍ଧାବଢ଼ା କାମ କରି କରି ତାଙ୍କ କଣ୍ଟା ରହିଲାଣି । ଏ ଦୁଃଖରୁ ମୁଁ ତାଙ୍କୁ ଉଦ୍ଧାର କରିବ ।

ନଧି : ମାଧବାଧର !

ମାଧବାଧର : ମୁଁ ଜାଣେ, ମୋ' ପାଇଁ ତାଙ୍କ ମନ ତଳିଚି । ···ମୁଁ ଯଦି ତାଙ୍କୁ ଠକେ, ତେବେ ମୋ ପାଇଁ ସେ ଜୀବନ ହାରି ଦେଇ ପାରନ୍ତି । ଏ ପାପ ତ ତୁମକୁ ଲାଗିବ ନାହିଁ—ଲାଗିବ ମତେ ।

ନଧି : ତୋ' ପାଇଁ କନ୍ୟା ଠିକଣା ହୋଇ ମହାପ୍ରସାଦ ନବନ୍ଧ ହୋଇସାରିଚି ।

ମାଧବାଧର : ସେ ନବନ୍ଧ ତମେ ଭାଙ୍ଗି ଦିଅ ।

ନଧି : ଥିଲାବାଲା ଘରର ଝିଅ ସେ, ଦେଖିବାକୁ ସୁନ୍ଦରୀ ।

ମାଧବାଧର : ଉମାରାଣୀଙ୍କ ପାଦ ଅଳତାକୁ ସରି ହବ ନାହିଁ ।

ନଧି : ମୁଁ କଣ୍ଢାହୋଇ ଗୁଆ ମହାପ୍ରସାଦ ଛେଇଚି !

ମାଧବାଧର : ସେଠୁ ଫେରାଇଆଣି ଏଠି ଆଉ ଥରେ ଛେକ ।

ନିଧି : ମାଧ୍ୱାଧର !

ମାଧ୍ୱାଧର : ମଥାର ଓଢ଼ଣାଠାରୁ ପାଦର ଅଳତା ଯାଏ ସବୁ ଗୋଟି ଗୋଟି ହୋଇ ମୋ' ଆଖି ଆଗରେ ନାଚୁଛି । ···ନାଇଁ ମାମୁ, ମୁଁ ପାରିବ ନାହିଁ—ଏ ଯାତନା ମୁଁ ସହି ପାରିବନାହିଁ ।

ନିଧି : ହଉ ରହ—ମୁଁ ଦେଖେ ସେ କରୁଣାକର ବାବୁ କୁଆଡ଼େ ଗଲେ !

(ଅତି ଆନନ୍ଦରେ କରୁଣାକର ପଶିଆସିଲେ)

କରୁଣା : ମୁଁ ଏଇଠି ଅଛି ନିଧିରାମବାବୁ—ମୁଁ ସବୁ ଶୁଣିଛି—(ଖୁବ୍ ଖୁସିରେ) ଆପଣ ଦୁହିଁଙ୍କ କଥାବାର୍ତ୍ତା ମୁଁ ସବୁ ଶୁଣିଛି···

ନିଧି : ଶୁଣିଚନ୍ତି !

କରୁଣା : ହିଁ···ଆପଣ ଆମକୁ ଠକଚନ୍ତି···

ନିଧି : ହେଲେ···କରୁଣାନିଧିବାବୁ···(ନିଧି ଡରିଯାଇଥାନ୍ତି)

କରୁଣା : ଠକଚନ୍ତି ତ ଡରିଯାଉଚନ୍ତି କାହିଁକି ? ମୁଁ ବି ଆପଣଙ୍କୁ ଠକଚି ।

ନିଧି : ଅଁଙ୍କ ?

କରୁଣା : ହିଁ ଅଁଙ୍କ, ଠକଚି । ଆପଣଙ୍କ ପାଇ ·ସେମିତି ଗଙ୍ଗାଧର ନୁହେଁ ମାଧ୍ୱାଧର ଆଉ—ପାଣି ସେମିତି ଉମା ନୁହେଁ—ରମା—ମୋ ସ୍ତ୍ରୀ । ହେଇ ଦେଖନ୍ତୁ ସେଠି ଠିଆ ହୋଇଛି—ମଥାରେ ସିନ୍ଦୂର—ହାତରେ ଶଙ୍ଖା—ପାଦରେ ଝୁଣ୍ଟିଆ···

ନିଧି : ତାହେଲେ କରୁଣାନିଧି ବାବୁ···

କରୁଣା : ଇଏ ଅତି ଆନନ୍ଦର କଥା ।

ନିଧି : ଭଦ୍ରତା ରକ୍ଷାକରିବା ପାଇଁ···

କରୁଣା : ଦୁହେଁ ଦୁହିଁଙ୍କୁ ଠକଚୁ ।

ନିଧି : ଅତି ଆନନ୍ଦର କଥା—ଅତି ଆନନ୍ଦ—(ରବି ଆସି ପହଞ୍ଚିଲା)

ରବି : ଭାଇ—ଭାଇ !

କରୁଣା : କରେ ରବି—ତୁ ପୁଣି କୁଆଡ଼େ ?

ରବି : ଘରକୁ ଆସ । ଅପଣମାନେ ସମସ୍ତେ ଆସନ୍ତୁ ।

କରୁଣା : କାହିଁକି ?

ରବି : ଉମା ପଞ୍ଚୁଦୋଳ ମେଳଣକୁ ଯାଇଥିଲା ତ—ସେଠି ଭେଟହେଇଗଲା ।

କରୁଣା : କାହା ସାଥିରେ ?

ରବି : ଗଙ୍ଗାଧର ବାବୁଙ୍କ ସାଥିରେ ।

ନିଧି : ସେଇଠୁ···

ରବି : ସେଇଠୁ ଆଉ କଣ ? ଦୁହେଁଯାକ ବର୍ତ୍ତମାନ ଆମ ଘରେ ଅଛନ୍ତି—ବୋଉ ମନ କାହିଁରେ କଣ ଖୁସି ।

କରୁଣା : ଶୁଣୁଚ କି ରମା···ରମା !

ରମା : (ପାଖକୁ ଆସି ହସ ମୁହଁରେ) ହମାର ଭାଗ୍ୟ ଯେ ଗଙ୍ଗାଧର ଭଳି ପାତ୍ର ପାଇଲା ।

ମାଙ୍ଗାଧର : ଆଉ ଗଙ୍ଗାଧରର ଭାଗ୍ୟ ଯେ ହମା ଭଳି କନ୍ୟା ପାଇଲା ।

କରୁଣା : ଆଉ ନିଧିରାମ ବାବୁ···ଆମର ଭାଗ୍ୟ ?

ନିଧି : ଆମର ଭାଗ୍ୟ···ଆମେ ଏବେ ଚେଷ୍ଟା କରି ଦୁଇ—

କରୁଣା : କରୁଣାନିଧିଙ୍କ କୃପାରୁ କେହି କାହାକୁ ଠକିପାରିଲେ ନାହିଁ ।

□□□

---

ଏଇ ନାଟକ ସମ୍ପର୍କରେ—ଏଇ "କରୁଣାନିଧି" ନାଟକର ରଚନାକାଳ ହେଉଚ ୧୯୬୯ ମସିହା । ସେଇ ବର୍ଷ କଟକ ଆକାଶବାଣୀ ବାର୍ଷିକ ନାଟକୋତ୍ସବରେ ଏହା ପ୍ରସାରିତ ହୋଇଥିଲା । ଏହାର ପ୍ରାୟ ଏକ ବର୍ଷ ପରେ ଖଣ୍ଡିଏ ଓଡ଼ିଆ ଉପନ୍ୟାସ ପ୍ରକାଶିତ ହେଲା । ଦେଖାଗଲା ସେଥିରେ ନାଟକ "କରୁଣାନିଧି"ର ଗଳ୍ପାଂଶ ସ୍ଥାନପାଇଚ । ଶ୍ରୀ ବ୍ରଜମୋହନ ମହାନ୍ତି (ଆକାଶବାଣୀ) ଓ ଶ୍ରୀ ମୁରାରି ମୋହନ ଜେନାଙ୍କ ଉପସ୍ଥିତିରେ ଉପନ୍ୟାସକାରଙ୍କ ସହ ଆଲୋଚନା ହେଲା ପରେ ଉପନ୍ୟାସ-କାର ଖଣ୍ଡିଏ ସ୍ୱୀକୃତି-ସୂଚକ ଲେଖା ଲେଖିଦେଲେ ଓ ଏ ଘଟଣାର ଅବସାନ ସେଇଠି ଘଟିଲା ।

# ମକଦ୍ଦମା

ଚରିତ୍ର

ଗଦାଧର : ମଧ୍ୟବୟସ୍କ ଗ୍ରାମବାସୀ

ରଙ୍ଗାଧର : ତାଙ୍କ ଯୁବକ ପୁତ୍ର

ସାଧୁଚରଣ : ମଧ୍ୟବୟସ୍କ ଗ୍ରାମବାସୀ

ଭକ୍ତଚରଣ : ତାଙ୍କ ଯୁବକ ପୁତ୍ର

ଡାକ୍ତର

କମ୍ପାଉଣ୍ଡର

[ ଗ୍ରାମ୍ୟ ଅଞ୍ଚଳ । ଏକ ଡାକ୍ତରଖାନାର ମୁଖ୍ୟ କୋଠରି । ଏଇ କୋଠରି ସଂଯୁକ୍ତ ଆଉ ଗୋଟିଏ କୋଠରିକୁ ଯିବାପାଇଁ ଦ୍ୱାର ଅଛି । ଏକ ଡାକ୍ତରଖାନା ଉପଯୋଗୀ ବିଭିନ୍ନ ଉପକରଣ ଯଥାସ୍ଥାନରେ ରହିଛି ।

ସମୟ—ପୂର୍ବାହ୍ନ । ଡାକ୍ତରଖାନାରେ କେହି ନାହାନ୍ତି । ଗଦାଧର ଓ ରଙ୍ଗାଧର ଆସିଲେ । ଗଦାଧରଙ୍କ ପରିଧାନ—ଧୋତି, ଜାମା ଓ କାନ୍ଧରେ ଚଦର ବା ଗାମୁଛା । ରଙ୍ଗାଧରର ପରିଧାନ ସାଧାରଣ ପ୍ୟାଣ୍ଟ ଓ ସାର୍ଟ । ଦୁହେଁ ଆସି କିଛି କ୍ଷଣ ଏଣେତେଣେ ବୁଲିଲେ । ତା'ପରେ ରୋଗୀମାନଙ୍କ ପାଇଁ ଉଦ୍ଦିଷ୍ଟ ବେଞ୍ଚରେ ଦୁହେଁ ବସିଲେ । ]

ଗଦାଧର : ହୁଁ ବସ୍ ଏଠି । ବେଶ୍ ଜବ୍‌ବର ହୋଇ ବସ । ଏସବୁ କାମରେ ଜବ୍‌ବର ନ ହେଲେ ଠକିଯିବୁ । ବସ୍, ଆଉ କେହି ରୋଗୀ ଆସିଲେ ଉଠିବୁ ନାହିଁ । ବସ୍ !

ରଙ୍ଗାଧର : ଡାକ୍ତରବାବୁ ତ ଆସିନାହାନ୍ତି ।

ଗଦା : ଆସିଲାବେଳ ହେଲେ ଆସିବେ—ତୁ ବସ୍ ।

ରଙ୍ଗା : ଏଠି ବସିବା ନା ତାଙ୍କ ବସାକୁ ଯିବା ?

ଗଦା : ନାଇଁ ବାବୁ, ବସାଠି କିଛି କାମ ନାହିଁ । ସବୁ କାମ ଏଇଠି । ଚିକିତ୍ସା, କଇଁଚ, ଔଷଧ, ଇଂଜେକ୍‌ସନ, କାଗଜପତ୍ର ସବୁ ଏଇ ଡାକ୍ତରଖାନାରେ । ପକେଟରୁ ଟଙ୍କା ବାହାରିଲେ ସବୁ କାମ ଏଇଠି ଠ-ଠା-ଠି ଚୁକିଯିବ ।

ରଙ୍ଗା : ଟଙ୍କା ଆଣିଚଟି ବାପା ?

ଗଦା : ଗାଁରେ ଦୋଳଯାତ୍ରା କି ଦଶହରା ଭେଳା ହେଲେ ତୋର ଯୋଉ ବାପାକୁ ତୁ ଦେଖୁ, ଆଜି ଏ ବାପା ସେ ବାପା ନୁହେଁ । ସେତେବେଳେ ସିନା ବାକ୍‌ସ ଚାବିଟା କୁଆଡ଼େ ହଜିଯାଏ କି ଖୁଚୁରା ଟଙ୍କାଗୁଡ଼ାକ କୁଆଡ଼େ ଉଭେଇଯାଏ—ହେଲେ ଏ କାମ ବେଳକୁ ସେ ଟଙ୍କା ବାକ୍‌ସ ମୁକୁଳା ପଡ଼ିଚି—ମୁକୁଳା । ଯେଉଁଠି ଜୀବନ ଉପରେ ଧକ୍କା ଲାଗିଲାଣି, ସେଠି ମୁଁ ଟଙ୍କାକୁ ଲୋଭ କରିବି ? ବେପରୁଆ ହୋଇ ଟଙ୍କା ଆଣିଚି, ଆଉ ବେପରୁଆ ହୋଇ ଖର୍ଚ୍ଚ କରିବି । ତୁ ଖାଲି ବସି ଦେଖ୍ । —ହୁଁ, କେଇଟା ବାଜିଲା ?

ରଙ୍ଗା : ( ବାପା ଆଡ଼େ କିଛିକ୍ଷଣ ଚାହିଁରହି ) ମୁଁ କେମିତି ଜାଣିବି କେଇଟା ବାଜିଲା ?

ଗଦା : ଘଣ୍ଟା ଦେଖି କହ ।

ରଙ୍ଗା : ଘଣ୍ଟା କାହିଁ ?

ଗଦା : କରେ ! ତୋ ହାତ କଣ ଖାଇ ? ଘଣ୍ଟା କଣ ହେଲା ?

ରଙ୍ଗା : ଘଣ୍ଟା ପରି ସେମାନେ ଛଡ଼େଇନେଲେ !

ଗଦା : କିଏ ନେଲା ?

ରଙ୍ଗା : ତମେ ଜାଣିନ ?

ଗଦା : ଆରେ ବାବୁ, ଜେଉ ବେଳ ତ ଅଛୁଚ, ଧନ ଧନ ଗାଧ ଗାଧ ଧରି ଚାଲିବ । ତୁ ମତେ ଏଠି ଅଉ ଜେଉ ନକରି ସଫା ସଫା କହ—ଘଣ୍ଟା କଣ ହେଲା ?

ରଙ୍ଗା : ତେମେ ତ ବାପା ମତେ ଓଲଟି ଜେଉ କଲଣି । ସେମାନେ ପରି ମତେ ମାରି ଜବରଦସ୍ତି ମୋ'ଠୁ ଘଣ୍ଟାଟା ଛଡ଼େଇନେଲେ !

ଗଦା : ଏଁ...ଜବରଦସ୍ତ ଛଡ଼େଇନେଲେ ?

ରଙ୍ଗା : ହଁ ।

ଗଦା : ଏତେ ଦାମିକା ଘଣ୍ଟାଟା ସେମାନେ ଛଡ଼େଇନେଲେ—ତୁ ଅଟକାଇ ପାରିଲୁ ନାହିଁ ?

ରଙ୍ଗା : ମୋର କଣ ଅଟକେଇ ରଖିବା କଥା ଯେ ମୁଁ ଅଟକେଇ ରଖନ୍ତି ?

ଗଦା : (ବିରକ୍ତ ହୋଇଯାଇ) ରଙ୍ଗା !

ରଙ୍ଗା : ମୋ ଆଡ଼କୁ ଏମିତ କଟମଟ କରି ଅନେଇଲେ ମୁଁ ଆଉ କଣ କରିବ ? ତେମେ ତ ବାପା ସବୁକଥା ଭୁଲିଯାଉଚ ।

ଗଦା : କ'ଣ ଭୁଲିଚ ? ଦେଲୁ ମୋ ମନେ ପକେଇ କଣ ମୁଁ ଭୁଲିଚ ?

ରଙ୍ଗା : କଥା ହେଲା ଯେ, ସେମାନେ ମତେ ମାରି ମୋ ହାତରୁ ଜବରଦସ୍ତ ଘଣ୍ଟାଟା ଛଡ଼େଇନେଇଚନ୍ତି ! ତେମେ ତ ବାରମ୍ବାର ଏକଥା ମତେ କହୁଚ ।

ଗଦା : ଓହୋ–ହୋ...ମନେପଡ଼ିଲା । ତୋର କଥା ଠିକ୍ । ଏକଥାଟା ମୋର ଭୁଲିବାର ନୁହେଁ ଯେ...ଏଇ ଘଟଣାରୁ ମନଟା ଟିକିଏ ବିଚଳିତ ହେଇପଡ଼ିଚ—ଏବେ ମନେପଡ଼ିଲା—ତୋର କଥା ଠିକ୍ । (ଏପାଖ ସେପାଖ ଚାହିଁ) ଡାକ୍ତରବାବୁଙ୍କର ହେଲା କଣ ? କେଇଟା ବାଜିଲା ?

ରଙ୍ଗା : (ସତର୍କତାର ସହ ପକେଟ୍ ଭିତରୁ ଘଣ୍ଟା ଦେଖି) ଆଠଟା ସତର ।

ଗଦା : କେମିତ ଜାଣିଲୁ ?

ରଙ୍ଗା : ଘଣ୍ଟା ଦେଖି ।

ଗଦା : କରେ କଥା ହେଲା ପରି ସେମାନେ ଘଣ୍ଟା ଛଡ଼େଇ ନେଲେ...ତୁ ପୁଣି ଘଣ୍ଟା ପାଇଲୁ କେଉଁଠୁ ? ଘଣ୍ଟା ଦେଖିଲୁ କେମିତ ?

ରଙ୍ଗା : ମୋ ହାତରୁ ଯିନା ସେମାନେ ଘଣ୍ଟା ଛଡ଼େଇ ନେଲେ—ହେଲେ ମୋ ପକେଟ୍ !
ପକେଟ୍‌ରେ କଣ ଘଣ୍ଟା ରହିବ ନାହିଁ ?

ଗଦା : ଅଛି ?

ରଙ୍ଗା : (ଘଣ୍ଟା ଦେଖାଇ). ଏଇ ପରା !

ଗଦା : ହଉ ହଉ, ରଖ ! ହୁସିଆରରେ ରଖ । ତେବେ ଯାହା ଆମର କଥା ହେଇଚ—ଯେ
ଘଣ୍ଟାଟା ସେମାନେ ଜବରଦସ୍ତ ତୋ'ଠୁ ଛଡ଼େଇନେଲେ···

ରଙ୍ଗା : ନେଲେ···ସେଥିପାଇଁ ଘଣ୍ଟାଟା ମୋ ହାତରୁ ଆସି ପକେଟରେ ରହିଚ ।

ଗଦା : ଠିକ୍ ।···ଆଠ ତ ବାଜ ଗଲାଣି । ଡାକ୍ତରବାବୁ ଏତେ ବେଳ ଯାଏ ଗଲେ
କୁଆଡ଼େ ?

ରଙ୍ଗା : ସେ ଭିତରଘରେ କିଏ ଅଛନ୍ତି ନା କଣ ?

ଗଦା : (ଡାକଲେ) ଭିତରେ କିଏ ଅଛନ୍ତି ଆଜ୍ଞା ?

ରଙ୍ଗା : କେହି ଶୁଣୁନାହାନ୍ତି ।

ଗଦା : କେହି ନଥିବେ ।

ରଙ୍ଗା : ଥିଲାପରି ଜଣାପଡ଼ୁଚ । (ଡାକିଲା) ଭିତରେ କିଏ ଅଛନ୍ତି ଆଜ୍ଞା ?

କମ୍ପାଉଣ୍ଡର : (ଭିତରୁ) ଅଛି—ଇ-ଇ···

ଗଦା : କିଏ ଆଜ୍ଞା ?

କମ୍ପା : (ଭିତରୁ) ସେ କଥା ବାହାରବାଲା ଜାଣିବା ଦରକାର ନାହିଁ । ବାହାରବାଲା ଚୂପ୍
ହେଇ ବସନ୍ତୁ ।

ରଙ୍ଗା : (ଟିକିଏ ପରେ) କଣ କରିବା ବାପା ? ଚୂପ୍ ହେଇ ବସିବା ?

ଗଦା : ଚୂପ୍ ହେଇ ବସିଲେ କଣ କାମ ଚଳିବ ?

ରଙ୍ଗା : ସେ ପରା କହିଲେ !

ଗଦା : ସେ ବଦ୍ୟା ବ ମତେ ଜଣାଅଛି । (ଡାକଲେ) ହେଇଟ ଆଜ୍ଞା, ଟିକିଏ ଶୁଣନ୍ତେ ନାହିଁ ?

କମ୍ପା : (ଭିତରୁ) ସେଇଠୁ କୁହନ୍ତୁ, ମୁଁ ଶୁଣୁଚ—ମତେ ଶୁଭୁଚ ।

ରଙ୍ଗା : ଇଏ ତ ଡାକ୍ତରବାବୁ ନୁହନ୍ତି !

ଗଦା : ନା—ଡାକ୍ତରବାବୁ ଆସିଲେ ଏଠି ଏ ଚୌକିରେ ବସିବେ । (ବଡ଼ପାଟିରେ) ଶୁଣନ୍ତୁ
ଆଜ୍ଞା, ଟିକିଏ ବାହାରକୁ ଆସିଲେ ଖର ଭଲହୁଅନ୍ତା ।

କମ୍ପା : (ଭିତରୁ) ଭିତରକାମ ଶେଷ ନ ହେଲେ ମୁଁ ବାହାରକୁ ଯାଇପାରିବ ନାହିଁ ।

ରଙ୍ଗା : ଖର ଟାଣୁଆ ଲୋକ ଟି !

ଗଦା : ତୁ ପାଗଳ ହେଲୁ ପୁଅ—ଏ ଟାଣପଣ ରହିବ ?···ତୁ ଦେଖ୍ । (ବଡ଼ପାଟିରେ)
ଖର ଅଡ଼ୁଆରେ ପଡ଼ଯାଇଚୁ ଆଜ୍ଞା ! ଆପଣ ନ ଆସିଲେ ଆମେ ଭିତରକୁ ଯିବୁ ତ ?

(ବଡ଼ବଡ଼, ବରକ୍ତ ହୋଇ କମ୍ପାଉଣ୍ଡର ଆସିଲେ)

କର୍ମା : କିଏ ଆପଣ ?

ଗଦା : କମ୍ପାଉଣ୍ଡର ବାବୁ ନା ? ହଁ ତ କମ୍ପାଉଣ୍ଡର ବାବୁ ! ଦଣ୍ଡବତ ଆଜ୍ଞା !

କର୍ମା : କଣ ଦରକାର ?

ଗଦା : ଆପଣ କମ୍ପାଉଣ୍ଡର ବାବୁ !

କର୍ମା : କୁହନ୍ତୁ କଣ କହୁଛନ୍ତି ?

ଗଦା : ଆପଣ ଆସନ୍ତୁ ଆଜ୍ଞା—ବସନ୍ତୁ ଏଠି ।

କର୍ମା : ମୁଁ ବସିବି !!

ରଙ୍ଗା : ମୁଁ ଉଠିଯାଉଚି ସାର୍, ଆପଣ ଏଇଠି ବାପାଙ୍କ ପାଖରେ ବସନ୍ତୁ ।

କର୍ମା : ସେ କଥା ନୁହେଁ । ଆପଣ ଉଠି କିଛି ଲାଭନାହିଁ । ମୁଁ ଯଦି ବସିବି, ତେବେ ଏଠି ଯେତେ ରୋଗୀ ଅଛନ୍ତି କି ଏଠିକି ଯେତେ ରୋଗୀ ଆଜି ଆସିବେ, ସିଏ ସମସ୍ତେ ଏଠୁ ଯାଇନପାରି ବସିରହିବେ ।···ବୁଝିଲେ, ମୁଁ ବସିବା ଲୋକ ନୁହେଁ—ମୋର ତେଣେ ହଜାରେ କାମ ।

ଗଦା : ଶୁଣନ୍ତୁ, ଶୁଣନ୍ତୁ କମ୍ପାଉଣ୍ଡର ବାବୁ ! ମୋର ପଦେ କଥା ।

କର୍ମା : କଣ ? (ଉଭୟ ଗଦା, ରଙ୍ଗା ଉଠି ଠିଆହେଲେ)

ଗଦା : ଟଙ୍କା ଖର୍ଚ୍ଚ କରିବାକୁ ମୁଁ ତିଆରି ଅଛି ।

କର୍ମା : ଟଙ୍କା !!

ଗଦା : ହଁ । ଟଙ୍କା ମୁଁ ଖର୍ଚ୍ଚ କରିବି । ଆପଣ ବିଶ୍ୱାସ କରନ୍ତୁ—ମୁଁ ହଟିବା ଲୋକ ନୁହେଁ । ଯାହା ଦରକାର, ଯେତେ ଦରକାର, ମୁଁ ଖର୍ଚ୍ଚ କରିବି ।

କର୍ମା : ଖର୍ଚ୍ଚ କରିବେ !

ଗଦା : ହଁ ।

କର୍ମା : ଟଙ୍କା !

ଗଦା : ହଁ, ଟଙ୍କା ।

କର୍ମା : ବେଶ୍ କରନ୍ତୁ—ଖର୍ଚ୍ଚ କରନ୍ତୁ ।

ଗଦା : ମାନେ ?

କର୍ମା : ମାନେ ମୁଁ ବୁଝେଇବି ?

ଗଦା : ଆପଣ ପଚ୍ଚରିଲେ ନାହିଁ—କାହିଁକି, କାହାପାଇଁ—କେତେ ଟଙ୍କା ମୁଁ ଖର୍ଚ୍ଚ କରିବି ?

କର୍ମା : ହେଇଟି ବାବୁ, ଟଙ୍କାଟା ଯଦି ମୋର ହୋଇଥା'ନ୍ତା, ଆଉ ଆପଣ ଖର୍ଚ୍ଚ କରିବାକୁ ଏମିତି ହାତମୁଠା ଖୋଲି ବସନ୍ତେ—ତେବେ ମୋର ଯାହା ଜାଣିବାର କଥା, ଯାହା ବୁଝିବାର କଥା, ଯାହା ପଚ୍ଚରିବାର କଥା କି ଯାହା କରିବାର କଥା ମୁଁ କରନ୍ତି । ଟଙ୍କା ଆପଣଙ୍କର, ଖର୍ଚ୍ଚ ଆପଣ କରିବେ···

ଗଦା : ଶୁଣନ୍ତୁ ଆଜ୍ଞା, ଆପଣ ଟିକିଏ କୃପା ଦୃଷ୍ଟି ନ ପକେଇଲେ—
କର୍ମା : ଆପଣ ଖର୍ଚ୍ଚ କରିପାରିବେ ନାହିଁ ?
ଗଦା : ନା ।
କର୍ମା : ଠିକ । ଆପଣ ଅଦାଲତରେ ଟଙ୍କା ଖର୍ଚ୍ଚ କରିବେ—ଆଉ ମୁଁ ଟିକିଏ ଦୃଷ୍ଟି ଖର୍ଚ୍ଚ କରିପାରିବି ନାହିଁ···ଠିକ ।
ଗଦା : ଆପଣ ବୋଧହୁଏ ବୁଝିପାରିଲେ ନାହିଁ ମୋ କଥାଟା ।
କର୍ମା : ବୁଝାନ୍ତୁ ।
ଗଦା : ଆମର ଖଣ୍ଡେ ସାର୍ଟିଫିକେଟ୍ ଦରକାର ।
ରଙ୍ଗା : ହଁ ସାର୍, ଖଣ୍ଡେ ଡାକ୍ତର ସାର୍ଟିଫିକେଟ୍ ଦରକାର ।
କର୍ମା : ଏଥର ପ୍ରକୃତରେ ମୁଁ ଆପଣଙ୍କ କଥା କିଛି ବୁଝିପାରିଲି ନାହିଁ ।
ଗଦା : ସେଇକଥା ଆଜ୍ଞା, ଆପଣ ଆମ କଥା ନବୁଝିଲେ ଆମେ ଟଙ୍କା ଖର୍ଚ୍ଚ କରି କେତେ—ନକରି କେତେ ? ଶୁଣନ୍ତୁ, ମୁଁ ବୁଝେଇଦଉଚି ।···ଆମ ଗାଁ ନୂଆପାରିରେ ଆଜି ଗୋଟାଏ ଦଙ୍ଗାହାଙ୍ଗାମ ମାରପିଟ୍ ହେଇଯାଇଚି ।
କର୍ମାଉଣ୍ଡର : ଏଥିରେ ନୂଆ କଥା କିଛି ନାହିଁ ।
ଗଦା : ଆମ ଗାଁର ସାଧୁଚରଣ ଓଝା ଆଉ ତା' ପୁଅ ଭକ୍ତଚରଣ ଓଝା ଆମକୁ ମାରିଚନ୍ତି—ପିଟିଚନ୍ତି ।
କର୍ମାଉଣ୍ଡର : ଆପଣମାନେ କିଏ ?
ଗଦା : ଆମେ ? ମୁଁ ହେଲି ଗଦାଧର ବର୍ତ୍ତିଆ, ଆଉ ଇଏ ମୋ ପୁଅ ରଙ୍ଗାଧର ବର୍ତ୍ତିଆ ।
କର୍ମା : ଓ ! ସେ ବାପ ପୁଅ ଦୁହେଁ ଆପଣ ବାପ ପୁଅ ଦୁହିଁଙ୍କୁ ମାରିଚନ୍ତି—ପିଟିଚନ୍ତି ?
ରଙ୍ଗା : ଖୁବ୍ ! ମାରି ମାରି ନସ୍ତାନ୍ତ କରିଦେଇଚନ୍ତି । ଜବରଦସ୍ତ ମୋ ହାତରୁ ଘଣ୍ଟା ଛଡ଼େଇ ନେଇଚନ୍ତି ।
କର୍ମାଉଣ୍ଡର : ହୁଁ, ଦେଖୁଚି ହାତରେ ଘଣ୍ଟାଟା ନାହିଁ—ଘଣ୍ଟାପିନ୍ଧା ଚିହ୍ନଟା ଅଛି ।
ରଙ୍ଗା : ଆଜ୍ଞା—ଆଜ୍ଞା !
କର୍ମାଉଣ୍ଡର : କିନ୍ତୁ ହାତଟାକୁ ପକେଟ ଭିତରେ ନେଇ ରଖୁଚ କାହିଁକି ?
ଗଦା : ସେଇଟା—ସେଇଟା ତା' ଅଭ୍ୟାସ ।
କର୍ମାଉଣ୍ଡର : ଆଚ୍ଛା···ତା'ପରେ ?
ଗଦା : ବର୍ତ୍ତମାନ ଆମ ପାଳି ।
କର୍ମା : ଆପଣଙ୍କ ପାଳି···ମାନେ ? ଆପଣ ତାଙ୍କୁ ମାରିବେ ?
ରଙ୍ଗା : ମାରନ୍ତୁ ନାହିଁ କାହିଁକି ? ହେଲେ ମାରିବୁ କାହାକୁ ? ଓଝା ବାପ ପୁଅ ଦହେଁ କାହାନ୍ତି ?
କର୍ମାଉଣ୍ଡର : ସିଏ ନାହାନ୍ତି ତ ଏଠିକି ଆସିଚନ୍ତି କାହିଁକି ? ଏଠି କାହାକୁ ମାରିବେ ?

ରଙ୍ଗା : ଏଠିକି ଆସିଚ ପସ୍ତ…
ଗଦା : ( ବାଧାଦେଇ ) ରଙ୍ଗା !
ରଙ୍ଗା : ବାପା !
ଗଦା : ତୁ ରହ ପୁଅ—ଏମିତ ଅଂଗଚାଲା ଢଙ୍ଗ ଧରନା । ଏ ସବୁ ବ୍ୟାପାର ମୋ ଉପରେ ଛାଡ଼ିଦେ' ।
ରଙ୍ଗା : ଦେଲି ।
କମାଣ୍ଡର : ଏବେ ଆପଣଙ୍କ ପାଳି କଥା କୁହନ୍ତୁ ଗଦାଧରବାବୁ !
ଗଦା : ଆମ ପାଳି ଆମେ ମକଦ୍ଦମା କରିବୁ । ଆମେ ବେଆଇନ୍ କାମ କରିବୁ ନାହିଁ । ଆଇନ୍‌କାନୁନ୍ ମାନି, ପୁଣି ଗଣ କାର୍ତ୍ତିକ ମାର୍ଗରେ…
କମାଣ୍ଡର : ଗଣକାର୍ତ୍ତିକ ! ସେ ପୁଣି କି ମାର୍ଗ ?
ଗଦା : ଗଣକାର୍ତ୍ତିକ—ଗଣେଶ ଆଉ କାର୍ତ୍ତିକଙ୍କ ମାର୍ଗ—ଯୋଉ ମାର୍ଗରେ ଆଜକାଲି ଦୁନିଆ ଚାଲିଚ ।
କମାଣ୍ଡର : ଓ, ବୁଝିଲି ! ଗଣତାନ୍ତ୍ରିକ ମାର୍ଗ ।
ଗଦା : କାର୍ତ୍ତିକ ନୁହେଁ ?
ରଙ୍ଗା : ନାହିଁ ବାପା, ତାନ୍ତ୍ରିକ ମାର୍ଗ । କାର୍ତ୍ତିକ ହେଲେ ସେ ଓଳ୍ପା ବାପ ପୁଅଙ୍କ ମାର୍ଗ । କାର୍ତ୍ତିକ କୁମାର ହରିଚନ୍ଦ୍ର ମାରଧରବାଲା ତ !
ଗଦା : ଛାଡ଼ ପୁଅ, ସେଥିରୁ କଣ ମିଳିବ ? ଏଇ କମାଣ୍ଡର ବାବୁ ଯାହା କହିଲେ ସେଇ ମାର୍ଗରେ ଚାଲିବୁ—ଆମେ ଉଚ୍ଚ ଅଦାଲତରେ ମକଦ୍ଦମା କରିବୁ ।
କମାଣ୍ଡର : ଆଉ ସେଇଥିପାଇଁ ଡାକ୍ତର ସାର୍ଟିଫିକେଟ ନେବାକୁ ଆସିଚନ୍ତି ?
ଗଦା : ଆପଣ ତ ଜାଣିଚନ୍ତି ସବୁ ।
କମାଣ୍ଡର : କିଛୁ ଜାଣି ନାହିଁ । ଆହୁରି ଅନେକ କଥା ଜାଣିବାର ଅଛି ।…ତାହାହେଲେ ଆପଣଙ୍କ ଗାଁ ନୂଆପାଡ଼ାର ସାଧୁଚରଣ ଓଳ୍ପା ଓ ତାଙ୍କ ପୁଅ…
ଗଦା : ଭକ୍ତଚରଣ ଓଳ୍ପା…
କମାଣ୍ଡର : ଆପଣ ଶ୍ରୀ…
ଗଦା : ଗଦାଧର ବନ୍ତିଆ
କମାଣ୍ଡର : ବନ୍ତିଆ ଓ ତାଙ୍କ ପୁଅ…
ରଙ୍ଗା : ରଙ୍ଗା—ରଙ୍ଗାଧର ବନ୍ତିଆ—ମୁଁ—ମୋ ନାଁ ରଙ୍ଗାଧର ବନ୍ତିଆ ।
କମାଣ୍ଡର : ବୁଝିଲି—ସେ ବାପ ପୁଅ ଦୁହେଁ ଆପଣ ବାପ ପୁଅ ଦୁହିଁଙ୍କୁ…
ରଙ୍ଗା : }
ଗଦା : } ମାରିଚନ୍ତି ।
କମାଣ୍ଡର : କି ମାଡ଼ ?
ଗଦା : ଆଜ୍ଞା !

କମ୍ପାଉଣ୍ଡର : କ ମାଡ଼ ?

ଗଦା : ବୁଝିଲେ କମ୍ପାଉଣ୍ଡର ବାବୁ, ମା—ମାଡ଼···ମାଡ଼ ।

କମ୍ପାଉଣ୍ଡର : ଆରେ ବାବୁ, କ ମାଡ଼ ?

ରଙ୍ଗା : ଗଣତାନ୍ତ୍ରିକ । ବୁଝିଲେ କମ୍ପାଉଣ୍ଡର ବାବୁ, ଖୁବ୍ ଜାତୀୟିଆ ମାଡ଼ ବନ୍ଦ ଦେଇଗଲେ ।

କମ୍ପାଉଣ୍ଡର : ଚିହ୍ନ ?

ଗଦା : (ହତାଶ ହେଲା ଭଳି) ଆଜ୍ଞା !

କମ୍ପାଉଣ୍ଡର : ଚିହ୍ନ । ମାଡ଼ ଯେ ବନ୍ଦଦେଇଗଲେ, ତା'ର ଚିହ୍ନ କଣ ଅଛି ? ଦେଖନ୍ତୁ, କୋଉଠି ମୁଣ୍ଡ ଫାଟିଚି କ ଆଖି ଫୁଟିଚି କ ଦାନ୍ତ ଭାଙ୍ଗିଚି କୁହନ୍ତୁ । ଡାକ୍ତରବାବୁ ଆସିବା ପୂର୍ବରୁ ମୁଁ ସବୁ ରପୋର୍ଟ-ସପୋର୍ଟ ଠିକ୍ କରି ରଖିଥିବ !

ଗଦା : ଆପଣ କଣ ଜାଣିନାହାନ୍ତି କମ୍ପାଉଣ୍ଡରବାବୁ ?

କମ୍ପାଉଣ୍ଡର : କୋଉକଥା ?

ଗଦା : ଏ ଯୋଉ ମାଡ଼—ମାନେ ଯୋଉ ମାଡ଼ରେ ଡାକ୍ତର-ସାର୍ଟିଫିକେଟ୍ ଦରକାର ହୁଏ, ସେ ମାଡ଼ରେ କଣ ଚିହ୍ନ ରହେ ?

କମ୍ପାଉଣ୍ଡର : ଚିହ୍ନ ତେବେ ଯାଏ କୁଆଡ଼େ ?

ଗଦା : ଭିତରକୁ । ମାଡ଼ ଯିନା ପିଠିରେ, ମୁଣ୍ଡରେ, ଦେହରେ ହୁଏ—ହେଲେ ଚିହ୍ନସବୁ ଭିତରକୁ ଚାଲିଯାଏ ।

କମ୍ପାଉଣ୍ଡର : ହୁଁ, ଏଇ ତା'ହେଲେ ଆପଣଙ୍କର ଗଣତାନ୍ତ୍ରିକ ମାଡ଼ ?

ଗଦା : ଆପଣଙ୍କୁ କଣ କୋଉ କଥା ଅଜଣା ଅଛି ?

କମ୍ପାଉଣ୍ଡର : ନାହିଁ ଆଜ୍ଞା, ସବୁ ଜଣା । ଆପଣମାନେ ଏବେ ଯା'ନ୍ତୁ ।

ଗଦା : କୋଉଠିକି ଆଜ୍ଞା ?

କମ୍ପାଉଣ୍ଡର : ଘରକୁ । ଚାଲିକରି ଯିବା ଦରକାର ନାହିଁ—ରିକ୍‌ସାରେ ବ ଯା'ନ୍ତୁ ନାହିଁ । ଟଙ୍କା ଅଛି, ଖର୍ଚ୍ଚ କରି ଟାକ୍‌ସିରେ ଯା'ନ୍ତୁ ।

ଗଦା : ସାର୍ଟିଫିକେଟ୍ ?

କମ୍ପା : ମିଳିବ ନାହିଁ ।

ଗଦା : ତା'ହେଲେ ଡାକ୍ତରବାବୁ ଆସିଲେ···

କମ୍ପା : ମୁଁ ଯାହା କହୁଚି, ଡାକ୍ତରବାବୁ ଠିକ୍ ସେଇଆ କହିବେ—ପଦେ ଏପାଖ ସେପାଖ ନାହିଁ—ବୁଝିଲେ ? ମାନେ ମାନେ ଫେରିଯାନ୍ତୁ···ମିଛଟାରେ ମୋର ଏତେ ସମୟ ନଷ୍ଟ ହେଲା । (କହି କହି ଭିତର କୋଠରିକୁ ଚାଲିଗଲେ)

ରଙ୍ଗା : ସେ କଣ ଚାଲିଗଲେ ବାପା ? .

ଗଦା : ଯାଆନ୍ତୁ ! ଡାକ୍ତରବାବୁଙ୍କ ଆସିବା ବେଳ ହୋଇଗଲାଣି—ସେ ଆସନ୍ତୁ ।

(ଏତିକିବେଳେ ରଙ୍ଗା ବାହାରକୁ ଚାହିଁ ଚମକିଉଠିଲା)

ରଙ୍ଗା : ବାପା !
ଗଦା · କଣ ହେଲା ? ଏମିତ ଚମକିଲୁ କାହିଁକି ?
ରଙ୍ଗା : ଏଇ ଦେଖିଲ ଏଣେ—ଓଃ୍ଟା ବାପ ପୁଅ ।
ଗଦା : କାହାନ୍ତି ?
ରଙ୍ଗା : ଏଇ ସେ ସଡ଼କ ଧାର ଗଛମୂଳରେ ଠିଆହୋଇଚନ୍ତି ।

( ଦୁହେଁ ବିବ୍ରତ ହୋଇପଡ଼ଲେ )

ଗଦା : ଡାକ୍ତରଖାନାକୁ ଆସିବେ କି ?
ରଙ୍ଗା : କେଜାଣି ? (ଟିକିଏ ରହି) ଏଇ ପଗ୍ ଫାଟକ ଖୋଲି ସିଧା ଡାକ୍ତରଖାନା ହତା ଭିତରକୁ ପଶିଲେଣି ।
ଗଦା : କଣ କରିବା ?
ରଙ୍ଗା : ମାରିବା ।
ଗଦା : କଣ କହିଲୁ ?
ରଙ୍ଗା : ମାରି ଛତୁ କରିଦେବା ।
ଗଦା : ତୁ ବାଉଳା ହେଲୁ ପୁଅ ! ଡାକ୍ତରଖାନା ହତାକୁ ପଗ୍ ଥାନା ହତା ଲାଗିଚ । ଏଇଟା ମାରଧରର ଜାଗା ନୁହେଁ ।···କଣ କରିବା ? ଖ୍ବରି ଅଡ଼ୁଆ ହୋଇଗଲା ।
ରଙ୍ଗା : ମୋ ମନ ଯାହା ହଉଚ ନା ?
ଗଦା : ମନକଥା ମନରେ ରଖି ତୁ ଆ' ପୁଅ !
ରଙ୍ଗା : କୋଉଠିକି ?
ଗଦା : କମ୍ପାଉଣ୍ଡରବାବୁଙ୍କ ପାଖକୁ ଆ ।

(ଦୁହେଁ ଭିତର କୋଠରି ଦୁଆରମୁହଁ ପାଖକୁ ଗଲେ)

ଅଜ୍ଞା, କମ୍ପାଉଣ୍ଡରବାବୁ !
କମ୍ପାଉଣ୍ଡର : (ବାହରକୁ ଆସି) ଏ କଣ ? ଆପଣମାନେ ଯାଇନାହାନ୍ତି ?
ଗଦା : ଅଉ ଯିବା କଥା ନୁହେଁ କମ୍ପାଉଣ୍ଡରବାବୁ !
କମ୍ପାଉଣ୍ଡର : ଯିବେ ନାହିଁ ତ, ଏଠିକି କାହିଁକି ଆସିଲେ ? ତେଣେ ବାହାରେ ରୋଗୀମାନେ ଯେଉଁଠି ବସନ୍ତି ସେଇ ବାରଣ୍ଡାରେ ଯାଇ ବସନ୍ତୁ ।
ଗଦା : ଆମେ ତ ରୋଗୀ ନୋହୁଁ ଆଜ୍ଞା—ଆମେ ଏ ଘର ଭିତରେ ବସିବୁ ।
କମ୍ପାଉଣ୍ଡର : ଏଇଟା କାହାରି ବସିବା ଘର ନୁହେଁ ।
ଗଦା : ଏଇଟା କି ଘର ?
କମ୍ପାଉଣ୍ଡର : ଏଇଟା ରୋଗୀ ପରୀକ୍ଷା ଘର ।
ଗଦା : ହଉ ପଛେ, ଆମେ ଏଇ ଘର ଭିତରେ ରହିବୁ ।
କମ୍ପାଉଣ୍ଡର : (ଦୃଢ଼ ଗଳାରେ) ଯା'ନ୍ତୁ, ଶୁଣିଲ ଯା'ନ୍ତୁ ଏଠୁ—ଯା'ନ୍ତୁ କହୁଚ !

ଗଦା : (କମ୍ପାଉଣ୍ଡରଙ୍କ ହାତ ଧରି) ବୟସରେ ମୁଁ ଆପଣଙ୍କ ବାପ ହେବି—ହେଲେ ଧର୍ମରେ ଆପଣ ମୋର ବାପ ।

କମ୍ପାଉଣ୍ଡର : ବାପ !!

ଗଦା : ହଁ, ଆପଣ ମୋର ଧର୍ମବାପ । (କମ୍ପାଉଣ୍ଡରଙ୍କ ଗୋଡ଼ ପାଖରେ ବସି ) ମୁଁ ଆପଣଙ୍କ ଗୋଡ଼ ଧରୁଛୁ—ଆପଣ ଆମକୁ ଏଠୁ ତଡ଼ିଦିଅନ୍ତୁ ନାହିଁ । ଆମେ ଏ ଘର ଭିତରେ ସେ ମେଜ ତଳେ ଟିକିଏ ଛପି ରହିଯିବୁ ।

କମ୍ପାଉଣ୍ଡର : ଛପିରହିଯିବେ ? କାହିଁକି ?

ଗଦା : ଆଉ କିଛି ପଚାରନ୍ତୁ ନାହିଁ ।

ରଙ୍ଗା : ହେଇଟି···ବାପା···

ଗଦା : ତୁ ରହ ଚୁପ୍, ମୁଁ ମୋ ବାପା ସହିତ କଥାବାର୍ତ୍ତା କରୁଚି । ···ହେଇଟି, ବାପା !

ଡାକ୍ତର : (ବାହାରୁ) କମ୍ପାଉଣ୍ଡର ବାବୁ !

ଗଦା : ହେଇ, ଡାକ୍ତରବାବୁ ଆସିଲେଣି !

ଗଦା : ଆପଣ ଯା'ନ୍ତୁ ବାପା, ଆମେ ଭିତରକୁ ଯାଉଚୁ ।

କମ୍ପାଣ୍ଡର : ଏକି ପିଲା ଖେଳ ଏଠି ଚାଲିଚି !

ଗଦା : ମୁଁ କଣ ପିଲା ନୁହେଁ ବାପା ? ଆପଣଙ୍କ ଆଖିରେ ମୁଁ ପିଲାଟିଏ । କବାଟଟା ଆଉଜେଇ ଦେଇ ଆପଣ ଯାନ୍ତୁ ।···ଆ ରଙ୍ଗା ।

( ଦୁହେଁ ଭିତରକୁ ପଶିଗଲେ । କମ୍ପାଉଣ୍ଡର ବାଧ୍ୟ ହୋଇ ଭଳି କବାଟ ଆଉଜେଇ ଦେଲେ···ଡାକ୍ତର ଆସିଲେ । )

ଡାକ୍ତର : କମ୍ପାଉଣ୍ଡର ବାବୁ !

କମ୍ପାଉଣ୍ଡର : ଆଜ୍ଞା···ଆ···ଜ୍ଞା···ସାର୍ !

ଡାକ୍ତର : କଣ ହେଲା ଆପଣଙ୍କର ?

କମ୍ପାଉଣ୍ଡର : କିଛି ନାହିଁ ସାର୍ ।

ଡାକ୍ତର : କେମିତି ବଡ଼ଳାଡ ଜଣା ପଡ଼ୁଚନ୍ତି ।

କମ୍ପାଉଣ୍ଡର : ନାହିଁ ସାର୍ ।

ଡାକ୍ତର : ପଣ୍ଡାବାବୁଙ୍କ ଘରୁ କିଏ ଆସିଥିଲେ କି ?

କମ୍ପାଉଣ୍ଡର : ପଣ୍ଡାବାବୁ···ପଣ୍ଡାବାବୁ···

ଡାକ୍ତର : ଆସି ନାହାନ୍ତି କେହି ?

କମ୍ପାଉଣ୍ଡର : ନାହିଁ ଆଜ୍ଞା ।

ଡାକ୍ତର : ରୋଗୀ କେହି ଆସିଲେଣି ?

କମ୍ପାଉଣ୍ଡର : ରୋଗୀ···

ଡାକ୍ତର : କାହିଁ···ବେଶି କେହି ଆସି ନ ନାହାନ୍ତି । ମୁଁ ଟିକଏ ପଣ୍ଡାବାବୁଙ୍କ ଘରଆଡ଼ୁ ବୁଲିଆସେ ।

କମ୍ପାଉଣ୍ଡର : ଯାନ୍ତୁ ସାର୍ !

[ ସାଧୁଚରଣ ଓ ଭକ୍ତଚରଣ ଆସିଲେ । ଦୁହିଁଙ୍କଠାରେ ବ୍ୟଗ୍ରଭାବ । ବେଶଭୂଷା ଗଦାଧର ଓ ରଙ୍ଗାଧରର ଅନୁରୂପ । ]

ସାଧୁ }
ଭକ୍ତ } : ଦଣ୍ଡବତ ଆଜ୍ଞା !

କମ୍ପାଉଣ୍ଡର : ଶୁଣନ୍ତୁ, ଶୁଣନ୍ତୁ ! ଆପଣମାନେ ଯାଇ ସେ ବାହାର ବାରଣ୍ଡାରେ ବସନ୍ତୁ । ଡାକ୍ତର ବାବୁ ରୋଗୀ ଦେଖି ଯାଉଚନ୍ତି—ଆସିଲେ ଆପଣଙ୍କ କଥା ବୁଝିବେ ।

ସାଧୁ : ନାହିଁ ଆଜ୍ଞା ଡାକ୍ତର ବାବୁ ! ଆପଣ ଟିକଏ ଆମ କଥାବୁଝିଦେଇ ପୁଆଡ଼େ ଯିବାର ଯା'ନ୍ତୁ । ଏଇ ଆପଣଙ୍କର ପାଉଣା । ଦେ' ପୁଅ, ଟଙ୍କା ବାହାରକର ।

ଡାକ୍ତର : ପାଉଣା ଥାଉ—କଣ ହେଇଚି କୁହନ୍ତୁ ।

ସାଧୁ : ମୋ ସଂସାର ତ ଉଚ୍ଛନ୍ନ ହେଇଗଲାଣି ବାବୁ ।

ଡାକ୍ତର : କଣ ହେଇଚି କୁହନ୍ତୁ ।

ଭକ୍ତ : (କାନ୍ଦ କାନ୍ଦ ହେଇ) ବାପା···

ସାଧୁ : କଣ ପୁଅ···କାନ୍ଦୁଛୁ ? କାନ୍ଦ । ଡାକ୍ତର ବାବୁ ତ ଅଛନ୍ତି—କମ୍ପାଉଣ୍ଡର ବାବୁ ଅଛନ୍ତି । କାନ୍ଦ—ସେମାନେ ଦେଖନ୍ତୁ ।

ଡାକ୍ତର : କିନ୍ତୁ ସେ କାନ୍ଦବେ କାହିଁକି ?

ସାଧୁ : କାନ୍ଦଲେ ଆପଣ ବଳେ ଜାଣିପାରିବେ ।

ଡାକ୍ତର : କାନ୍ଦବାଟା କଣ ତାଙ୍କର ରୋଗ ?

ଭକ୍ତ : ନାହିଁ ଆଜ୍ଞା, ସେମିତି କିଛି ରୋଗ ମୋର ନାହିଁ ।

ଡାକ୍ତର : ତାହେଲେ ମିଛଟାରେ କାନ୍ଦବେ କାହିଁକି ?

ସାଧୁ : ମିଛଟାରେ ନୁହେଁ ଆଜ୍ଞା···ମିଛଟାରେ କଣ କିଏ କାନ୍ଦେ ? ପିଲାଟା ମୋର କାନ୍ଦ କାନ୍ଦ ନସ୍ୟାନ୍ତ ହେଇଗଲାଣି ।

ଭକ୍ତ : (କାନ୍ଦଉଠିଲା)

ଡାକ୍ତର : କି ଆଶ୍ଚର୍ଯ୍ୟ କଥା ! କମ୍ପାଉଣ୍ଡର ବାବୁ, ଏସବୁ କଣ ଏଠି ହଉଚି ?

କମ୍ପାଉଣ୍ଡର : ( ଭକ୍ତକୁ ) ଶୁଣନ୍ତୁ, ଶୁଣନ୍ତୁ···ହୋ ବାବୁ, ଟିକଏ ଶୁଣନ୍ତୁ ମୋ କଥା ।

ଭକ୍ତ : କଣ ?

କମ୍ପାଉଣ୍ଡର : ନକାନ୍ଦଲେ କଣ ଚଳିବନାହିଁ ?

ଭକ୍ତ : ଆଜ୍ଞା ?

କମ୍ପାଉଣ୍ଡର : ମୁଁ କହୁଚ...ନକାନ୍ଦିଲେ କଣ ଚଳିବନାହିଁ ?

ସାଧୁ : ଆପଣମାନେ ଚଳେଇଲେ ଚଳିବ । ତା'ଉପର ହେଇ କୋହ୍ନଘର ଉଠିଆସୁଚ—ସେ କରିବ କଣ ?

ଭକ୍ତ : ( କାନ୍ଦୁଥାଏ )

ଡାକ୍ତର : ( କଥାରେ ଜୋର୍ ଦେଇ ) ଆପଣ ଆଗେ ଚୁପ୍ ହେଲେ—ଚୁପ୍ ହୁଅନ୍ତୁ ।

ସାଧୁ : ହଉରେ ପୁଅ, ଚୁପ୍ ହ ।

ଡାକ୍ତର : ଏସବୁ ଫାର୍ଶ ଚୁଡ଼ନ୍ତୁ ମତେ ଖୋଲାଖୋଲି କୁହନ୍ତୁ—କାହିଁକି ସେ କାନ୍ଦୁଚନ୍ତି—ଆପଣ ତାଙ୍କୁ କାହିଁକି କାନ୍ଦିବାକୁ କହୁଲେ ।

ସାଧୁ : ଘରୁ ବାହାରିଲା ବେଳଠୁ ପୁଅ ମୋର ବାଟସାକ କାନ୍ଦି କାନ୍ଦି ଆସୁଥିଲା । ଏଠି ଡାକ୍ତରଖାନା ପାଖ ହେଲାରୁ ଟିକିଏ ଚୁପ୍‌ପଡ଼ିଲା ।

ଡାକ୍ତର : କାହିଁକି ?

ସାଧୁ : ଚଞ୍ଚଳଣ୍ଣା ବୋଲି ଗୋଟିଏ ଜନିଷ ଅଛୁ ତ ?

ଡାକ୍ତର : ଆଉ ଏଠି ଆମର କାହାରି ଚଞ୍ଚନାହିଁ କି ତାଙ୍କର ଲଜ୍ଜା ନାହିଁ...ଏଇଆ ?

ସାଧୁ : ଗୁଡ଼ନ୍ତୁ ଆଜ୍ଞା, ସେ ଚୁପ୍ ହେଲାଣି ।

ଡାକ୍ତର : ଏବେ କୁହନ୍ତୁ, କାହାର କଣ ହେଇଚ । ଚଞ୍ଚଳ, ମୋର ସମୟ ନାହିଁ ।

ସାଧୁ : ଆମ ଗାଁ ନୂଆପାଣରେ...

କମ୍ପାଉଣ୍ଡର : ଜାଣେ ।

ଡାକ୍ତର : ଜାଣନ୍ତି ?

କମ୍ପାଉଣ୍ଡର : ଏଁ !! ହଁ-ହଁ ସାର୍, ନୂଆପାଣ ଗୋଟିଏ ବଖ୍ୟାତ ଗାଁ ତ, କିଏ ନ ଜାଣେ ?

ଡାକ୍ତର : ଓ !

ସାଧୁ : ଆମ ଗାଁରେ ଗୋଟାଏ ଦଙ୍ଗାହଙ୍ଗାମା ହେଇଯାଇଚ ।

କମ୍ପାଉଣ୍ଡର : ତା'ବ ଜାଣେ ।

ସାଧୁ : ଆମ ଗାଁର ଗଦାଧର ବନ୍ତିଆ ଆଉ ତା'ପୁଅ ରଙ୍ଗାଧର ବନ୍ତିଆ...

କମ୍ପାଉଣ୍ଡର : ତାଙ୍କୁ ବ ଜାଣେ ।

ଡାକ୍ତର : ସେମାନଙ୍କୁ ଆପଣ କପରି ଜାଣିଲେ ?

( କମ୍ପାଉଣ୍ଡର କେବଳ ଘୁହିଁରହିଲେ )

କମ୍ପାଉଣ୍ଡର ବାବୁ !

କମ୍ପାଉଣ୍ଡର : ସାର୍ !

ଡାକ୍ତର : ବନ୍ତିଆ ବାପା ପୁଅଙ୍କୁ ଆପଣ କେମିତି ଜାଣିଲେ ?

କମ୍ପାଉଣ୍ଡର : ଏଇଠି, ଏଇଠି ଜାଣିଲି ସାର୍ !···ଏଇ ଏଇଠି କହୁ ଥାଉଚନ୍ତି ଚ, ତାଙ୍କ କଥା ଶୁଣୁ ଶୁଣୁ ମୋ ପାଟିରୁ ଏମିତ ବାହାରିପଡ଼ିଲା ।

ଡାକ୍ତର : ଓ ! ( ସାଧୁଙ୍କୁ ) ହଁ, କୁହନ୍ତୁ କଣ ହେଲା ?

ସାଧୁ : ଏଇ ବଣ୍ଡିଆ ବାପ ପୁଅ ଦୁହେଁ ଦଙ୍ଗାହାଙ୍ଗାମରେ ଆମ ବାପ ପୁଅ ଦୁହିଁଙ୍କୁ ମାରିଲେ ।

ଡାକ୍ତର : ମାରିଲେ ?

ଭକ୍ତ : ଖୁବ୍ ! ମାରି ମାରି ଗଇଁଆ କରିଦେଇଚନ୍ତି ।

ଡାକ୍ତର : ଆପଣମାନଙ୍କ ପରିଚୟ ?

ସାଧୁ : ମୋ ନାଁ ସାଧୁଚରଣ ଓଝା, ଆଉ ଇଏ ମୋ ପୁଅ···

କମ୍ପାଉଣ୍ଡର : ( ଈଷତ୍ ଗମ୍ଭୀର ଭାବେ ) ଭକ୍ତଚରଣ ଓଝା ।

ଭକ୍ତ : ହଁ ଆଜ୍ଞା, କମ୍ପାଉଣ୍ଡର ବାବୁ ଠିକ୍ କହୁଚନ୍ତି—ମୋ ନାଁ ଭକ୍ତ ଚରଣ ଓଝା ।

ଡାକ୍ତର : କମ୍ପାଉଣ୍ଡର ବାବୁ !

କମ୍ପାଉଣ୍ଡର : ସା···ସାର୍ !

ଡାକ୍ତର : ଆପଣ ଏ ସମସ୍ତଙ୍କୁ ତା'ହେଲେ ଜାଣିଚନ୍ତି ?

କମ୍ପାଉଣ୍ଡର : ସାର୍ ?

ଡାକ୍ତର : ଜାଣନ୍ତି ତ ?

କମ୍ପାଉଣ୍ଡର : ନାହିଁ ସାର୍ । ମୁଁ—ମୁଁ କାହାରିକୁ ଜାଣେନା ।

ଡାକ୍ତର : ଜାଣନ୍ତି ନାହିଁତ ସ୍ୱାଙ୍କ ନାଁ ଭକ୍ତଚରଣ ବୋଲି କହୁଚନ୍ତି କେମିତ ?···କୁହନ୍ତୁ କେମିତ ଜାଣିଲେ ?

କମ୍ପାଉଣ୍ଡର : ଏଇ···ଏଇ ଦେଖନ୍ତୁ ସାର୍, ତାଙ୍କ ହାତରେ ତାଙ୍କ ନାଁ ଲେଖାହୋଇଚ ।

ଡାକ୍ତର : ଓ···ତା'ହେଲେ ସାଧୁଚରଣ ବାବୁ···

ସାଧୁ : ଆଜ୍ଞା !

ଡାକ୍ତର : ଆପଣଙ୍କ ଗାଁର ଗଦାଧର ବଣ୍ଡିଆ ଓ ତାଙ୍କ ପୁଅ—

ଭକ୍ତ : ଗଙ୍ଗାଧର ବଣ୍ଡିଆ—

ଡାକ୍ତର : ଆପଣ ବାପ ପୁଅ ଦୁହିଁଙ୍କୁ ମାରିଚନ୍ତି ?

ସାଧୁ : ହଁ ଆଜ୍ଞା, ସେ ବାପ ପୁଅ ଆମ ବାପ ପୁଅ ଦୁହିଁଙ୍କୁ ମାରିଚନ୍ତି ।

କମ୍ପାଉଣ୍ଡର : ହରିବୋ···ଲ ।

ଡାକ୍ତର : କମ୍ପାଉଣ୍ଡରବାବୁ .

କମ୍ପାଉଣ୍ଡର : ସାର୍ !

ଡାକ୍ତର : କଣ ହେଉଚ ଆପଣଙ୍କର ?

କମ୍ପାଉଣ୍ଡର : କିଛି ଜାଣିହଉନି ସାର୍ ।

ଡାକ୍ତର : କିନ୍ତୁ ମୁଁ ଜାଣିଚ ।

କମ୍ପାଉଣ୍ଡର : କଣ ସାର୍—କଣ ଜାଣିଚନ୍ତି ?
ଡାକ୍ତର : ଜାଣିଚ ଏଇଆ ଯେ ଆପଣ ଏ ମାଡ଼ ଫୌଜଦାରୀ କଥା···
କମ୍ପାଉଣ୍ଡର : ସେଇ କଥା ସାର୍ ! ଏଇ ଯେ ମାଡ଼ ଫୌଜଦାରୀ ଦଙ୍ଗାହାଙ୍ଗାମ ହେଲା—
ଏଥିରେ କଏ କାହାକୁ ମାରିଚି···
ସାଧୁ : ସେମାନେ ଆମକୁ ମାରିଛନ୍ତି ଆଜ୍ଞା ! ସେ ବାପ ପୁଅ ଆମ ବାପ ପୁଅଙ୍କୁ ମାରିଚନ୍ତି ।
କମ୍ପାଉଣ୍ଡର : (ହୃଷ୍ଟ ଗଳାରେ) ମାରିଚନ୍ତି ତ ଭଲ କଥା । ହେଲେ କି ମାଡ଼ ?
ସାଧୁ : ଆଜ୍ଞା ?
କମ୍ପାଉଣ୍ଡର : କି ମାଡ଼ ?···କି ମାଡ଼ ?
ଡାକ୍ତର : ଠେଙ୍ଗା ମାଡ଼, କି ଢେଲା ମାଡ଼, କି ହାତହତଆର ମାଡ଼ ?
ଭକ୍ତ : ମିଶାମିଶି ମାଡ଼···ମିଶାମିଶି ମାଡ଼ ନହଦେଇଗଲେ ।
ସାଧୁ : ସେଇ ଅପମାନରେ ପୁଅ ମୋର ବାଟଯାକ କାନ୍ଦକାନ୍ଦ ଆସୁଥିଲା ।
ଡାକ୍ତର : ମାଡ଼ଖାଇ ଆପଣମାନେ ତା'ହେଲେ ଆହତ ହୋଇଚନ୍ତି ?
ସାଧୁ : ହଁ ଆଜ୍ଞା, ମାଡ଼ ଯେତେବେଳେ ଖାଇଚୁ ଆହତ ହେଇନୁ କଣ ? ହେଇନୁ ।
ଡାକ୍ତର : ଚିକିତ୍ସା ପାଇଁ ମୋ ପାଖକୁ ଆସିଚନ୍ତି ତ ?
ସାଧୁ : ନାଇଁ ଆଜ୍ଞା, ଆପଣ ଖଣ୍ଡେ ସାର୍ଟିଫିକେଟ୍ ଦିଅନ୍ତୁ—ଡାକ୍ତରୀ ସାର୍ଟିଫିକେଟ୍ ।
ଡାକ୍ତର : ଚିକିତ୍ସା କରାଇବେ ନାହିଁ ?
ଭକ୍ତ : ଚିକିତ୍ସା ହଉ ନହଉ, ସାର୍ଟିଫିକେଟ୍ ଦିଅନ୍ତୁ—ଆମେ ମକଦ୍ଦମା କରିବୁ । ଏ ମାଡ଼ର
ଚିକିତ୍ସା ହେଲା ମକଦ୍ଦମା ।
କମ୍ପାଉଣ୍ଡର : ଆପଣମାନେ ତା'ହେଲେ ମକଦ୍ଦମା କରିବେ ?
ସାଧୁ : ହଁ, ମକଦ୍ଦମା କରିବୁ ।
କମ୍ପାଉଣ୍ଡର : ହରିବୋଲ ।
ଡାକ୍ତର : କମ୍ପାଉଣ୍ଡର ବାବୁ !
କମ୍ପାଉଣ୍ଡର : ସାର୍ !
ସାଧୁ : ଆଜ୍ଞା, କମ୍ପାଉଣ୍ଡର୍ ବାବୁ ଯେତେ ହରିବୋଲ ପକାନ୍ତୁ ପଛେ ଆମେ ମକଦ୍ଦମା
କରିବୁ । ଆପଣ ଖଣ୍ଡେ ସାର୍ଟିଫିକେଟ୍ ଦିଅନ୍ତୁ ।
ଡାକ୍ତର : ଠିକ୍ ଅଛି, ମୁଁ ସାର୍ଟିଫିକେଟ୍ ଦେବି···
କମ୍ପାଉଣ୍ଡର : ଆଜ୍ଞା—ଆଜ୍ଞା—ଆପଣ ଯେ ସାର୍ଟିଫିକେଟ୍ ଦେବେ, ଏମାନଙ୍କ ଦେହରେ
ମାଡ଼ର ଚିହ୍ନ ? କେଉଁଠି କଣ ଭାଙ୍ଗିଚି, କି ଫୁଲିଚି···
ଡାକ୍ତର : ସେଇ କଥା ମୁଁ କହୁଚି···ଆପଣ ଦେଖନ୍ତୁ ।
କମ୍ପାଉଣ୍ଡର : ହଁ କୁହନ୍ତୁ ବାବୁମାନେ—ମାଡ଼ଖାଇ କୋଉଠି କଣ ହୋଇଛି, ଦେଖାନ୍ତୁ ।

ସାଧୁ : ଆଜ୍ଞା, ଆପଣ ଏବେ ଶରୀରକୁ ନଯାଇ ସେମିତି ଉପରେ ଉପରେ ଖଣ୍ଡେ ସାର୍ଟିଫିକେଟ୍ ଦେଇ ଦିଅନ୍ତୁ ।

ଡାକ୍ତର : କିଛି ନଜାଣି ନଶୁଣି ମୁଁ ସାର୍ଟିଫିକେଟ୍ ଦେବି ?

(ସାଧୁ ବସିପଡ଼ି ଡାକ୍ତରଙ୍କ ଗୋଡ଼ ଧରି ପକେଇଲେ)

ସାଧୁ : ମୁଁ ଆପଣଙ୍କର ଗୋଡ଼ ଧରୁଚି, ଆପଣ ଆମକୁ ଉଦ୍ଧାର କରନ୍ତୁ ।

ଡାକ୍ତର : ଏ' ! କଣ...ଗୋଡ଼ ଛାଡ଼ନ୍ତୁ ।

ସାଧୁ : ନାହିଁ ଆଜ୍ଞା, ଛାଡ଼ିବି ନାହିଁ ।

ଡାକ୍ତର : ସାଧୁବାବୁ :

ସାଧୁ : ମୁଁ ବାବୁ ନୁହେଁ ଡାକ୍ତରବାବୁ—ମୁଁ ଆପଣଙ୍କ ଅଧମ ପୁଅ । ଆପଣ ମୋ ଧରମ ବାପ ।

କମାଣ୍ଡର : (ଈଷତ୍ ନମ୍ରସ୍ୱରରେ) ହରିବୋଲ ।

ଭକ୍ତ : ହେଇଟି ବାପା...

ସାଧୁ : ଚୁପ୍ ! ମୁଁ କାହାରି କଥା ଶୁଣିବିନାହିଁ । ମୁଁ ମୋ ବାପ ଗୋଡ଼ ଧରି ଅଳିକରୁଚି—ଖଣ୍ଡେ ସାର୍ଟିଫିକେଟ୍ ।

ଡାକ୍ତର : (ରାଗି) ଚୁପ୍ କରନ୍ତୁ । ଯା'ନ୍ତୁ, ବସନ୍ତୁ ସେଠି—ଯା'ନ୍ତୁ । (ସାଧୁ ଗୋଡ଼ ଛାଡ଼ି ଯାଇ ବେଞ୍ଚରେ ବସିଲେ) ଗୋଟାଏ ଫାର୍ଣ୍ଣ ଚାଲିଚି ଏଠି ? ମୁଁ ଆପଣମାନଙ୍କୁ ଭଲ ଭଲ ପରୀକ୍ଷା କରି ସାର୍ଟିଫିକେଟ୍ ଦେବି ।

ସାଧୁ : ଆପଣଙ୍କ ଦୟା ।

ଡାକ୍ତର : କମାଣ୍ଡର୍ ବାବୁ—

କମାଣ୍ଡର : ଖୋଲନ୍ତୁ—ଦେହରୁ ଜାମାପଟା ସବୁ ଖୋଲନ୍ତୁ ।

ଡାକ୍ତର : ଏଠି କଣ—ସେ ଘରକୁ ଏମାନେ ଯା'ନ୍ତୁ ।

କମାଣ୍ଡର : ମିଛଟାରେ ସେ ଘରକୁ ଯିବେ କାହିଁକି—ଏଇଠି କାମ ସାରିଦିଅନ୍ତୁ ।

ଡାକ୍ତର : ଏମାନଙ୍କ ପରି ଆପଣଙ୍କ ମୁଣ୍ଡ ବି ଖରାପ ହେଇଗଲାଣି ନା କଣ ? ଏଠି କି ପରୀକ୍ଷା କରିବେ ? ଏମାନଙ୍କୁ ସେ ଘରକୁ ନେଇ ଟେବୁଲ୍ ଉପରେ ଶୁଆନ୍ତୁ ।... ମୋ ମୁହଁକୁ ଏମିତି ଚାହିଁ କହୁଚନ୍ତି କଣ ? ସେ ଘରକୁ ଯା'ନ୍ତୁ । ...ଏ ! ଏ କଣ ? ଘରେ କବାଟଟା ଦିଆହେଇଚି କାହିଁକି । କବାଟ ଖୋଲନ୍ତୁ ।

କମାଣ୍ଡର : କବାଟଟା ଆଜ୍ଞା ଦେଇଦେଇଥିଲି...

[ଡାକ୍ତର ଉଠିଯାଇ କୋଠରୀ ଆଡ଼କୁ ଗଲେ । ପଛେ ପଛେ କମାଣ୍ଡର ।]

ଡାକ୍ତର : କାହିଁକି ଦେଇଥିଲେ ? ଘରେ କଣ କେହି ନୂଆବୋହୂ ଅଛନ୍ତି ? ଖୋଲନ୍ତୁ !

କମ୍ପାଉଣ୍ଡର : ଖୋଲୁଚ ସାର୍ । (ଖୋଲିଲେ)

ଡାକ୍ତର : ଏଁ ! ଏ କଣ ? ଏମାନେ କଏ ? କମ୍ପାଉଣ୍ଡର ବାବୁ, ଟେବୁଲ ଉପରେ ଶୋଇଚନ୍ତି ଏ ଦୁଜଣ କଏ ? କଏ ଏମାନେ ? (କମ୍ପାଉଣ୍ଡର ନିରୁତ୍ତର) କି ଆଶ୍ଚର୍ଯ୍ୟ ! ଆପଣଙ୍କ ପାଟିରେ କଥା ନାହିଁ ? କମ୍ପାଉଣ୍ଡର ବାବୁ !

କମ୍ପାଉଣ୍ଡର : ଆଜ୍ଞା !

ଡାକ୍ତର : ଏ ଦୁ'ଜଣ କଏ ?

କମ୍ପାଉଣ୍ଡର : ଏ ଦୁଜଣ ସାର୍···ଇଏ···ମାନେ···ଇଏ ହରିଚନ୍ଦ୍ର ମୋ ପୁଅ ।

ଡାକ୍ତର : ଆପଣଙ୍କ ପୁଅ !

କମ୍ପାଉଣ୍ଡର : ସିଏ ଆଜ୍ଞା ଯେମିତି ଆପଣଙ୍କର ପୁଅ, ଇଏ ସେମିତି ମୋ ପୁଅ ।

ଡାକ୍ତର : ମୁଁ କିଛି ବୁଝିପାରୁନି କମ୍ପାଉଣ୍ଡର ବାବୁ !

କମ୍ପାଉଣ୍ଡର : ମୁଁ ହେଲେ ସାର୍ କିଛି ବୁଝିଚି ନା ବୁଝିବାର ସୁଯୋଗ ଏମାନେ ଦେଉଚନ୍ତି ? (ଗଦାଧରକୁ) ହଇଏ, ମେଜତଳେ ସବୁ ଛପି ରହିବାର କଥା ଥିଲା —ମେଜ ଉପରକୁ ଉଠିଲ କାହିଁକି ?

ଗଦା : (କୋଠରୀ ଭିତରୁ) ଆଜ୍ଞା, ମେଜ ତଳେ ଛପିରହିଥିଲୁ । ସବୁକଥା କାନରେ ପଡ଼ିଲା ପରେ ମେଜ ଉପରକୁ ଉଠିଆସିଲୁ ।

କମ୍ପାଉଣ୍ଡର : କାହିଁକି ? ମେଜଟା କଣ ତମର ?

ଗଦା : (ଭିତରୁ) ଡାକ୍ତର ବାବୁ ଯେବେ ପରୀକ୍ଷା କରିବା କଥା, ତେବେ ଆମକୁ ଆଗେ ପରୀକ୍ଷା କରନ୍ତୁ ।

ରଙ୍ଗା : (ଭିତରୁ) ଆମକୁ ଆଗେ ସାର୍ଟିଫିକେଟ୍ ଦିଅନ୍ତୁ ।

ଗଦା : (ଭିତରୁ) ଆମେ···ଆଗେ ଆସିଚୁ ।

ଡାକ୍ତର : ଇଏ ତା' ହେଲେ ନୂଆପାଣର ସେଇ ଗଦାଧର ବନ୍ଧିଆ ଆଉ ରଙ୍ଗାଧର ବନ୍ଧିଆ ?

ସାଧୁ : କଏ—କଏ ସେ ଘରେ ? ଗଦା ବନ୍ଧିଆ ଆଉ ରଙ୍ଗା ବନ୍ଧିଆ !

(ସାଧୁ ଓ ଭକ୍ତ ଦୁହେଁ ଆଗେଇ ଆସୁଥିଲେ, କମ୍ପାଉଣ୍ଡର ତାଙ୍କୁ ଅଟକେଇଲେ ।)

କମ୍ପାଉଣ୍ଡର : ହାଁ ହାଁ—ଆସ୍ତେ—ଆସ୍ତେ ସାଧୁବାବୁ ! ସେମାନେ ତ ଘର ଭିତରେ ଅଛନ୍ତି —ଆପଣ ସେ ଘରକୁ ନ ଯାଇ ଏଇ ପାଖରେ ଥାଇ ଯାହା କୁଶଳ ସମାଚାର ବୁଝିବାର କଥା ବୁଝନ୍ତୁ ।

ସାଧୁ—ହଇରେ ହେ ବନ୍ଧିଆ ! (ଗଦାଧର ରଙ୍ଗାଧର ପଦାକୁ ବାହାରି ଆସିଲେ)

ଗଦା : ପାଟି କରନା ସାଧୁଆ—ପାଟି କରନା କହୁଦଉଚ ।

ସାଧୁ : ଦେଖୁଚନ୍ତି, ଦେଖୁଚନ୍ତି ଡାକ୍ତର ବାବୁ, ଆପଣଙ୍କ ସାମନାରେ ସେ ମୋତେ ଧମକ କହୁଯାଉଚ !

ଗଦା : ମୁଁ କହୁଚ ନା ତୁ କହୁଚୁ ! ଡାକ୍ତରବାବୁ ଆଜ୍ଞା ସାକ୍ଷୀ—ସେଇ କୁହନ୍ତୁ—କିଏ କାହାକୁ କଣ କହିଲା ! ମୋର କଣ ନାଁ ନାହିଁ ନା ଗାଁ ନାହିଁ -- ତୁ ମତେ 'ତୁ' 'ତା' 'ରେ' 'ବ' କହିବୁ ?

ସାଧୁ : ନାହିଁ ତତେ ଫୁଲ ମହାପ୍ରସାଦ ଦେଇ ପୂଜା କରିବ ! ଗ୍ୱେର···

ଗଦା : ପାଜି···

ସାଧୁ : ସଇତାନ···

ଗଦା : କୁକୁର···

ଡାକ୍ତର : କମ୍ପାଉଣ୍ଡର ବାବୁ !

କମ୍ପାଉଣ୍ଡର : ଉପଯୁକ୍ତ ଭାଷା ପ୍ରୟୋଗରେ ଉଭୟେ ପ୍ରବୀଣ । କେହି କାହାକୁ ଊଣା ନୁହନ୍ତି ।

ଡାକ୍ତର : ଆଉ ଆପଣ ଏଠି ଠିଆହୋଇ ସେ ଦୃଶ୍ୟ ଉପଭୋଗ କରୁଛନ୍ତି !

କମ୍ପାଉଣ୍ଡର : ଏମାନେ ତ ସାର୍ କେହି କାହାରିକୁ କିଛି କୁହାଇ ଦଉନାହାନ୍ତି କି କରେଇ ଦଉନାହାନ୍ତି ।

ଡାକ୍ତର : ଆଗେ ଏ ବସ୍ତିଆ ବାପ ପୁଅ ଦୁହିଁଙ୍କୁ ଏଠୁ ବାହାରେକରି ଦିଅନ୍ତୁ ।

ଗଦା : କାହିଁକି ଆଜ୍ଞା ? ଆମର ଅପରାଧ ?

ଡାକ୍ତର : ଆପଣ ଆଗେ ଗଲେ ଏଠୁ ।

ଭକ୍ତ : ହିଁ, ଯା ଏଠୁ । ହେ ରଙ୍ଗା—ଯା ଏଠୁ ।

ରଙ୍ଗା : ତୁ କିଏ ? ତୁ କିଏ କହିବାକୁ ବା—ତୁ କିଏ ?

ଭକ୍ତ : ଡାକ୍ତରବାବୁ କହୁଚନ୍ତି ତେମେ ଦି'ଟା ଯାଅ ଏଠୁ ।

ରଙ୍ଗା : ଡାକ୍ତରବାବୁଙ୍କ କଥା ବୁଝିବାକୁ ଏଠି କମ୍ପାଉଣ୍ଡର ବାବୁ ଅଛନ୍ତି—ତୁ ଚୁପ୍ ।

ଭକ୍ତ : ତୁ ଚୁପ୍ !

କମ୍ପାଉଣ୍ଡର : ସମସ୍ତେ ଚୁପ୍ । କେହି ପାଟି ଗୁଣ୍ଡ କରନ୍ତୁ ନାହିଁ ।

ଡାକ୍ତର : ଆପଣ ଟେବୁଲ ଠିକ୍ କରନ୍ତୁ—ମୁଁ ଏମାନଙ୍କୁ ପରୀକ୍ଷା କରିବ ।

ଗଦା : ଆମକୁ ତ ଆଜ୍ଞା—ଆମକୁ ପରୀକ୍ଷା କରିବେ ତ ?

ଡାକ୍ତର : ନା, ଏ ଓଟା ବାପ ପୁଅ ଦୁହିଁଙ୍କୁ ।

କମ୍ପାଉଣ୍ଡର : ମୁଁ କହୁଥିଲି ସାର୍···

ଡାକ୍ତର : କଣ ?

କମ୍ପାଉଣ୍ଡର : ଏ ବସ୍ତିଆ ବାପ ପୁଅ ଦୁହେଁ ଆଗେ ଆସିଥିଲେ । ସେମାନଙ୍କୁ ଆଗେ ପରୀକ୍ଷା କରିଦେଲେ···

ଡାକ୍ତର : ଓ ! ଆପଣ ତା'ହେଲେ ଏମାନଙ୍କ ପକ୍ଷ ନଉଚନ୍ତି ?

କମ୍ପାଉଣ୍ଡର : ନାଇଁ ସାର୍—କ୍ଷମା କରନ୍ତୁ । ମତେ ଏ ଦୋଷରେ ଦୋଷୀ କରନ୍ତୁ ନାହିଁ । ମୁଁ ଏତେ ବଡ଼ କଥା କହିବ ?

ଡାକ୍ତର : ଶୁଣନ୍ତୁ, ଆମ ସମସ୍ତ ନଷ୍ଟ ନ କରି ଟେବୁଲ ଠିକ୍ କରନ୍ତୁ—ମୁଁ ସାଙ୍ଗେ ସାଙ୍ଗେ ଆସୁଚି । (ଚାଲିଗଲେ)

ଗଦା : ଡାକ୍ତରବାବୁ କୁଆଡ଼େ ଗଲେ ଆଜ୍ଞା ?

କମ୍ପାଉଣ୍ଡର : କୁଆଡ଼େ ଗଲେ ପଚାରନ୍ତୁ ନାହିଁ—ଏଇ ସାଙ୍ଗେ ସାଙ୍ଗେ ଆସି ଓଝା ବାପ ପୁଅ ଦୁହିଁଙ୍କୁ ପରୀକ୍ଷା କରିବେ ।

ଗଦା : ଆଉ ଆମ କଥା ?

କମ୍ପାଉଣ୍ଡର : ଆପଣଙ୍କ କଥା ଆପଣ ଜାଣନ୍ତୁ···ମୁଁ ଟେବୁଲ ଠିକ୍ କରେ ।

ଗଦା : କମ୍ପାଉଣ୍ଡର ବାବୁ—ଆପଣ ମୋର ଧରମବାପ ।

କମ୍ପାଉଣ୍ଡର : ଡାକ୍ତରବାବୁଙ୍କ ହୁକୁମ···ମୋ ଜନମକଲା ବାପର ସାଧ ନାହିଁ ଏପାଖ ସେପାଖ କରିବାକୁ—ଧରମବାପ କଥା କିଏ ପଚାରେ ?

ଗଦା : ହଇ ରଙ୍ଗା, ଆ ବାପ—ଆ ଯିବା ।

ରଙ୍ଗା : ତେମେ ଭାବୁଚ ବାପା, ଡାକ୍ତରବାବୁ ତାଙ୍କ ନିଜ ମନକୁ ଏକଥା କହୁଛନ୍ତି ?

ଗଦା : ଆଉ ?

ରଙ୍ଗା : ଏ ଅଇଁଠାଚଟା କୁକୁର ଦ'ଟା ତାଙ୍କୁ ଶିଖେଇ ମଣେଇ ଏ କାମ କରିଚନ୍ତି ।

ଭକ୍ତ : ଶୁଣୁଚଟି ବାପା, ଏ ରଙ୍ଗା କଣ କହୁଚି !

ରଙ୍ଗା : ଠିକ୍ କହୁଚି···ଯାହା କହୁଚି ଠିକ୍ କହୁଚି···ଡାକ୍ତରବାବୁ ତମ କଥାରେ ଭଳି-ଯାଇଚନ୍ତି ।

ସାଧୁ : ଯଦି ଭଳିଯାଇଚନ୍ତି, ତେବେ ସେଇଟା ଆମ ପାରିଲାପଣିଆ···ତୋ ଦେହ କାହିଁକି ସହୁନି ?

ରଙ୍ଗା : ବାପା !

ଗଦା : କଣ ପୁଅ ?

ରଙ୍ଗା : ଆମେ ଯିବାନି ।

ଗଦା : ଯିବାନି ?

ରଙ୍ଗା : ନା, ଯିବାନି···ଏଠୁ ଆମେ ଗଲେ ଯିନା ଡାକ୍ତରବାବୁ ଏ ଦ'ଟାଙ୍କୁ ପରୀକ୍ଷା କରିବେ ! ଏ ଘର ଗୁଡ଼ା ଆମେ ଯିବାନି ।

ଭକ୍ତ : କଣ ଜବରଦସ୍ତ ରହିବ ?

ଗଦା : ହଁ—ହଁ, ଜବରଦସ୍ତ ରହିବୁ ।

ସାଧୁ : ଶୁଣୁଚନ୍ତି କମ୍ପାଉଣ୍ଡର ବାବୁ ସ୍ୱା' କଥା ?

କମ୍ପାଉଣ୍ଡର : ଡାକ୍ତରବାବୁ ହୁକୁମ ଦେଇଗଲେ । ମୁଁ ହୁକୁମ ଶୁଣାଇଦେଲି । ହୁକୁମ କେମିତି ତାମିଲ ହବ ସେ କଥା ତମେ ଜାଣ—ସିଏ ଜାଣନ୍ତି···ମୁଁ ଚୁପ୍ ।

ଭକ୍ତ : ହେଲେ ଆମେ ଚୁପ୍ ରହିପାରିବୁ ନାହିଁ ।

ରଙ୍ଗା : ଚୁପ୍ ରହିବୁ ନାହିଁ, କଣ କରିବୁ ? କଣଟା କରିବୁ ଶୁଣେ !
ଭକ୍ତ : ଭଲରେ କହୁଚ ରଙ୍ଗା ଏଠୁ ଗୁଚିଯା ।
ରଙ୍ଗା : ନ ଗଲେ ?
ଭକ୍ତ : ନଗଲେ···
ରଙ୍ଗା : ହଁ, ନଗଲେ ?
ଭକ୍ତ : ନ ଗଲେ···
ରଙ୍ଗା : ଆରେ କହିଲୁ ତ···ନଗଲେ ?
ଭକ୍ତ : ବାପା, କୁଆଡ଼େ ଗଲ ବାପା ?
ସାଧ : ଅଛୁ ପୁଅ···ଠିକ୍ ଜାଗାରେ ଅଛୁ ।
ରଙ୍ଗା : ତମେ ଠିକ୍ ଜାଗାରେ ଅଛ ତ ବାପା ?
ଗଦା : ହଁ ପୁଅ, ଅଛୁ ।

(ଦେଖାଗଲା ପରସ୍ପରର ସମ୍ମୁଖୀନ ହେବାପାଇଁ ଭକ୍ତ ପଛରେ ସାଧୁ ଓ ରଙ୍ଗା ପଛରେ ଗଦା ପ୍ରସ୍ତୁତ ହୋଇ ରହିଲେଣି । )

କମ୍ପାଉଣ୍ଡର : (ଆଗେଇ ଯାଇ) ଆରେ ଆରେ···ଏ କଣ ! ଆପଣମାନେ ସମସ୍ତେ କଣ ହାତ ଟେକାଟେକ ହୋଇ ତିଆର ହୋଇଗଲଣି । ସତକୁ ସତ କଣ···
ଭକ୍ତ : ଆପଣ ଘୁଞ୍ଚିଯା'ନ୍ତୁ ଆଜ୍ଞା—
ରଙ୍ଗା : ହଁ ଆଜ୍ଞା, ଆପଣ ଘୁଞ୍ଚିଯା'ନ୍ତୁ—ମୁଁ ବୁଝୁଚ ତା' କଥା ।
ଭକ୍ତ : ଜାଣିଚୁ ରଙ୍ଗା, ତୋ' ଦାନ୍ତପାଟି ଉଡ଼େଇଦେବ ।
ରଙ୍ଗା : ତୋ ନାକଦଣ୍ଡା ଚୂନା କରିଦେବ ।
ସାଧୁ : ହେ ବନ୍ତିଆ, ପୁଅ ପଛରେ ଲୁଚଚୁ କ'ଣ ? ହିମ୍ମତ୍ ଅଛୁ ତ ସାମନାକୁ ବାହାରିଆ । ଆଜ ତୋର ଦିନେ କ ମୋର ଦିନେ !
ଗଦା : ତୁ ମତେ ଡରଉଚୁ ସାଧୁଆ ! ଜାଣିଥା, ଛ'ମାସ ଜେଲ୍ ଯିବ ପଛେ ତତେ ଆଜ ଛାଡ଼ିବନାହିଁ ।
ସାଧୁ : ମୁଁ ଫାଶୀଖୁଣ୍ଟରେ ଝୁଲିବ ପଛେ—ତତେ ଆଜ ତିନ ପାଞ୍ଜିରୁ ମୂଳପୋଛ କରିବ ।
ଗଦା : ହଉ, ଆ ବାହାରିପଡ଼ । ଆଜ ତ ଏଇଠି ଦେଖାଦେଖି ହୋଇଯିବା···ମୁହଁ ପୋଛୁଚୁ କଣ ବା ? ବାହାରିପଡ଼ !
ସାଧୁ : ଆରେ ମୁହଁ ପୋଛୁ ହାତ ଚକ୍‌କଣ କରୁଚ, ତୋ ପିଠିରୁ ଛାଲ ଉତାରି ତତେ ମାଟିରେ ମିଶାଇଦେବ ।
ରଙ୍ଗା : ବାପା, ଆସିବଟି ତମେ ଏ ଘର ଭିତରକୁ, ଆସ ।
ଭକ୍ତ : ଏମିତ ଗଲବାଳ !! ଯିବାବାଳ ଆମେ । ଡାକ୍ତରବାବୁ ଆମକୁ ପରୀକ୍ଷା କରିବେ । ଆସିବଟି ବାପା, ଆସ !

ଗଦା }
ରଙ୍ଗା } : ଆମେ ଯିବୁ ।

ସାଧୁ }
ଭକ୍ତ } : ଆମେ ଯିବୁ ।

ସମସ୍ତେ : ଆମେ ଯିବୁ—ଆମେ ଯିବୁ—ଆମେ ଯିବୁ—ଆମେ ଯିବୁ ।

( ଠେଲାପେଲା ହୋଇ ଗୁଣିଜଣଯାକ ଘର ଭିତରକୁ ପଶିଗଲେ । ଘରଭିତରେ କ୍ରମମତେ ଆହୁରି ଜୋର୍‌ରେ ପାଟିତୁଣ୍ଡ ମାର୍‌ଧର ଚାଲିଲା । )

"ବାହାର ଏଘରୁ..."

"ତୁ ବାହାର..."

"ତୁ ବାହାର..."

"'ଦେ' ତା' ବେକଘଣ୍ଟିକୁ ଚିପିଦେ'..."

"ହୁଁ..."

"ମରିଗଲି ଲୋ ବୋଉ !"

"ଦାନ୍ତପାଟି—ହ୍ୱଁ—ଦାନ୍ତପାଟି..."

"ଇରେ ବାପ୍‌ରେ..."

"ହୁଁ...ହୁଁ...ଛାଡ଼ିବ ନାହିଁ..."

"ହୁଁ..."

"ହୁଁ..."

କମ୍ପାଉଣ୍ଡର : ସାର୍—ସାର୍ କାହିଁ ଗଲେ ? ସାର, ଘର ଭିତରେ ଯୁଦ୍ଧ ଆରମ୍ଭ ହୋଇଗଲାଣି । କଣ କରିବ ? (ଭିତରୁ ଉପରୋକ୍ତ କ୍ରମରେ ଶବ୍ଦ ଶୁଣାଯାଉଥାଏ) କଣ କରିବ ?...ହଁ...କବାଟ...କବାଟ ବନ୍ଦ । (କବାଟ ବନ୍ଦ କରିଦେଲେ) କବାଟ ଉପରେ ତାଲା ବନ୍ଦ । ହୁଁ, କରୁଥା ଘର ଭିତରେ ଯୁଦ୍ଧ ।

(କବାଟ ବନ୍ଦ ପରେ ମଧ୍ୟ ଘର ଭିତରେ ମାରଧର ଚାଲିଥାଏ; କିନ୍ତୁ ବାହାରକୁ ଶବ୍ଦ କମ୍ ଶୁଣାଯାଉଥାଏ । ଏତିକିବେଳେ ଡାକ୍ତର ଆସିଲେ ।)

ଡାକ୍ତର : କଣ...କଣ ହୋଇଚି ? ଏତେ ଜୋର୍‌ରେ ପାଟି ହଉଥିଲା କାହିଁକି ? କିଏ ପାଟି କରୁଥିଲା...ଅ,ପଣ ?

କମ୍ପାଉଣ୍ଡର : ମୁଁ କି ପାଟି କରିବ ସାର୍ ? ସେ କ୍ଷମତା ମୋର କାହିଁ ? ଏସବୁ ଘଟଣା ଦେଖି ମୋ ପାଟି ବରଂ ଆପେ ଆପେ ବନ୍ଦହୋଇଯାଉଚି ।

ଡାକ୍ତର : ସେ ଗୁରିଜଣ କୁଆଡ଼େ ଗଲେ ?

କମ୍ପାଉଣ୍ଡର : ଘର ଭିତରେ...

ଡାକ୍ତର : କାହିଁକି ? ମୁଁ ଧରି ଆପଣଙ୍କୁ କହିଗଲି, ଓଷ୍ଟା ବାପ-ପୁଅଙ୍କୁ ସେ ଘରକୁ ନିଅନ୍ତୁ, ମୁଁ ଆସି ପରୀକ୍ଷା କରିବ !

କମ୍ପାଉଣ୍ଡର : ସେଇ କଥା ସାର୍ ! ଆପଣ ପରୀକ୍ଷା କରିବେ ବୋଲି···(ଘରଭିତରୁ ଗୋଳ-
ମାଳ ଶୁଭୁଥାଏ )
ଡାକ୍ତର : ( କାନପାରି ) ଏ କଣ ? ଘରଭିତରୁ କଣ ଗୋଳମାଳ ଶୁଭୁଚି ?
କମ୍ପାଉଣ୍ଡର : ଶୁଭୁଚି···
ଡାକ୍ତର : କଣ ଶୁଭୁଚି ?
କମ୍ପାଉଣ୍ଡର : ପରୀକ୍ଷା ପାଇଁ ପ୍ରିପାରେସନ···ପ୍ରସ୍ତୁତି ।
ଡାକ୍ତର : କମ୍ପାଉଣ୍ଡରବାବୁ !
କମ୍ପାଉଣ୍ଡର : ଆଜ୍ଞା, ଓଟ୍‌ଆ ବନ୍ତିଆ ସୁଣ୍ଡାଙ୍କୁ ସ୍ତିରି ଏକାଠି ହେଲେ ଯାହା ଶୁଭିବାର କଥା-
ସେଇଆ ଶୁଭୁଚି ।
ଡାକ୍ତର : ଏ କବାଟଟା ବନ୍ଦ୍ ହୋଇଚି କାହିଁକି ?
କମ୍ପାଉଣ୍ଡର : ମୁଁ ବନ୍ଦକରିଦେଇଚି ।
ଡାକ୍ତର : କାହିଁକି ?
କମ୍ପାଉଣ୍ଡର : ଘରଭିତରେ ସେମାନେ ଯେମିତି ଆରମ୍ଭ କରିଦେଲେ, ମୁଁ ସାଙ୍ଗେ ସାଙ୍ଗେ
କବାଟ ବନ୍ଦ୍‌କରି ତାଲା ଠୁକିଦେଲି ।
ଡାକ୍ତର : କଣ ଯେ ମୁଁ ଆପଣଙ୍କୁ କହିବି ? ଖୋଲନ୍ତୁ—ତାଲା ଖୋଲନ୍ତୁ ।
କମ୍ପାଉଣ୍ଡର : ମୋ କଥା ଶୁଣନ୍ତୁ ସାର୍ !
ଡାକ୍ତର : ତାଲା ଖୋଲନ୍ତୁ !
କମ୍ପାଉଣ୍ଡର : ମୋ କଥା ମାନନ୍ତୁ ସାର୍ ! କବାଟ ଖୋଲିଦେଲେ ସେମାନେ ଯାହାର ଭୀମ
ଦୁଃଶାସନ ଯୁଦ୍ଧ ପରି ଘରସାରା ଧାଁଧପଡ଼ କରି ଏସବୁ ଔଷଧପତ୍ର, ଆଲମିରା,
ଆପଣଙ୍କ ଏ ଚେୟାର ଟେବୁଲ୍ କିଛି ବାକି ରଖିବେ ନାହିଁ । ସବୁ ମାଟିରେ
ମିଶାଇଦେବେ ।
ଡାକ୍ତର : ଆଗେ ଆପଣଙ୍କୁ ମାଟିରେ ମିଶାଇଦେବା ଉଚିତ । ଘର ଭିତରେ ସ୍ତିରି ସୁଣ୍ଡାଟା
ଲୋକଙ୍କର ମାରପିଟ୍ ଧୁମ୍‌ଧାମ୍ ଶୁଭୁଚି—ଆଉ ଆପଣ ବାହାରୁ ତାଲାଠୁକି
ଦେଇଛନ୍ତି ! ସୁହିଁ ରହିଚନ୍ତି କଣ ? ଖୋଲନ୍ତୁ ।

( ଭିତରୁ ଗୋଳମାଳ ଏକାବେଳକେ ବନ୍ଦ ହୋଇଗଲା )

କମ୍ପାଉଣ୍ଡର : ସାର୍ ! ସାର୍ ! ଭିତରୁ ଆଉ କିଛି ଶୁଭୁନି ।
ଡାକ୍ତର : ହେ ଭଗବାନ···କାହାର ଯେ କଣ ହୋଇଥିବ ?···ଖୋଲନ୍ତୁ ଚଞ୍ଚଳ ।
କମ୍ପାଉଣ୍ଡର : ଖୋଲିଲି ସାର୍—ଖୋଲିଲି ।

( କମ୍ପାଉଣ୍ଡର ତାଲା ଖୋଲିଲେ । ଡାକ୍ତର ଦୁଆରମୁହଁରେ ଠିଆହେଲେ )

ଡାକ୍ତର : ତା'ହେଲେ ବାବୁମାନେ···ଖବର କଣ ?

( ଯନ୍ତ୍ରଣାକ୍ଳିଷ୍ଟ ମୁହଁରେ ଦାନ୍ତପାଟିକୁ ଗୁପିଧରି ଗଦାଧର ଏ ଘରକୁ ବାହାରି ଆସି )
ବସିପଡ଼ିଲେ । )

ଗଦା : ଖବର ଆଉ କିଛି ନାହିଁ ଡାକ୍ତରବାବୁ ! ଅମ କାମ ଶେଷ ହୋଇଯାଇଛି । ଏଥର ଆପଣଙ୍କ କାମ ଆରମ୍ଭ କରିଦିଅନ୍ତୁ ।

ଡାକ୍ତର : ମୋ କାମ ?

ଗଦା : ହଁ ଆଜ୍ଞା, ଆଉ ଡେରି କରନ୍ତୁ ନାହିଁ । ବଢ଼ା ଆରମ୍ଭ ହୋଇଗଲାଣି । ···ଓଃ୍ଵା ପୁଅ କୁଆଡ଼େ ଗଲ ?

ସାଧୁ : ଚମ ପଛେ ପଛେ···

[ ଡାକ୍ତରକୁ ଗୁପିଧରି ସାଧୁ ଆସି ଗଦାଧରଙ୍କ ପାଖରେ ବସିପଡ଼ିଲେ । ମୁହଁ ଆଖିରେ ଯନ୍ତ୍ରଣା । ପରେ ପରେ ଚଲକୁ ମୁହଁ କରି ରଙ୍ଗା ଓ ଭକ୍ତ ଆସିଲେ । ଦୁହିଁଙ୍କ ଡାହାଣ ହାତ ପାପୁଲି ମୁଠା ହୋଇଛି । କେଶବାଣ ବିପର୍ଯ୍ୟସ୍ତ । ]

ଡାକ୍ତର : ହଁ, ଶ୍ରୀଯୁକ୍ତ ବର୍ତ୍ତିଆ, ଆପଣଙ୍କର କଣ ହୋଇଛି ?

ଗଦା : ଦାନ୍ତ ।

ଡାକ୍ତର : ଭାଙ୍ଗିଛି ?

ଗଦା : ଭାଙ୍ଗିଛି ତ, ହେଲେ ପୁରା ଭାଙ୍ଗିଛି କି ଅଧା ଭାଙ୍ଗିଛି ଆପଣ ଦୟାକରି ଟିକେ ଦେଖନ୍ତୁ ।

ଡାକ୍ତର : ଆଉ ଓଃ୍ଵା ମହାଶୟ, ଆପଣଙ୍କର ?

ସାଧୁ : ଠିକ୍ ତାଳୁ ଉପରୁ କେଶ ପୁଳାଏ ଉପୁଡ଼ିଯାଇଛି । ତେବେ କେତେ ଉପୁଡ଼ିଛି— ଚମ କେତେ ଛୁଡ଼ିଛି, ଆପଣ ଦେଖନ୍ତୁ ।

ଡାକ୍ତର : ଆଉ ବାବୁ ରଙ୍ଗାଧର ଆଉ ଭକ୍ତଚରଣ ? ଚମ ଦୁହିଁଙ୍କର···

ଗଦା : ସେମାନେ ତ ଆଜ୍ଞା କର୍ତ୍ତା···ସେମାନଙ୍କର ଜାହିଁକି କଣ ହେବ ?

ଡାକ୍ତର : ଅର୍ଥ···ରଙ୍ଗାଧର ବର୍ତ୍ତିଆ ସାଧୁଚରଣଙ୍କ କେଶ ଉପାଡ଼ିଛନ୍ତି ଆଉ ଭକ୍ତଚରଣ ଓଃ୍ଵା ଗଦାଧର ବର୍ତ୍ତିଆଙ୍କ ଦାନ୍ତ ଭାଙ୍ଗିଛନ୍ତି ?

( ଡାକ୍ତରଙ୍କ ଏ ପ୍ରଶ୍ନରେ କାହାରି ତୁଣ୍ଡରେ କଥା ନାହିଁ । କେବଳ ରଙ୍ଗା ଓ ଭକ୍ତ ମଧ୍ୟରେ ଟିକିଏ ଦୃଷ୍ଟି ବିନିମୟ ହେଲା । )

କଣ ହେଲା···ସମସ୍ତେ କଣ ଚୁପ୍ ?

ଗଦା : ଏଇ କଥାଟାରେ ଆମେ ଟିକିଏ ସନ୍ଦେହରେ ପଡ଼ିଯାଇଛୁ ?

ଡାକ୍ତର : ସନ୍ଦେହ ?

ସାଧୁ : କଥାଟା ବୋଧହୁଏ ଓଲଟପାଲଟ ହୋଇଯାଇଛି ।

ଡାକ୍ତର : ମାନେ ଆପଣଙ୍କ ପୁଅ ଆପଣଙ୍କ କେଶ ଉପାଡ଼ିଛନ୍ତି, ଆଉ ତାଙ୍କ ପୁଅ ତାଙ୍କ ଦାନ୍ତ ଭାଙ୍ଗିଛନ୍ତି ?

ରଙ୍ଗା }
ଭକ୍ତ } : ଅସମ୍ଭବ ନୁହେଁ ।

ଡାକ୍ତର : ଏ କଥା ତମେ କୁହେଁ କହୁଚ ?

ରଙ୍ଗା : କଥା କଣ ସାର୍...ଆମେ ସମସ୍ତେ ଯେମିତ ଠେଲାଠେଲି ହୋଇ ସେ ଘର ଭିତରକୁ ପଶିଯାଇଚୁ, ସାଙ୍ଗେ ସାଙ୍ଗେ ଗୋଲମାଲ ମାରପିଟ୍ ଆରମ୍ଭ ହେଇଗଲା ।

ଭକ୍ତ : ସେଇ ସାଙ୍ଗେ ସାଙ୍ଗେ କମ୍ପାଉଣ୍ଡରବାବୁ ଘର କବାଟ ବନ୍ଦ କରିଦେଲେ । ଘର ଅନ୍ଧାର ହୋଇଗଲା ।

ରଙ୍ଗା : ମାରପିଟ୍ ଚାଲିଥାଏ । ମୁଁ ମାରୁଚ—ସେ ମାରୁଚ—ସେ ମାରୁଚ—ମୁଁ ମାରୁଚ । ହେଲେ ଅନ୍ଧାରରେ କାହା ମାଡ଼ କୁଆଡ଼େ ଯାଇ କାହା ଦେହରେ ବାଜିଲା କିଛି ବୁଝିହେଲାନାହିଁ ।

ଡାକ୍ତର : ବର୍ତ୍ତମାନ ତା'ହେଲେ ବୁଝିପାରୁଚ ଯେ ମାଡ଼ଟା ଓଲଟପାଲଟ ହୋଇଯାଇଚ ।

ରଙ୍ଗା : ମୋ ହାତରେ ଏ ଭଙ୍ଗା ଦାନ୍ତ—ବାପାଙ୍କ ଦାନ୍ତ ପରି ଜଣାପଡ଼ୁଚ । ବାପା ପାନ ଖାଆନ୍ତି ନାହିଁ...ସଫା ଦାନ୍ତ ।

ଭକ୍ତ : ଆଉ ମୋ ହାତରେ ଏ ଉପୁଡ଼ା କେଶ—ଅଧା କଞ୍ଚା ଅଧା ପାଚିଲା ।

ଡାକ୍ତର : ତମ ବାପାଙ୍କ କେଶ ସହିତ ମିଶିଯାଉଚ ?

ଭକ୍ତ : ଆଜ୍ଞା ! (କମ୍ପାଉଣ୍ଡର ଭିତରକୁ ଗଲେ)

ଡାକ୍ତର : (ଗଦା ଓ ସାଧୁକୁ) ଆଉ ଆପଣ କୁହେଁ ।

ଗଦା : ଆମେ କୁହେଁ ଖାଲି ଟଙ୍କା ମିଳେଇଥିଲୁ ! ହାତ ଅମର ପଛାରେ ଅଟକ ପଡ଼ିଗଲା ।

ସାଧୁ : ସେଥିପାଇଁ ମୋ କେଶ ଉପୁଡ଼ିଗଲା...ମୁଁ କିଛି କହିପାରିଲି ନାହିଁ ।

ଗଦା : ମୋ ଦାନ୍ତ ଭାଙ୍ଗିଗଲା...ମୁଁ ହାତ ଉଠେଇପାରିଲିନାହିଁ ।

ଡାକ୍ତର : ଭଲ ଗାଁରେ ତେବେ ମାରପିଟ୍ କିଛି ହେଇନଥିଲା !

ସାଧୁ : ନାହିଁ ଆଜ୍ଞା...ଖାଲି ଯାହା ପାଟିତୁଣ୍ଡ ହେଇଥିଲା—ଏଠି ସବୁ ଫଏସଲା ହୋଇଗଲା ।

ଡାକ୍ତର : ହୁଁ...କମ୍ପାଉଣ୍ଡରବାବୁ ! (କମ୍ପାଉଣ୍ଡର ଆସିଲେ ।)

କମ୍ପାଉଣ୍ଡର : ଆମ କାମ ଆରମ୍ଭ କରିବା ସାର୍ !

ଡାକ୍ତର : ହଁ, କାଗଜପତ୍ର ଆଣନ୍ତୁ ।

ଗଦା : କାଗଜପତ୍ର !

ଡାକ୍ତର : ମୁଁ ରିପୋର୍ଟ ଲେଖିବି । ଆପଣମାନେ ସାର୍ଟିଫିକେଟ ନେବେ—ଥାନାରେ ଏତଲା ଦେବେ । ଏବେ ତ ସାର୍ଟିଫିକେଟ୍ ଦବାର କିଛି ଅସୁବିଧା ନାହିଁ । ଆଖି ଆଗରେ ଦେଖୁଚ କେଶ ଉପୁଡ଼ିଚ—ଦାନ୍ତ ଭାଙ୍ଗିଚ ।

ଗଦା : ହେଲେ ଆଜ୍ଞା...ଏତଲା...କିଏ କାହା ନାଁରେ ଦେବ ?...ଓହୋ, ତମେ କଣ ତମ ପୁଅ ନାଁରେ ଏତଲା ଦେବ ?

ସାଧୁ : ଆଉ ତମେ ? ତମେ କାହା ନାରେ ଏଡଲ୍ ଦେବ ?

ଗଦା : ଶୁଣିଲେ ତ ଆଜ୍ଞା ! ରେପୋର୍ଟ ଥାଉ । ଆଗେ ଔଷଧପତ୍ର ଦେଇ ଆମକୁ ଭଲକରନ୍ତୁ ।

ଡାକ୍ତର : ଔଷଧ ତ ମୁଁ ଦେବି—ହେଲେ ଥାନାକୁ ଯାଇ ମୁଁ ଆପଣମାନଙ୍କ ନାଁରେ ଏଡଲ୍ ଦେବ । ଏଠି ଡାକ୍ତରଖାନାକୁ ଆସି ଆପଣମାନେ କ କାଣ୍ଡ କରିଚନ୍ତି···

ଗଦା : ଆପଣ ଆଜ୍ଞା ଆଉ ଥାନାକୁ କାହିଁକି ଯିବେ—ଏଡଲ୍ ଦବାର କଥା ତ ଆମେ ଏଇଠି ଆପଣଙ୍କ ପାଖରେ ଏଡଲ୍ ଦଉଚୁ ।

ସାଧୁ : ହଁ ଆଜ୍ଞା, ଆପଣ ଡାକ୍ତର—ଆପଣ ଥାନାବାବୁ—ଆପଣ ଜଜ୍—ଆପଣ ଯାହା ରାୟ ଦେବେ ଆମର ସଇ ।

କମ୍ପାଉଣ୍ଡର : ସାର୍ !

ଡାକ୍ତର : କଣ କହୁଚନ୍ତି ?

କମ୍ପାଉଣ୍ଡର : ମୁଁ ନୁହେଁ ସାର୍—ଏମାନେ ଯାହା କହୁଚନ୍ତି !

ଡାକ୍ତର : ଏମାନେ ବୋଇଲେ···ମୋ ପୁଅ ନା ଆପଣଙ୍କ ପୁଅ ?

( ଏ କଥାରେ ସମସ୍ତେ ହସିଉଠିଲେ । କିନ୍ତୁ ହସିଲାବେଳେ ଗଦା ଓ ସାଧୁଙ୍କ ମୁହଁ ବିକୃତ ହୋଇଯାଉଥାଏ । )

ସାଧୁ : ଦେଖୁଚନ୍ତି ତ ଆଜ୍ଞା ! ବନ୍ଧା ଛୁଟିକା ରୂଳିଚ ବୋଲି···

ଗଦା : ଏତେ ବଡ଼ ହସ କଥାଟାରେ ଆମେ ଦୁହେଁ ମନଖୋଲା ହସ ହସିପାରୁନୁ ।

ଡାକ୍ତର : (ହସି) ହଉ ଚାଲନ୍ତୁ—ଦୁହେଁ ଯାଇ ସେ ଘରେ ଟେବୁଲ ଉପରେ ଶୁଅନ୍ତୁ ।··· କମ୍ପାଉଣ୍ଡରବାବୁ !

କମ୍ପାଉଣ୍ଡର : କରିଚ ସାର୍—ଛୁଞ୍ଚ, କଇଞ୍ଚି, ଫରସେପ୍, ତୁଳା, ବ୍ୟାଣ୍ଡେଜ୍ ସବୁ ରେଡ଼ି କରି ରଖିଚ ।

ଡାକ୍ତର : ଆସନ୍ତୁ : (ସମସ୍ତେ ଭିତର ଘରକୁ ଗଲେ)

□□□

# ବେଣୀବନ୍ଧନୀ

**ଚରିତ୍ର**

ଗୋଲକ — ଏକ ଅଫିସ୍‌ର ହେଡ୍‌ ଟାଇପିଷ୍ଟ,
ବୟସ ଛବିଶ-ସତେଇଶ ।

ମଧୁସୂଦନ — ସେଇ ଅଫିସ୍‌ର ଦ୍ୱିତୀୟ ଟାଇପିଷ୍ଟ,
ବୟସ ପ୍ରାୟ ତେଇଶ-ଚବିଶ ।

ଶଙ୍କର : ଅଫିସ୍‌ ବୟ, ବୟସ ଅଠର-ଉଣେଇଶି ।

କନକ : ଗୋଲକର ନବବିବାହିତା ସ୍ତ୍ରୀ ।

ରେଖା : କଲେଜ୍‌ ଷ୍ଟୁଡ଼ି ।

ସନ୍ଧ୍ୟା : ଅବିବାହିତା ତରୁଣୀ ଟାଇପିଷ୍ଟ ।

[ କଟକ ସହର । ଗୋଲକଙ୍କ ଶୟନକକ୍ଷ । ରାତି ପ୍ରାୟ ଦ୍ୱିତୀୟ ପ୍ରହର । ଗୋଲକଙ୍କ ବୟସ ଅନୁପାତରେ ତାଙ୍କର ବୈଷୟିକ ବସ୍ତ୍ରବୃଦ୍ଧି ନିଶ୍ଚିତ ଭାବେ ଅଧିକ । ···ରାତି ଭୋଜନ ପରେ ଗୋଲକ ବସିଚନ୍ତି—ହାତରେ ପାନଡବା ଆଣି କନକ ତାଙ୍କ ନିକଟକୁ ଆସିଲା । ]

କନକ : ( ଡବା ଖୋଲି ) ପାନ ନିଅ ।

ଗୋଲକ : ରାତିରେ ଖାଇସାରି ଆଉ ପାନ ଖାଇବା ନାହିଁ ଭାବୁଚ । ଏ ପାନ ଖଣ୍ଡିକ ବୃଥା ଖର୍ଚ୍ଚ ।

କନକ : ଆଜି ଦିନକ ଖାଇଥାଅ ।

ଗୋଲକ : ଖାଉଚ; କିନ୍ତୁ କାଲିଠୁ ବନ୍ଦ୍ ।

[ ଗୋଲକ ଖଣ୍ଡେ ପାନ ନେଲେ, କନକ ଡବା ନେଇ ଟେବୁଲ ଉପରେ ରଖିବାକୁ ଗଲା । ]

ଗୋଲକ : ଆଚ୍ଛା, କନକ···

କନକ : ଆଜ୍ଞା ।

[ କନକ ପାଖକୁ ଆସିଲା । ଗୋଲକ ସ୍ଥିର ଦୃଷ୍ଟିରେ କିଛି କ୍ଷଣ କନକକୁ ଚାହିଁଲେ । ]

ଗୋଲକ : ଆମର ବିବାହ ହେବାର କେତେ ଦିନ ହେଲା ?

କନକ : ଏଇ ପ୍ରାୟ ସାତ ମାସ ।

ଗୋଲକ : ଦିନଦିନ ହେଲା ତମେ ଗାଁ ଛାଡ଼ି କଟକ ଆସିଚ ।

କନକ : ହଁ (ଟିକିଏ ରହି) କାହିଁକି ଏକଥା ପଚାରୁଚ ଯେ !

ଗୋଲକ : ପଚାରିଲି ତ ଏ-ମି-ତି ଟେବେବ ମୁଁ ତମକୁ ଡାକିଲେ ତମେ 'ଆଜ୍ଞା' କାହିଁକି କହୁଚ ?

**କନକ :** ଗୁରୁଜନମାନଙ୍କ ତ ଆଜ୍ଞା କୁହନ୍ତି ।

**ଗୋଲକ :** ଗୁରୁଜନ ! ତୁମ ମତରେ ସ୍ୱାମୀ ହେଉଛି ଗୁରୁଜନ—ଆଉ ସ୍ତ୍ରୀ ହେଉଛି···

**କନକ :** ପରଜନ ।

**ଗୋଲକ :** ବାଃ ! ତମର ତ ଶବ୍ଦଜ୍ଞାନ ବେଶ୍ ଅଛି ଦେଖୁଛି ! କିନ୍ତୁ ଜାଣ କନକ, ସ୍ୱାମୀ-ସ୍ତ୍ରୀ ମଧ୍ୟରେ ଏଇ ଗୁରୁଜନ-ପରଜନ ବେଭାରଟା ପ୍ରାୟ ଅଚଳ ହୋଇ ଆସିଲାଣି ।

**କନକ :** କାହିଁକି ?

**ଗୋଲକ :** 'ପତି ଦେବତା'—'ପତି ପରମ ଗୁରୁ' ପ୍ରଭୃତି ଆଖ୍ୟା ଆମ ଦେଶରେ ବହୁ କାଳରୁ ଚଳିଆସୁଥିଲା—

**କନକ :** ହଁ, ରାମାୟଣରେ ସୀତା ଦେବୀ ପରା କହିଛନ୍ତି—

"ପତି ଦେବତା ମୋ ରଘୁବୀର ରାମଚନ୍ଦ୍ର
ସୂର୍ଯ୍ୟବଂଶ-ଅବତଂସ ଅଯୋଧ୍ୟା ନରେନ୍ଦ୍ର ।"

**ଗୋଲକ :** ଶାସ୍ତ୍ର-ପୁରାଣ ଯେ ମୁହେଁ ମୁହେଁ !!···କିନ୍ତୁ ଏ ଯୁଗରେ କେହି କେହି କହନ୍ତି—ସ୍ୱାମୀ ହେଉଛି ସଂସାର କ୍ଷେତ୍ରରେ ସ୍ତ୍ରୀର ସହଯୋଗୀ କର୍ମୀ—କେହି କହନ୍ତି ବନ୍ଧୁ—କେହି କୁଆଡ଼େ କହେ—ସାଥୀ !

**କନକ :** ଏଇ ଯେମିତି କବିତା ବହିରେ ଲେଖାଅଛି—"ସାର୍ଥକ ହେଲ ସାଥୀ ଗୋ···"

**ଗୋଲକ :** ଆଧୁନିକ କବିତାରେ ବି ପ୍ରବେଶ ଅଛି ! କେଉଁଠୁ ପାଇଲ ଏ କବିତା ?

**କନକ :** ମନେନାହିଁ; କେବେ କେଉଁଠି ପଢ଼ିଥିଲି ।

**ଗୋଲକ :** ହଁ—ମୁଁ କିନ୍ତୁ କହୁଛି, ଆମେ ଏଇ ନୂଆ ପୁରୁଣା ଦୁଇଟା ଭିତରେ ଗୋଟିଏ ସାଲିସ କରି ନେବା । ତମର ମୋ'ଠାରେ ଭକ୍ତିଭାବ ରହିବ, ରହୁ ମୋର ଆପତ୍ତି ନାହିଁ । କିନ୍ତୁ ଆଜ୍ଞା, ଆପଣ, ଅବଧାନଦ୍ୱାରା ଦାସୀ ମନୋଭାବକୁ ନ ବଢ଼ାଇ ସଂସାରକ୍ଷେତ୍ରରେ ତୁମେ ମୋ' ସହିତ କାନ୍ଧକୁ କାନ୍ଧ ମିଳାଇ ଠିଆହେବ ···ବୁଝିଲ ?

**କନକ :** ଏଇ କାନ୍ଧରେ କାନ୍ଧ ମିଳାଇବା କଥା ନା ?

**ଗୋଲକ :** ହଁ—ବୁଝିଲ ତ ?

**କନକ :** ବୁଝିଲି ।

**ଗୋଲକ :** ଆଚ୍ଛା କନକ, ତମେ ତମ ଗାଁ ମାଇନର ସ୍କୁଲରୁ ମାଇନର ପାଶ୍ କରିଛ ପରା ?

**କନକ :** (ମଥା ଦୋଲାଇ ସ୍ୱୀକୃତି ଜଣାଇଲା ।)

ଗୋଲକ : ପାଶ୍ କରି ଆଉ କିଛୁ ପଢ଼ାପଢ଼ି କରୁଥିଲ ?

କନକ : ହଁ ଗ୍ରମାୟଣ, ମହାଭାରତ—ଆଉ ଅନେକ ବହି ।

ଗୋଲକ : କି ବହି ?

କନକ : କେତେ ଗଳ୍ପ, ଉପନ୍ୟାସ, କବିତା ବହି···ଭାଇ ଆଣିଦିଅନ୍ତି ।

ଗୋଲକ : ମେଜ ଉପରୁ ସେ ଇଂରାଜୀ ବହିତକ ଆଣ । ଏଣିକି ଏହି ବହି ପଢ଼ିବ ।

(କନକ କେତେ ଖଣ୍ଡି ବହି ଆଣିଲା)

କନକ : ଏ ଗୁଡ଼ାକ ତ ସ୍କୁଲ ପଢ଼ାବହି ।

ଗୋଲକ : ଜାଣେ ।

କନକ : ସ୍କୁଲ ବହି କାହିଁକି ପଢ଼ିବ ?

ଗୋଲକ : ଖୁବ୍ ଗୁଡ଼ାଏ ତେଲ ଖର୍ଚ୍ଚ କରି ମୁଣ୍ଡରେ ଯେ ଗୁଡ଼ାଏ ବାଳ ବଢ଼ାଇଛ, ଜୀବନରେ ତା' ଯେପରି ତମର କୌଣସି କାମରେ ଲାଗିବନାହିଁ, ଏ ଗଳ୍ପ, ଉପନ୍ୟାସ ମଧ୍ୟ ଠିକ୍ ସେଇପରି ତମ ପକ୍ଷରେ ବେଦରକାରୀ ହୋଇ ଉଠିବ । ସୌନ୍ଦର୍ଯ୍ୟ ବଢ଼ାଇବାକୁ ଚାହଁ—ଦେହ ଖଟାଇ ପରିଶ୍ରମ କର । ଦେହସୌନ୍ଦର୍ଯ୍ୟ ବଢ଼ିବା ସଙ୍ଗେ ସଙ୍ଗେ ଗୃହସ୍ଥାଳିର କାମ ମଧ୍ୟ ହୋଇଯିବ । ବହି ପଢ଼ିବାକୁ ଚାହଁ ପଢ଼ାବହି ପଢ଼—ଜ୍ଞାନ ଅର୍ଜନ ସଙ୍ଗେ ସଙ୍ଗେ ଭବିଷ୍ୟତରେ ଜୀବିକାର୍ଜନ ମଧ୍ୟ କରି ପାରିବ । (କନକ ଅସହିଷ୍ଣୁ ହୋଇଉଠୁଥାଏ)

କନକ : ଭାରି ଗରମ ହେଉଚି ଆଜି ।

ଗୋଲକ : ପଦାକୁ ଉଠିଆସ ।

(ଦୁହେଁ ସେଇ କୋଠରି ସଂଲଗ୍ନ ବାରଣ୍ଡାକୁ ଉଠିଆସିଲେ)

ବୁଝିଲ କନକ, ତମେ ଜଣେ ଟାଇପିଷ୍ଟର ସ୍ତ୍ରୀ···

କନକ : କି ସୁନ୍ଦର ପବନ ବହୁଚି—ଜହ୍ନ ବି ତ ପଡ଼ୁଚି ।

ଗୋଲକ : ଜହ୍ନ ପଛଆଡ଼୍ ଖଣ୍ଡେ କଳାମେଘ ଉଠିଆସୁଚି ।

କନକ : ଠିକ୍ ଏମିତିକା ଗୋଟିଏ ଦୃଶ୍ୟର ଖଣ୍ଡେ ଛବି ଭାଇ ଆଙ୍କିଥିଲେ—ଭାରି ସୁନ୍ଦର ।

ଗୋଲକ : କେତେ ଟଙ୍କାରୁ ବିକିଲେ ?

କନକ : ମା'ଲୋ ! ବିକିବେ କାହିଁକି ? ଛବିଟା ଆମ ଘରେ ଅଛି । କହିବି ତ ଭାଇଙ୍କୁ ଲେଖିବି—ପଠାଇଦେବେ ।

ଗୋଲକ : ହୁହୁ ହୁହୁଁ ସାରା ଆକାଶଟା କଳାମେଘ ଘୋଟିଦେଲାଣି ।

କନକ : ଥଣ୍ଡା ପବନ ହେଉଛି—ବର୍ଷା ହେବ ବୋଧହୁଏ ।

ଗୋଲକ : ଏଇ ତ...ବର୍ଷିଲା ।

କନକ : ପହିଲି ବର୍ଷା—କି ସୁନ୍ଦର ମାଟିର ବାସ୍ନା !

ଗୋଲକ : ଖୁବ୍ ଜୋର୍‌ରେ ବର୍ଷିଲା—ଶୁଭ ଲକ୍ଷଣ ।

କନକ : କବି କହିଛନ୍ତି ପରା—ଧରଣୀକୁ ବର୍ଷା ଆସେ ନାହିଁ—ଅମୃତ ଆସେ ।

ଗୋଲକ : ଆମ ଅଗଣାରେ ସେ ଅମୃତଭଣ୍ଡା ଗଛଟା ପାଣି ବିନା ମରି ମରି ଯାଉଥିଲା—ଏଥର ବଞ୍ଚିଯିବ ।

କନକ : ସତେ, ପହିଲି ଆଷାଢ଼ର ବର୍ଷା !! ଏଇବର୍ଷା ଦେଖି ପୃଥିବୀ ହସେ—ମୟୂର ନାଚେ ।...ଏଇମିତି ବର୍ଷାଦିନେ ପରା କାଳିଦାସ ତାଙ୍କ ମେଘଦୂତ କାବ୍ୟ କୁଆଡ଼େ ରଚନା କରିଥିଲେ । କିଏ ଜଣେ ତ କାଳିଦାସଙ୍କ କଥା ଓଡ଼ିଆ କବିତାରେ ଲେଖିଥିଲେ—

"ଆଷାଢ଼ର ମେଘମେଦୁର ଆକାଶେ ନୟନ ଥାପି,
ବରଷା ବଧୂର..."

ଉଁ ! ମନେପଡ଼ୁନି । ତୁମେ ଜାଣିନ...ଶୁଣୁଛ ?

ଗୋଲକ : କଣ ?

କନକ : ତୁମେ ଜାଣିନ ?

ଗୋଲକ : କଣ ?

କନକ : କାଳିଦାସଙ୍କ କଥା ।

ଗୋଲକ : କାଳିଦାସ !!

କନକ : (ରହି ରହି) କ'ଣ ଭାବୁଥିଲ ତୁମେ ?

ଗୋଲକ : ମୁଁ ଭାବୁଥିଲି ଆମ ଗାଁ କାଳି ସାମଲ କଥା । ପାଞ୍ଚମାଣିଆକୁ ଏଥର ସେ ଭାଗରେ ନେଇଛି । ଆଜି ଯାହା ପାଣି ବର୍ଷିଲାଣି—ବିଲରେ ଲଙ୍ଗଳ ଭଲ ଚାଲିବ—ଏଥର ବୁଣାବୁଣି କାମ ଆରମ୍ଭ କରିବା କଥା ।

କନକ : ରାତି ବେଶି ହେଲାଣି—ଆସ ଶୋଇବ ।

ଗୋଲକ : ନା କନକ, ତୁମେ ଶୁଅ । ମୁଁ କାଳି ସାମଲ ପାଖକୁ ଖଣ୍ଡେ ଚିଠି ଲେଖିସାରି ଶୋଇବ ।

[ କିଛୁଦିନ ପରର ଘଟଣା । ଏକ କମ୍ପାନୀ କାର୍ଯ୍ୟାଳୟର ଏକ କୋଠରି । କୋଠରିଟି ହେଉଛି କାର୍ଯ୍ୟାଳୟ ଟାଇପ୍ ବିଭାଗ । ସମୟ—ସକାଳ ଦଶଟା ବାଜି-ଯାଇଛି । ମଧୁସୂଦନ ନିବିଷ୍ଟ ମନରେ ବସି ଟାଇପ୍ କରି ଚାଲିଛି । ଶଙ୍କର ଦ୍ୱାର-ମୁହଁରେ ଠିଆ ହୋଇଛି । ଦୃଷ୍ଟି ତାହାର ବାହାରକୁ । ]

ଶଙ୍କର : (ବେଶ୍ ମିଠାଗଳାରେ) ମଧୁବାବୁ !

ମଧୁ : (ମୁହଁ ନ ଉଠାଇ) ଗୋଳମାଳ କରନା ।

ଶଙ୍କର : ମୁଁ ସାର୍ କାହିଁକି ଗୋଳମାଳ କରିବ ? ଗୋଳମାଳ କଲା ଲୋକ ଆସୁଚନ୍ତି ।

ମଧୁ : ଆସନ୍ତୁ ।

( କିଛୁକ୍ଷଣ ନୀରବତା । ମଧୁ କିନ୍ତୁ ଟାଇପ୍ କରିଚାଲିଛି । )

ମଧୁ : ରହିଗଲୁ କାହିଁକି ?

ଶଙ୍କର : ମୁଁ ରହିନାହିଁ, ଫାଟକ ପାଖରେ ସେ ରହିଗଲେ ।

ମଧୁ : ଓ...

ଶଙ୍କର : ମୁଁ ଏଠି ଆସି ଚାକିରି କଲାଦିନୁ ଗୋଟାଏ ଛୋକିରୀଆ ଏ ଆଡ଼କୁ ମୁହାଁଇବାର ଦେଖିନି...ଆଜି ଏ ଅପୂର୍ବ କୁଆଡ଼େ ?

ମଧୁ : ( ମନକୁମନ) ପେପରଓ୍ୱେଟ୍‌ଟା କ'ଣ ହେଲା ?

(ପେପର୍‌ଓ୍ୱେଟ୍ କାଗଜଉପରେ ଥୁଆଦେଲା ।)

ଶଙ୍କର : ଗେଟ୍ ପାଖରେ ଠିଆହୋଇ ବାଁ ହାତ କାଣି ଆଙ୍ଗୁଠିରେ କାନ କୁଣ୍ଡାଉଛନ୍ତି ।

ମଧୁ : (ନିଜ କାନ କୁଣ୍ଡାଇ) ଅଡ଼ ଅବେଳରେ ବି କାନଟା କୁଣ୍ଡାଇ ହୁଏ ।

( ପୁଣି ଟାଇପ୍ ଚାଲିଲା)

ଶଙ୍କର : ଚଟ୍—ପଟ୍...ଚଟ୍—ପଟ୍...ଚଟ୍ ପଟ୍...

ମଧୁ : କଣ—କଣ—କଣ ?

ଶଙ୍କର : ଚଟି ।

ମଧୁ : (ଟିକିଏ ରହି) ତୁ ଛୋକିରୀଆ କଥା କଣ କହୁଥିଲୁ ପରା ?

ଶଙ୍କର : (ହସି) ଆପଣ କଣ କିଛୁ ବୁଝି ପାରୁନାହାନ୍ତି ମଧୁବାବୁ ?

ମଧୁ : ଉଁ, କଣ କହିଲୁ ?

ଶଙ୍କର : କିଛୁ ବୁଝିପାରୁନାହାନ୍ତି ?

ମଧୁ : ଦରକାର ନାହିଁ କିଛି ବୁଝିବା । (କାର୍ଯ୍ୟରେ ଟିକିଏ ମନ ଦେଇ) ମୁଁ କ୍ରିକେଟ୍ ଖେଳ କିଛି ବୁଝେନା । କିନ୍ତୁ (ପୁଣି ଟିକିଏ କାର୍ଯ୍ୟରେ ମନଦେଇ) କିନ୍ତୁ ରେଡ଼ିଓରେ କ୍ରିକେଟ୍ କମେଣ୍ଟ୍ରି ଶୁଣିବାକୁ ମତେ ଖୁବ ଭଲଲାଗେ । ତୁ ତୋ' କମେଣ୍ଟ୍ରି ଚାଲୁରଖ । ତୋ କଥା ସାଙ୍ଗରେ ତାଳ ପକେଇ ମୁଁ ମୋ କାମ କରି ଚାଲିଥିବି ।

ଶଙ୍କର : ଇସ୍ !

ମଧୁ : କଣ ଚୌକା ନା ଛକା ମାଡ଼ ?

ଶଙ୍କର : ନାହିଁ ସାର୍ ମାଡ଼ ନୁହେ—ଶାଢ଼ିର ପାଢ଼୍ । ଶାଢ଼ିର ଦେହ ସାଙ୍ଗକୁ ପାଢ଼୍ଟା ଠିକ୍ ଖାପ୍ ଖାଉଚ... ( ଶଙ୍କର ଏକଦୃଷ୍ଟିରେ ବାହାରକୁ ଚାହିଁଚ)

ମଧୁ : ଓ ! ଫେରିବାଲା । ଶାଢ଼ି ବିକିବାକୁ ଆସିଚ । କାହିଁ ଡାକ ଶୁଭୁନାହିଁ ତ ? (ଟିକିଏ ପରେ) ମୋ କଥା ତୋତେ ଶୁଭୁ ନାହିଁକି ? ହେ ଶଙ୍କର !

ଶଙ୍କର : (ଚମକି) କଣ କହୁଲେ ? ଫେରିବାଲାଠୁ ଏ ଶାଢ଼ି କିଣା ହୋଇଥିବ ! ନାହିଁ ସାର୍, ଫେରିବାଲା ତ ଖାଲି ଉପର ଚକ୍ ଭିତର ଫାଙ୍କ୍ ଶାଢ଼ି ବିକିବ । ମାଧାସିଧା ଉପରେ ଏ ସୁନ୍ଦର ଶାଢ଼ି...ଦେହକୁ ପୁଣି ଏଡ଼େ ସୁନ୍ଦର ମାନିଚ...

ମଧୁ : (କାମ ବନ୍ଦ୍ କରି) କଣ...କଣ...କଣ କହୁଲୁ ? ଶାଢ଼ି...ଦେହକୁ ମାନିଚ ?

ଶଙ୍କର : ଆପଣ ଆଖି ଦେଖୁନାହାନ୍ତି...ଏଇ ଆସୁଚନ୍ତି...ଝୁମ୍ ଝୁମ୍—ଝୁମ୍ ଝୁମ୍ ।

ମଧୁ : ( ଢେଁକ ଢୋକି ) କଣ ?

ଶଙ୍କର : ହାତରେ ରେଶମୀ ଚୂଡ଼ି ।

ମଧୁ : ଚୂଡ଼ି...

ଶଙ୍କର : ଏଇ...ଆସୁଚନ୍ତି ।

ମଧୁ : ଶଙ୍କର, ତୁ ଏଠିକି ମୋ' ପାଖକୁ ଆ ।

ଶଙ୍କର : କାହିଁକି ମଧୁବାବୁ ! ମୋ ଡ୍ୟୁଟି ତ ଏଇଠି—ଏଇ ଦୁଆରମୁହଁରେ—ଷ୍ଟୁଲ୍ ପକେଇ ବସିବି । ଏଇ ଆସିଲେ ।

ମଧୁ : ଶୁଣ ଶଙ୍କର, ମୁଁ ଯିବୁବେଳେ ତୋତେ ମୋ ସାନଭାଇ ପରି ଜ୍ଞାନ କରିଥାଏ । ମାନିବୁ ନାହିଁ ମୋ କଥା ! ଭାଇଟା ପରି—ଆ' ଏଠିକି ।

ଶଙ୍କର : ( ଈଷତ୍ କମ୍ପ ସ୍ୱରରେ ) ଆସିଲେ—ଆସିଲେ—ଆସିଲେ ।

( କହୁ କହୁ କକେ ଲଜେଇଯାଇ ମଧୁ ପାଖରେ ଯାଇ ଠିଆହେଲା । ଟିକିଏ ପରେ ସନ୍ଧ୍ୟା ଆସି ଦୁଆରମୁହଁରେ ଠିଆହେଲା । ବେଶଭୂଷା ବେଶ୍ ରୁଚିସମ୍ପନ୍ନ—କିନ୍ତୁ ଆଡ଼ମ୍ବରଶୂନ୍ୟ । କଥାବାର୍ତ୍ତା ଚାଲିଚଳନ ଅତ୍ୟନ୍ତ ଭଦ୍ର, ସ୍ୱଚ୍ଛନ୍ଦ ଓ ସପ୍ରତିଭ ।)

ସନ୍ଧ୍ୟା : ନମସ୍କାର ।

( ମଧୁର ସଙ୍କୋଚର ସୀମା ନାହିଁ । ସେ ସନ୍ଧ୍ୟାକୁ ଚାହିଁବା ସଙ୍ଗେ ସଙ୍ଗେ ମୁହଁ ତଳକୁ କରି ନୀରବ ନମସ୍କାର ଜଣାଇଲା ।

ସନ୍ଧ୍ୟା : ଏଇଟା ନିଶ୍ଚୟ ଆପଣଙ୍କର ଟାଇପ ସେକ୍‌ସନ୍ ? ( ମଧୁ ଶଙ୍କର ମୁହଁକୁ ଚାହିଁଲା )

ଶଙ୍କର : ହଁ ହଁ ।

ସନ୍ଧ୍ୟା : (ମଧୁକୁ) ଆପଣ···

ମଧୁ : (ଶଙ୍କରକୁ କହୁଣୀରେ ଇଙ୍ଗିତ ଦେଇ ନମ୍ର ସ୍ୱରରେ) କହିଦେ କହିଦେ—

ଶଙ୍କର : ବାବୁ ହରିଚନ୍ଦ୍ର ମଧୁବାବୁ—ଟାଇପିଷ୍ଟ ।

ସନ୍ଧ୍ୟା : କ୍ଷମା କରିବେ—ଆପଣ କଣ ହେଡ୍···

ମଧୁ : ( ଠିଆହୋଇଯାଇ ) ନାହିଁ—ନାହିଁ—ମୁଁ ହେଡ୍ ନୁହେଁ—ହେଡ୍ ଟାଇପିଷ୍ଟ ଅଛନ୍ତି ।

ସନ୍ଧ୍ୟା : କାହାନ୍ତି ? ଅଫିସ୍ ଆସିଲେଣି ?

ଶଙ୍କର : ଏଇ ବର୍ତ୍ତମାନ ଆସି ପହଞ୍ଚିବେ ।

ସନ୍ଧ୍ୟା : ଓ ! ( ପ୍ରାୟ ମନକୁମନ) ମୋର ତାଙ୍କ ସହିତ ଟିକିଏ କାମ ଥିଲା···

ମଧୁ : ( ଶଙ୍କରକୁ ନମ୍ର ସ୍ୱରରେ ) କହିଦେ, ଏ ସେକ୍‌ସନ୍‌ରେ ଆଉ କେହି ଲେଡ଼ି—ମାନେ ସ୍ତ୍ରୀ ଲୋକ ନାହାନ୍ତି···କହିଦେ ।

( ସନ୍ଧ୍ୟା ଏଥିରେ ଆମୋଦ ଅନୁଭବ କରୁଥାଏ )

ସନ୍ଧ୍ୟା : (ହସି) ମୁଁ ଶୁଣିଲିଣି—କିନ୍ତୁ ମୁଁ କରିବ କଣ ? ବଡ଼ବାବୁ ଆସିବାଯାଏ ମତେ ଅପେକ୍ଷା କରିବାକୁ ହବ ।

( ମଧୁର ସଂକୋଚ କଟିନାହିଁ ସତ—କିନ୍ତୁ ସନ୍ଧ୍ୟାର କଥାବାର୍ତ୍ତାରେ ସେ ମୁଗ୍‌ଧ । )

ମଧୁ : (କୃତକୃତ୍ୟ ହେଲାଭଳି) ଅପେକ୍ଷା କରିବେ ! ହଉ, ଆପଣ ବସନ୍ତୁ—ଏଇ ଚୌକିଟାରେ ବସନ୍ତୁ । (ଶଙ୍କରକୁ) ଆ' ଶଙ୍କର—ମୋ ସଙ୍ଗରେ ଆ ।

ସନ୍ଧ୍ୟା : କିନ୍ତୁ ଆପଣମାନେ ଯାଉଛନ୍ତି କୁଆଡ଼େ ? ଏଇଟା ନିଶ୍ଚୟ ଆପଣଙ୍କର ଟେବୁଲ—ଆଉ ଏ ଟାଇପ ମେସିନ୍—

ମଧୁ : ହଁ ଯେ···କିନ୍ତୁ ମୋର କହିବାର କଥା—ମାନେ···ମାନେ(କହି ପାରୁ ନଥାଏ)

ସନ୍ଧ୍ୟା : କହନ୍ତୁ କଣ ହୋଇଛି ?

ମଧୁ : ନାଁ—ମୁଁ କହୁଥିଲି—ଆପଣ ବସନ୍ତୁ । ବଡ଼ବାବୁ ଆସିବା ଯାଏ ଆମେ ସେପଟେ ବସିବୁ ।

ସନ୍ଧ୍ୟା : ବୁଝିଲି । ମୁଁ ଏ ଘରେ ବସିବ ବୋଲି ଆପଣଙ୍କର ଏଠି ରହିବା ଉଚିତ ହବନାହିଁ, ଏଇଆ ତ ? ( ମୁଗ୍ଧହୋଇ ) ବହୁତ ବହୁତ ଧନ୍ୟବାଦ । ସିଭାଲରି (Chivalry) କଥାଟା କ୍ରମେ ତା'ର ଦଣ୍ଡ ହରାଇବସୁଚି ବୋଲି ଅନେକେ କହୁଚନ୍ତି । କିନ୍ତୁ ନା, ତା' ନୁହେଁ । ସିଭାଲରି ଅଛି—ଅଛି ।···ମାତ୍ର ଆପଣ ଏଠିକାର କର୍ମଗୃହ-- କାମ ଛାଡ଼ି ଆପଣ ଯିବେ କୁଆଡ଼େ ? ଆପଣ କାମ କରନ୍ତୁ, ମୁଁ ଏଇ ଅ.ଉଟ ବାରନ୍ଦାରେ ସେ ବେଞ୍ଚ୍ ଉପରେ ବସିବ ।

( ଚାଲିଗଲା । ଏ ଦୁହେଁ ପରସ୍ପରକୁ କିଛିକ୍ଷଣ ଚାହିଁରହିଲେ । )

ଶଙ୍କର : ଆପଣ ସାର୍ ଏମିତି କାହିଁକ ହେଲେ ? ଅପଣଙ୍କ ପାଡି ଖନବାଜଗଲା !

ମଧୁ : ଖନବାଜଗଲା !! ମୁଁ ତ ଭାବିଲି ମୋ ଜିଭଟା କୋଉଠି ଯାଇ ଓଲଟିପଡ଼ିଲାଣି । ତୁ ତ ମତେ ସିଧା କହିଦେଇଥାନ୍ତୁ—ମଧୁବାବୁ, ଜଣେ କିଏ ସ୍ତ୍ରୀ ଲୋକ ଆସୁଚନ୍ତି—ବାସ୍, କଥା ବୁଝିଥାନ୍ତି । ତୁ କାହିଁକ କମେଣ୍ଟ୍ରି କରିବାକୁ ଗଲୁ ? ମୋ କାନ ଭିତରେ ତୋ କଥା ଶୁଣୁ ଶୁଣୁ ମୋ ମୁଣ୍ଡ ଭିତରେ କେତେବେଳେ ଛେଳିଛୁଆ ତ କେତେବେଳେ ଫେରିବାଲା ଆସି ଧକ୍କା ଖାଇଲାଣି । ଅଥଚ୍ ଦେଖିଲା ବେଳକୁ—ଦେଖିଲା ବେଳକୁ—

ଶଙ୍କର : ଏଇ ବଡ଼ବାବୁ ଆସିଲେଣି !

( ଶଙ୍କର ବାହାରକୁ ଚାଲିଗଲା । ମଧୁ ନିଜ ସ୍ଥାନରେ ବସିଲା । ଟିକିଏ ପରେ କହି କହି ଗୋଲକ ଆସିଲେ । )

ଗୋଲକ : ବୁଝିଲ ମଧୁସୂଦନ—

ମଧୁ : ନମସ୍କାର ସାର୍ !

ଗୋଲକ : ଆଜି ଯଦି କମ୍ପାନୀ ମତେ ଆଉ ଜଣେ ଟାଇପିଷ୍ଟ ନ ଦିଏ···(ଏ ପଟ ବାରନ୍ଦାକୁ ଚାହିଁ ( ସେ କିଏ—ବାରନ୍ଦାରେ ବସିଚନ୍ତି ? ତାଙ୍କୁ କହିଦିଅ—ନାସ୍ପି ସେବା-ସଦନଟା ରହିଚି ସେ ପାଖରେ । ସେ ବୋଧହୁଏ ଭୁଲ୍‌ରେ···

ମଧୁ : ନାହିଁ ସାର୍—ସେ ଜଣେ ଭଦ୍ର···ଭଦ୍ର ଝିଅ ।

ଗୋଲକ : ଭଦ୍ର ଝିଅ—ମାନେ ?

ମଧୁ : ମାନେ···ମାନେ ସାର୍, ସିଏ ଜଣେ ଭଦ୍ର ବାଳିକା ।

ଗୋଲକ : ଝିଅମାନେ ବାଳିକା—ଏଇଆ ତମେ ମତେ ବୁଝଉଚ ?

ମଧୁ : ଭୁଲ୍ ହୋଇଗଲା ବଡ଼ବାବୁ—ବାଳିକା ବୋଇଲେ ପାଞ୍ଚବର୍ଷର ଝିଅକୁ ବି ବାଳିକା ବୁଝେଇବ···ସେ ଜଣେ ଭଦ୍ର—ଭଦ୍ର ତରୁଣୀ ।

ଗୋଲକ : (ହସି) ତମର କିଛି ଗୋଟାଏ ହୋଇଚି ମଧୁସୂଦନ । ଭଦ୍ର ମହିଳା କହିପାରୁନ ?

ମଧୁ : ସେ ମହଲା ଘରକୁ ଯାଇନାହାନ୍ତି ସାର୍ ! ମହଲା କହିଲେ ଆମେ ବୁଝୁ…

ଗୋଲକ : କଣ ବୁଝ ?

ଗୋଲକ : ଟିକେ…ଟିକେ ମୋଟାସୋଟା—ହୁଏତ ଟିକାହିତା—ଟିକଏ ଗମ୍ଭୀର…

ଗୋଲକ : ମାନିଲି, ସେ ଭଦ୍ର ତରୁଣୀ । ନାଷ୍ଟ ସେବା ସଦନକୁ ଗିବାରେ ତାଙ୍କର ବାଧା କଣ ?

ମଧୁ : ସିଏ ତ ସାର୍ ଆପଣଙ୍କ ଅପେକ୍ଷାରେ ବସିଚନ୍ତି ।

ଗୋଲକ : ଅଥଚ ଏପର୍ଯ୍ୟନ୍ତ ଏ କଥା ତମେ ମତେ କହୁନ !

ମଧୁ : ହେ ଶଙ୍କର !

ଶଙ୍କର : ଆଜ୍ଞା !

ମଧୁ : ବଡ଼ବାବୁ ଯେତେବେଳେ ଆସିଲେ, ସେତେବେଳେ ସିଏ ବଡ଼ବାବୁଙ୍କୁ ଦେଖିଚନ୍ତି କି ନାହିଁ, ତୁ ଦେଖିନୁ ?

ଶଙ୍କର : ଆପଣ କଣ କହୁଚନ୍ତି ସାର୍ ମୁଁ କିଛି ବୁଝିପାରୁନି ।

ମଧୁ : ଏଇ ସେ ଆସିଲେଣି ।

ସନ୍ଧ୍ୟା : ନମସ୍କାର ।

ଗୋଲକ : ନମସ୍କାର ।

ସନ୍ଧ୍ୟା : ମୁଁ…

ମଧୁ : ହଁ ବଡ଼ବାବୁ…ଆମ ବଡ଼ବାବୁ ।

ସନ୍ଧ୍ୟା : ମୁଁ ଆପଣଙ୍କ ପାଖକୁ ଆସିଚି ।

ଗୋଲକ : ଆପଣଙ୍କ ପରିଚୟ ?

ସନ୍ଧ୍ୟା : ଆପଣଙ୍କର ଏଠି ଜଣେ ଟାଇପିଷ୍ଟ ଦରକାର ନା ?

ଗୋଲକ : କନ୍ତୁ ଆପଣ…

ସନ୍ଧ୍ୟା : ମୁଁ ତ—ଟାଇପିଷ୍ଟ ହେଇ ଆସିଚି ।

ଗୋଲକ : ଓଃ ! କନ୍ତୁ—ହେଡ଼ଅଫିସରୁ କିଛି ଚିଠିପତ୍ର ତ…ହୁଏତ ଆଜି ଡାକରେ ଆସିଥିବ !

ସନ୍ଧ୍ୟା : ଏଇ ଦେଖନ୍ତୁ ଏ ଚିଠି—ମୋ କପି ।    (ସନ୍ଧ୍ୟା ଚିଠି ଦେଲା)

ଗୋଲକ : ହୁଁ…( ପଢ଼ିଲେ ) କୁମାରୀ ସନ୍ଧ୍ୟା ରାୟ ( ମନକୁମନ ପଢ଼ି ) ଆପଣ…ଆଚ୍ଛା, ଆପଣଙ୍କ ସ୍ଲିଡ୍ କେତେ ?

ସନ୍ଧ୍ୟା : ସ୍ପିଡ୍ ଅଛୁ ଯେ···

ଗୋଲକ : ତେବେ ?

ସନ୍ଧ୍ୟା : ସାହସ ହେଉନ । କମ୍ପାନୀ ଅଫିସ୍—କାମରେ ଟିକିଏ ଏପାଖ ସେପାଖ ହେବା କଥା ନୁହେଁ । ଆପଣ ଯଦି ଟିକିଏ ଭରସା ଦେବେ···

ଗୋଲକ : ମୁଁ ! (ଆତ୍ମପ୍ରସାଦସୂଚକ ହସ ହସି) ମୁଁ କ ଭରସା ଦେବ ?

ସନ୍ଧ୍ୟା : ସତ କହୁଚ ସାର୍ ! ଏ ଢଙ୍ଗରେ ମୁଁ ଏକାବେଳକେ ନୂଆ । ଆପଣ ଟିକେ ସହାୟ ହେଲେ ମୁଁ ଠିକ୍ ଚଳେଇନେବ ।

ଗୋଲକ : ଏଇଟା ଟାଇପ୍ କରନ୍ତୁ ତ !

( ଗୋଟାଏ ଫାଇଲ୍ ସନ୍ଧ୍ୟାକୁ ଦେଲେ । ଫାଇଲ୍ ହାତରେ ଧରି ସନ୍ଧ୍ୟା ଏପାଖ ସେପାଖ ଚାହୁଁଥାଏ—କୋଉଠି ଟାଇପ୍ କରିବ ବୁଝି ପାରୁ ନଥାଏ । ମଧୁ ଏ ପର୍ଯ୍ୟନ୍ତ ଯେମିତି ଏକ ଫାଙ୍କା ଦୃଷ୍ଟିରେ ଚାହିଁରହିଥାଏ । )

ଗୋଲକ : ମଧୁସୂଦନ !

ମଧୁ : ହ ସାର୍ !

ଗୋଲକ : ସିଟ୍‌ଟା ଛାଡ଼ ।

ମଧୁ : (ଡରିଯାଇ) କାହିଁକି ସାର୍ ?

ସନ୍ଧ୍ୟା : ବଡ଼ବାବୁ ମୋର ସ୍ପିଡ୍ ଦେଖିବେ ।

ମଧୁ : ଓ ! (ଆଗ୍ରହରେ) ଆସନ୍ତୁ । ···ଟିକିଏ ରୁହନ୍ତୁ, ମୁଁ ମେସିନ୍‌ରେ କାଗଜଟା ସେଟ୍ କରିଦିଏ । (ମେସିନ୍‌ରେ କାଗଜ ଲଗାଇ) ଏଥର ଆସନ୍ତୁ—ବସନ୍ତୁ ।

ସନ୍ଧ୍ୟା : ଧନ୍ୟବାଦ ।

(ମଧୁ ଉଠିଗଲା । ସନ୍ଧ୍ୟା ଯାଇ ବସିଲା । ସନ୍ଧ୍ୟା ଦେଖିଲା ମେସିନ୍‌ରେ କାଗଜଟା ଠିକ୍ ଭାବରେ ଲଗିନାହିଁ । ସନ୍ଧ୍ୟା ସ୍ମିତ ହସି ମଧୁକୁ ଥରେ ଚାହିଁ ଆଖି ଫେରାଇ ଆଣିଲା ।)

ମଧୁ : ଓ, କାଗଜଟା ଟିକେ ବଙ୍କେଇଯାଇଚ ।

( ସନ୍ଧ୍ୟା ମୁହଁରେ ସେଇ ହସ ଲାଗିରହିଚ । ସେ କାଗଜ ଠିକ୍ କରି ଟାଇପ୍ କରିବା ଆରମ୍ଭ କରିଦେଲଣି । ଟାଇପ୍ କରିବା ଭଙ୍ଗୀ ସହଜ ଓ ସରଳ । ଟାଇପ୍ ଶେଷକରି କାଗଜ ନେଇ ଗୋଲକଙ୍କୁ ଦେଲା । ଗୋଲକ କାଗଜଟା ଉପରେ ଆଖି ବୁଲେଇ ସନ୍ଧ୍ୟା ଆଡ଼କୁ ଚାହିଁଲେ । )

ସନ୍ଧ୍ୟା : କଣ କହିବେ ?

ଗୋଲକ : କଚ୍ଛ କହିବାର ନାହିଁ । ଆପଣ ଉପରକୁ ଯାଇ ବ୍ରାଞ୍ଚ ମେନେଜରଙ୍କୁ ଦେଖା କରି ଆସନ୍ତୁ ।

ସନ୍ଧ୍ୟା : ଧନ୍ୟବାଦ । ( ଗ୍ଲଲଗଲ )

ଗୋଲକ : ମଧୁସୂଦନ !

ମଧୁ : ଆଜ୍ଞା !

ଗୋଲକ : ଦେଖିଲ ତ ?

ମଧୁ : କୁମାରୀ ସନ୍ଧ୍ୟା ରାସ୍ତ୍ରଙ୍କୁ ?

ଗୋଲକ : କୁମାରୀ ସନ୍ଧ୍ୟା ନୁହେଁ—ଲେଡ଼ି ଟାଇପିଷ୍ଟ ସନ୍ଧ୍ୟା ରାସ୍ତ୍ରଙ୍କୁ ; କିପରି କ୍ଷିପ୍ରଗତିରେ ଟାଇପ୍ କରିଗଲେ !

ମଧୁ : ମୋର କିନ୍ତୁ ମନେହେଉଥିଲା, ସେ ଟାଇପ୍ କରୁନାହାନ୍ତି ।

ଗୋଲକ : ତେବେ ?

ମଧୁ : ବେଣୀ ହଲାଇ, ଦୁଲ୍ ଝୁଲାଇ, ଟାଇପ୍ ମେସିନର ଟକ୍ ଟକ୍ ଶବ୍ଦ ସହିତ ରେଶମୀ ଚଡ଼ିର ରୁମ୍‌ଝୁମ ଧ୍ୱନି ମିଳାଇ, ସେ ସୃଷ୍ଟି କରୁଛନ୍ତି ଏକ ଛନ୍ଦମୁକ୍ତ ସଙ୍ଗୀତ ।

ଗୋଲକ : ତମର ଦରମା କେତେ ମଧୁସୂଦନ ?

ମଧୁ : ଆପଣ ଜାଣନ୍ତି ସାର୍ !

ଗୋଲକ : ଆଉ ସେଥିରେ ତୁମେ ଦେଖୁଚ ସଙ୍ଗୀତର ସ୍ୱପ୍ନ !

ମଧୁ : ସ୍ୱପ୍ନ ନୁହେଁ ସାର୍—ସତ୍ୟ ।

ଗୋଲକ : ସତ୍ୟ ! କି ସତ୍ୟ ? ତମର ମନେଅଛି, ଯେଉଁ ଦିନ ତମେ ପ୍ରଥମେ ଏଠିକି ଆସିଲ, ସେଦିନ ଅପରାଧୀଙ୍କ ପରି ମୋ'ଠାରୁ ଦୂରରେ ଦୂରରେ ରହୁଥିଲ । ଟାଇପ୍ କଲାବେଳକୁ ହାତ ଥରୁଥିଲା । କିନ୍ତୁ ଦେଖିଲ ତ ଗୋଟାଏ ଝିଅକୁ ! ଦ୍ୱିଧା ନାହିଁ —ସଙ୍କୋଚ ନାହିଁ—ସହଜ ସରଳ ଭଙ୍ଗୀରେ ହସି ହସି ଟାଇପ୍ କରି ଚାଲିଗଲେ । ଅଥଚ ତୁମେ ଶୁଣିଲ କ'ଣ ନା ସଙ୍ଗୀତ ! ମୁଁ ତୁମକୁ ସତର୍କ କରିଦେଉଚି ମଧୁସୂଦନ, ଏଇ ଶୁଷ୍କ-ନୀରସ ଫାଇଲଗଦା ଓ ଟାଇପ୍ ମେସିନ୍ ଭିତରେ ତୁମେ ବାକ୍ୟ-କବିତା କି ରସ-ସଙ୍ଗୀତର ସ୍ୱପ୍ନ ଦେଖିବ ନାହିଁ ।

ମଧୁ : କିନ୍ତୁ ସାର୍...ଏଥିରେ କ୍ଷତି କଣ ? ଗଦ୍ୟ ସହିତ ଟିକିଏ ପଦ୍ୟ ମିଶାଇ, ଏଇ ଜଡ଼ ପଦାର୍ଥ ଟାଇପ୍ ମେସିନ୍‌ରୁ ଟିକିଏ ସ୍ୱର ସଞ୍ଚର କରାଇ, ମାସ ଶେଷକୁ ଯଦି ଦରମାଟା ପୁରାପୁରି ହାତକୁ ଆସେ—ତେବେ ଏଥିରେ କିଛି କ୍ଷତି ଅଛି ବୋଲି ତ ମୋର ମନେହୁଏନା ।

( କଥା ଶେଷ ଅଡ଼କୁ ମଧୁ ନିଜ ଆସନକୁ ଫେରିଯାଇ କାମ ଆରମ୍ଭ କରିଦେଇଥିଲା । )

× × ×

[ ଗୋଲକଙ୍କର ଶୋଇବାଘର ସଂଲଗ୍ନ ସେଇ ବାରଣ୍ଡା । ବାହାରୁ ଆସିଲା ରେଖା । ରେଖା ଧନୀ ପିତାର ଅବିବାହିତା କନ୍ୟା—କଲେଜରେ ପଢ଼େ । ପଡ଼ୋଶୀ ହିସାବରେ କନକ ତାର ନୂଆବୋଉ । ପୂର୍ବବର୍ତ୍ତୀ ଦୃଶ୍ୟର ପ୍ରାୟ ଛ'ମାସ ପରର ଘଟଣା । ]

ରେଖା : ନୂଆବୋଉ ! ନୂଆବୋଉ ! ( ଘର ଭିତରୁ କନକ ଆସିଲା )

କନକ : କିଏ, ରେଖା ଦେଇ ! ଆଜି କଲେଜ ଯାଇନ ? ବସ ଏଇଠି···

( ଗୋଟିଏ ମୋଡ଼ା ଆଗେଇ ଦେଇ ଫେରିଯାଉଥିଲା )

ରେଖା : ତମେ କୁଆଡ଼େ ଯାଉଚ ?

କନକ : ଚକି ଦି'ଟା ଆଣେ ।

ରେଖା : କାହିଁକି ?

କନକ : ମୁଗ ରଗଡ଼ିବି ।

ରେଖା : ପାରିବ ?

କନକ : ଏ ଯାଏଁ ଆଉ, କିଏ ପାରୁଥିଲା ?

ରେଖା : ଖୁବ୍ ପରିଶ୍ରମ କରୁଛ ତା'ହେଲେ ? ସାଇଙ୍କୁ କହୁନ ବଜାରରୁ ଭଙ୍ଗା ମୁଗ କିଣିଆଣିବେ ?

( ରେଖାର କଥା ଉପରେ କଥା କହୁ କହୁ ବାହାରୁ ଆସିଲେ ଗୋଲକ । କନକ ଭିତରକୁ ଚାଲିଗଲା )

ଗୋଲକ : କିଏ···ରେଖା କହୁଚ ନା ? ଏ ଉପଦେଶ ଆଉ କିଏ ଦେବ ? ବାପା ଓକିଲ —ଭାଇ ଡାକ୍ତର—

ରେଖା : ପୁଣି ଏ ସବୁକଥା ଆପଣ ମତେ କହିଲେ ?

ଗୋଲକ : ତୁ କେମିତି ନ ବୁଝି ଏମିତି ଶସ୍ତା ଉପଦେଶ ଆସି ଢାଳିଦେଉଛୁ ?

ରେଖା : ନୂଆବୋଉଙ୍କ ଦେହ କେତେ ? ଏ ମହଣେ ଓଜନର ଚକି ସେ ଘୂରାଇ ପାରିବେ ?

ଗୋଲକ : ତୁ ପରା ଅର୍ଥନୀତିର ଛାତ୍ରୀ ?

ରେଖା : ନିଶ୍ଚିତ ତୁମର ଅର୍ଥନୀତି । ଗୋଟା ମୁଗରେ କେତେ ଏମିତି ଲାଭ ହେବ ଯେ ଏତେ କଷ୍ଟ ସେ ସହିବେ ?

ଗୋଲକ : ମୋ କଥା ଆଗେ ଶୁଣ । ଏ ଗୋଟାମୁଗ ବ୍ୟାପାରରେ ଅର୍ଥନୀତି ଓ ଶରୀରନୀତି ଏ ଦୁଇଟିର ସମ୍ବନ୍ଧ ରହିଛି । ବଜାରରୁ ଭଙ୍ଗାମୁଗ ନ ଆଣି ଗୋଟାମୁଗ କିଣି ଆଣିଲେ ହାରାହାରି କୋଡ଼ିଏ ପର୍ସେଣ୍ଟ ଭଙ୍ଗା ମୁଗ ଲାଭ ମିଳିବ—ତା ଛଡ଼ା ମୁଗଚୋପା ବଳି ହେବ । ଦ୍ୱିତୀୟ କଥା—ଚକି ବୁଲାଇବା ଦ୍ୱାରା ମାଂସପେଶୀ ଦୃଢ଼ ଓ ସୁନ୍ଦର ହେବ ।

ରେଖା : ଯେଉଁ ପ୍ରଫେସର ଆମକୁ ଟ୍ରିଗୋନୋମେଟ୍ରି ପଢ଼ାନ୍ତି, ମୁଁ ତାଙ୍କୁ କହୁଛି, ସେ ଏଣିକି ଘଣ୍ଟାଏ ଘଣ୍ଟାଏ ଆପଣଙ୍କ ପାଖକୁ ଆସିବେ ।

ଗୋଲକ : ମୁଁ ବୁଝିପାରୁନାହିଁ ରେଖା, ଦଶ ଦଶ ଜଣ ମାଷ୍ଟର ରଖି ତୋ' ବାପା ମିଛଟାରେ ତୋତେ କାହିଁକି ପଢ଼ାଉଛନ୍ତି !!

ରେଖା : ଆପଣ ଏଠି ନୂଆବୋଉଙ୍କୁ ଘରେ ପଢ଼ାଉଛନ୍ତି କାହିଁକି ?

ଗୋଲକ : ସେ ପଢ଼ିବାର ଗୋଟାଏ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ଅଛି ।

ରେଖା : ମୋର ଆଉ ନାହିଁ ?

ଗୋଲକ : ନା ।

ରେଖା : କାହିଁକି ?

ଗୋଲକ : ପାଠ ପଢ଼ି ତୋ' ପରି ଝିଅ କିଛି କରିପାରିବ ନାହିଁ ।

ରେଖା : ଆଉ କିଏ କଣ କରିପାରିବ ?

ଗୋଲକ : ସେ ଅନ୍ୟ ଜାତିର ଝିଅ ଅଛନ୍ତି ।

ରେଖା : ଯଥା ?

ଗୋଲକ : ଯ୍ଥଲ, ଆମ ଅଫିସକୁ ଦେଖିବୁ—ଗୋଟାଏ ଝିଅ ପାଠ ପଢ଼ି, ଟାଇପିଷ୍ଟ ହୋଇ ଅଫିସକୁ ଛ'ମାସ ହେଇଗଲା ମାସକୁମାସ କେମିତି ଦରମା ଗଣିନେଉଛି ।

ରେଖା : ବୁଝିଲି, ଆପଣ ତା'ହେଲେ ନୂଆବୋଉଙ୍କୁ ଟାଇପିଷ୍ଟ କରିବେ ! ଶୁଣୁଛ ନୂଆବୋଉ, ତୁମେ ଟାଇପିଷ୍ଟ ହେବ । ଏଣିକି ମାସ ଶେଷକୁ ତମ ଦରମା ସାଙ୍ଗକୁ ଗୋଲକ ଭାଇଙ୍କର ଦରମା । ମୁଁ ଯାଉଛି—ଗୋଲକ ଭାଇଙ୍କୁ ଆଜି ଭଲ କରି ଖାଇବାକୁ ଦିଅ । ( ଚାଲିଗଲା )

ଗୋଲକ : କନକ···( କନକ ଆସିଲା )

କନକ : ଜଳଖିଆ ହେଲାଣି, ଆସ ।

ଗୋଲକ : ତମ ପାଇଁ ଆଜି ଗୋଟାଏ ଭଲ ଜିନିଷ ଆଣିଛି ।

କନକ : କଣ ?

ଗୋଲକ : ତୁମେ କହ ଦେଖି !

କନକ : ( ଟିକିଏ ଭାବି ) ଲୁଗାଧୂଆ ସାବୁନ ?

ଗୋଲକ : ନା···

କନକ : ତା'ହେଲେ···ପଲଙ୍କାଠି ?

ଗୋଲକ : ପଲଙ୍କାଠି !! କଣ ହେବ ?

କନକ : ମୁଗସ୍ପେପା ଓଜନ କରିବାକୁ ଭାରି ଅସୁବିଧା ହେଉଛି ।

ଗୋଲକ : ନା, ପାରିଲ ନାହିଁ । ତୁମ ପାଇଁ ଗୋଟାଏ ଟାଇପ୍ ମେସିନ୍ ଆଣିଛି ।

କନକ : ଟାଇପ୍ ମେସିନ୍···କଅଣ ହେବ ?

ଗୋଲକ : ତମେ ଟାଇପ୍ ଶିଖିବ ।
କନକ : କାହିଁକି ?
ଗୋଲକ : ଶୁଣିଲ ନାହିଁ, ରେଖା କହିଗଲା—
କନକ : ମୁଁ ଟାଇପିଷ୍ଟ ହେବ ?
ଗୋଲକ : ହଁ ।
କନକ : ଆଉ ତୁମେ ?
ଗୋଲକ : ମୁଁ ତ' ହୋଇଛି !
କନକ : ଏଣେ ଘର କାମ ?

ଗୋଲକ : ଆଦୌ ଅସୁବିଧା ହେବନାହିଁ । ମାତ୍ର ମାସ ଦୁଇଟା ଚେଷ୍ଟାରେ ତୁମେ ଶିଖି ପାରିବ । ସନ୍ଧ୍ୟା ଆଜ ତା ଦରମା ନେଲା । ସେଇ କଥା ଆଜ ମୁଁ ଭାବୁଛି । ପାରିବ ଯଦି, ତୁମେ ତା' ପରି ହେବନାହିଁ କାହିଁକି ? ସେଥିପାଇଁ ଗୋଟାଏ ପୁରୁଣା ମେସିନ ମରାମତି କରାଇ ମୁଁ ତମପାଇଁ ଆଣିଛି ।

କନକ : ସନ୍ଧ୍ୟା ବିବାହ କରିଛି ?

ଗୋଲକ : ନା । ଏବେ ସେ ନିଶ୍ଚୟ ବିବାହ କରିବ । ତା'ପରେ ସ୍ୱାମୀ-ସ୍ତ୍ରୀ ଦୁହେଁ···
କନକ : ଭଲକଥା···ମୁଁ ଶିଖିବି । ମେସିନ୍ କାହିଁ ?

ଗୋଲକ : ଦାଣ୍ଡଘରେ ଅଛି । ରହ, ମୁଁ ଆଣେ । ( ପ୍ରସ୍ଥାନ )

× × ×

[ ଅଫିସ୍ । ସନ୍ଧ୍ୟା ଓ ମଧୁ ଅଫିସ୍ କାମ କରୁଛନ୍ତି । ସମୟ ଅପରାହ୍ଣ ]

ସନ୍ଧ୍ୟା : ଏ ପାଞ୍ଚଟା ଫାଇଲ୍ ତ ମୋର କାଲିଠୁ ବାକି ଥିଲା—ଟାଇପ୍ କଲା କିଏ ?
ମଧୁ : ଆରବ୍ୟ ଉପନ୍ୟାସର ସେହି ଭୂତ ।

ସନ୍ଧ୍ୟା : ନା ମଧୁବାବୁ—ଏ ଅନ୍ୟାୟ । ଅଯାଚିତ ଭାବରେ ଆପଣ ମୋତେ ସାହାଯ୍ୟ କରିଚାଲିଛନ୍ତି—ଅଥଚ ମୁଁ କିଛି ପ୍ରତିଦାନ ଦେଇପାରୁନି ।

ମଧୁ : ଦିଅନ୍ତୁ ନା !
ସନ୍ଧ୍ୟା : କଣ ?
ମଧୁ : ଖଣ୍ଡେ ପାନ ।
ସନ୍ଧ୍ୟା : ଏଇଆ ! ( ହସିଉଠିଲା )
ମଧୁ : ଆପଣ ଆଉ କଣ ଆଶା କରୁଥିଲେ ?
ସନ୍ଧ୍ୟା : ବାଃ, ଆପଣଙ୍କ ମନକଥା ମୁଁ କେମିତି ଆଶା କରିବ ?
ମଧୁ : ( କିଛିକ୍ଷଣ ଭାବି ) ଅଚ୍ଛା, ସନ୍ଧ୍ୟା ଦେବୀ···
ସନ୍ଧ୍ୟା : ହଠାତ୍ ଗଳାର ସ୍ୱର ବଦଳାଇଦେଲେ ଯେ ?

ମଧୁ : ଦରକାର ପଡ଼ିଲା ।

ସୁଧା : କଣ ?

ମଧୁ : ମୋର କେତେଟା ପ୍ରଶ୍ନର ଉତ୍ତର ଦେବେ ?

ସୁଧା : ଏଇ ମୂଳ ପ୍ରଶ୍ନଟାର ଉତ୍ତର ଦେବାକୁ ତ ମତେ ଚନ୍ଦ୍ରାକରିବାକୁ ପଡ଼ୁଚି ।

ମଧୁ : ନା—ନା, ଆପଣଙ୍କୁ ଦବାକୁ ଇ ହେବ ।

ସୁଧା : ବେଶ୍ ତ ! ପରୀକ୍ଷା'ଟା—ଅନୁମତି ଦିଅନ୍ତୁ ଛନ୍ତି କାହିଁକି ? କିନ୍ତୁ ସଙ୍ଗେ ସଙ୍ଗେ ମୋର କେତେଟା ପ୍ରଶ୍ନର ଉତ୍ତର ମଧ୍ୟ ଆପଣ ଦେବେ ।

ମଧୁ : ଏ କଥା କଣ ସତ ଯେ ଆପଣ ସ୍ବୀକାର କରି ଟଙ୍କା ସଞ୍ଚୟ କରିଛନ୍ତି—କିଛି ଟଙ୍କା ହୋଇଗଲେ ଆପଣ ବିବାହ କରିବେ ?

ସୁଧା : ତେବେ ଏ କଥା କ'ଣ ସତ ଯେ ଆପଣ ସ୍ବୀକାର କରି ଆଦୌ ଟଙ୍କା ସଞ୍ଚୟ କରି ପାରୁ ନାହାନ୍ତି, ଯେହେତୁ ଅବିବାହିତ ବୋଲି ଆପଣଙ୍କର ଟଙ୍କାପଇସାର ନିଷ୍ପିତ ଉପଯୋଗ କରିବାକୁ କେହି ଲୋକ ନାହାନ୍ତି ?

ମଧୁ : ତା'ହେଲେ ଏକଥା କଣ ସତ ଯେ ଆପଣଙ୍କର ପ୍ରଚୁର ରୂପଗୁଣ ଥିବା ସତ୍ତ୍ୱେ ଆପଣ କୌଣସି ବଡ଼ଲୋକଙ୍କୁ ବିବାହ ନକରି ଆପଣଙ୍କ ସ୍ତରର କୌଣସି ଏକ କର୍ମନିଷ୍ଠ ଯୁବକଙ୍କୁ ବିବାହ କରିବେ ?

ସୁଧା : ତା' ହେଲେ ଏକଥା କଣ ସତ ଯେ ଆପଣ ଯାହାକୁ ବିବାହ କରିବେ, ସେ କେବଳ ଆପଣଙ୍କ ଘର-ସଂସାରରେ ଆବଦ୍ଧ ନ ରହି—ଆପଣଙ୍କ କର୍ମକ୍ଷେତ୍ରରେ ସହଯୋଗିନୀ ହୋଇ ରହିବ ?

ମଧୁ : ତା'ହେଲେ ଏ କଥା କଣ ସତ···

ସୁଧା : ତା'ହେଲେ ଏ'କଥା କଣ ସତ···

ମଧୁ : ବଡ଼ ମୁସ୍କିଲ କଥା ସୁଧାଦେବୀ—ଆପଣ କେବଳ ପ୍ରଶ୍ନ ହିଁ ପଚାରି ଚାଲିଛନ୍ତି ! ମୋ' ପ୍ରଶ୍ନର ଉତ୍ତର କାହିଁ ?

ସୁଧା : ମୁଁ ତ ସେଇଆ କହୁଚି, ମୋ ପ୍ରଶ୍ନର ଉତ୍ତର କାହିଁ ?

( ଠିକ୍ ଏତିକବେଳେ ହାତରେ ଗୋଟିଏ ଫାଇଲ୍ ଧରି ଆସିଲେ ଗୋଲକ । )

ଗୋଲକ : ଉତ୍ତର ଆଜ ଆସିଯାଇଛି ସୁଧାଦେବୀ । ଆପଣ ଓ ମଧୁ ଦୁହେଁଯାକ···

( ଅଟକିଗଲେ )

ମଧୁ : ( ଉତ୍କଣ୍ଠାରେ ) କହନ୍ତୁ ସାର୍—କ'ଣ ଆମେ ଦୁହେଁଯାକ···

ଗୋଲକ : ତୁମ ଦୁହିଁଙ୍କର ସ୍ବୀକାର ସ୍ଥାୟୀ ହୋଇଚି ।

ମଧୁ : ଧନ୍ୟବାଦ ସାର୍ । କିନ୍ତୁ ଖାଲି ସ୍ତୁକର କଥା ନୁହେଁ—ଆମେ ବୁଢ଼େ—କହିବ ସଖା ଦେବୀ ?

ଗୋଲକ : ମୁଁ ଜାଣେ—ବନ୍ଧୁ ସୁବର୍ଣ୍ଣ ଜାଣେ । ମୋ' ଘରେ ଏ ଶୁଭସମ୍ବାଦ ମୁଁ ଦେଇ-ଦେଇଛ । ଆଉ ମୁଁ ଆଶୀର୍ବାଦ କରୁଛି, ତୁମ ଦୁହିଁଙ୍କର ଜୀବନ ସୁଖମୟ ହେଉ । ହଁ ସଖାଦେବୀ ଗୋଟାଏ କଥା···

ସଖା : କୁହନ୍ତୁ ।

ଗୋଲକ : ମୁଁ କାଲି ପୁରୁଣା ମେସିନ୍ ମରାମତି କରାଇ ଘରକୁ ନେଇଛି ।

ମଧୁ : କାହିଁକି ନେଇଚନ୍ତି ?

ସଖା : ମୁଁ ଜାଣେ ।

ମଧୁ : କଣ ?

ସଖା : କନକ ଦେଇ ଟାଇପ୍ ଶିଖିବେ ।

ଗୋଲକ : କେମିତି ଜାଣିଲ ? ମୁଁ ତ କହିନାହିଁ ।

ସଖା : ଏତକ ଆଉ ଜାଣିପାରିବ ନାହିଁ ? କିନ୍ତୁ ମୋର ଗୋଟାଏ ନିବେଦନ···ଅନୁମତି ଦେଲେ କନକ ଦେଇଙ୍କ ଟାଇପ୍ ଶିକ୍ଷାରେ ମୁଁ ସାହାଯ୍ୟ କରିବି ।

ଗୋଲକ : ସେ'ତ ମୋର ବଡ଼ ସୌଭାଗ୍ୟ ।

ସଖା : ତେବେ ଚାଲନ୍ତୁ—ଆଜ ଏଇଠୁ ଆପଣଙ୍କ ଘରକୁ ଯିବା ।

ଗୋଲକ : ମୁଁ ଠିକ୍ ସେଇଆ ଭାବୁଥିଲି । ମଧୁସୂଦନ, ତମେ ମଧ୍ୟ ଆସ ।

× × ×

[ ଗୋଲକଙ୍କ ଶୋଇବାଘର । ଗୋଟାଏ କୋଣକୁ ଟେବୁଲ ଉପରେ ଟାଇପ ମେସିନ୍‌ଟି ଥୁଆହୋଇଛି । ଗୋଲକ, ମଧୁ ଓ ସଖା ଆସିଲେ । ]

ଗୋଲକ : ଆସ ସଖ ଦେବୀ—ଆସ ମଧୁସୂଦନ, ଆସ ! ଏଇ ଟେବୁଲ ଉପରେ ମେସିନଟା ଥୁଆହୋଇଚି ।

ମଧୁ : ମେସିନ୍‌ରେ କାଗଜ ବି ତ ରହିଛି ! ଟାଇପ୍ କରୁଥିଲେ ବୋଧହୁଏ !

ସଖା : ଦେଖେଁ, କ'ଣ ଟାଇପ୍ କରିଛନ୍ତି ! ( ଆଗେଇଯାଇ ) ଏଇଲେ ମା'—ଏ ରିବନ୍‌ଟା କଟିଗଲା କେମିତି ?

ଗୋଲକ : ରିବନ୍ କଟିଯାଇଚି ? ସତେ ତ—ରିବନ କାଟିଲା କିଏ ? ମୂଷା ?

ମଧୁ : ଉହୁଁ, ମୂଷା କ'ଣ ଏମିତି ପରିପାଟୀ କରି କାଟିପାରିବ ? କଇଁଚିରେ କଟାହୋଇଥିବା ଜଣାଯାଉଚି—ମଝିରୁ ଖଣ୍ଡେ ନାହିଁ ।

ଗୋଲକ : ବଡ଼ ଆଶ୍ଚର୍ଯ୍ୟ କଥା ? ( କନକକୁ ଉଦ୍ଦେଶ୍ୟ କରି ) କନକ···କନକ ।

[ ପର୍ଦ୍ଦା ଆଡ଼େଇ କନକ ଆସି ଦ୍ୱାରମୁହଁରେ ଠିଆ ହୋଇ ଆଗନ୍ତୁକମାନଙ୍କ ଉଦ୍ଦେଶ୍ୟରେ ନମସ୍କାର କଲା । ]

ଗୋଲକ : ରିବନ୍ କଟିଲା କେମିତି ?

କନକ : କି ରିବନ୍ ?

ଗୋଲକ : ଟାଇପ୍ ମେସିନ୍‌ର ଏଇ ରିବନ୍—କିଏ କାଟିଲା ?

କନକ : ମୁଁ...

ଗୋଲକ : ତମେ କାଟିଚ ? କାହିଁକି ?

କନକ : କାଟିବା ଦରକାର ପଡ଼ିଲା ।

ଗୋଲକ : କ'ଣ ଦରକାର ଶୁଣେ ?

[ ଏତିକିବେଳେ ରେଖା ଆସି କନକ ପାଖରେ ଠିଆହେଲା ।]

ରେଖା : ନମସ୍କାର...ମୁଁ ରେଖା ।

ସନ୍ଧ୍ୟା : ଓ ! ଆମେ ଜାଣିଚୁ ଆପଣଙ୍କୁ ।

ଗୋଲକ : ଶୁଣୁଚୁ ତ ରେଖା, କନକ କଣ କହୁଚି ?

ରେଖା : ସେ ଠିକ୍ କହୁଚନ୍ତି ।

ଗୋଲକ : କଣ ଠିକ୍ କହୁଚି ? ରିବନ୍ କାହିଁକି କଟାହେଲା ?

ରେଖା : ଏଇଥିପାଇଁ...ଦେଖ ।

[ କନକର ପଛପଟେ ଲମ୍ବି ଆସିଥିବା ବେଣୀକୁ ରେଖା ତା ନିଜ ହାତରେ ସାମନା ପଟକୁ ଆଣି ଟେକି ଧରିଲା । ବେଣୀର ଅଗଭାଗରେ ବେଶ୍ ନିପୁଣତା ସହ ସଦ୍ୟ କଟା ହୋଇଥିବା ରିବନ୍ ଖଣ୍ଡିକ ବନ୍ଧା ହୋଇଚି । ଏ ଦୃଶ୍ୟ ଦେଖି ଏ ତିନି ଜଣଙ୍କର ବିସ୍ମୟର ସୀମା ନାହିଁ । ]

ଗୋଲକ : ଏ କଣ.. ଟାଇପ୍ ମେସିନ୍‌ରୁ ରିବନ୍ କାଟିନେଇ ତମେ ବେଣୀ ବାନ୍ଧିଚ !

ରେଖା : କଣ ଆଉ କରିଥା'ନ୍ତେ ? ବେଣୀ ବାନ୍ଧିବା ପାଇଁ ଘରେ ତ ଖଣ୍ଡେ ହେଲେ ରିବନ୍ ନ ଥିଲା !

ଗୋଲକ : କନକ !

କନକ : ତମକୁ କହି କହି ତମେ ତ ଖଣ୍ଡେ ଆଣିଦେଲ ନାହିଁ । ସେଥିପାଇଁ ଏ ଅଧା ଖିଲ ଅଧା ନାଲି ଚକ୍‌ଚକ୍ ରିବନ୍ ଉପରେ ମୋର ଲୋଭ ହେଲା ।

( ମଧୁ ଓ ସନ୍ଧ୍ୟା ଆମୋଦ ଅନୁଭବ କରୁଥାନ୍ତି )

ଗୋଲକ : ଏ କଥା ଏଠି ମୁହଁ ଖୋଲି କହିପାରୁଚ ତମେ ?

ସନ୍ଧ୍ୟା : କନକ ଦେଈଙ୍କୁ ଆପଣ ମୋତେ ଦୋଷ ଦେଇପାରିବେ ନାହିଁ ବଡ଼ବାବୁ ! ମୁଁ ତାଙ୍କୁ ଦେଖୁଚି, ଆଉ ଏ ଘର ଦେଖି ବୁଝିପାରୁଚି ତାଙ୍କ ଘରକରଣା । ତାଙ୍କୁ ଏ ଘରୁ ନେଇ ଅଫିସରେ ବସାଇବା ମାନେ ମନ୍ଦିରର ଦେବତାଙ୍କୁ ନେଇ ରଙ୍ଗାଳୟରେ ସ୍ଥାପନ କରିବା । ମତେ ନିଶ୍ଚୟ ଚିହ୍ନି ପାରୁଥିବ କନକ ଦେଈ ! ମୁଁ ସନ୍ଧ୍ୟା ରାୟ—ଟାଇପିଷ୍ଟ । ମୋର ଧର୍ମ ତମେ ଗ୍ରହଣ କରିବାକୁ ଯାଉଥିଲ । କିନ୍ତୁ ସବୁ ଝିଅ ଯେ ଟାଇପିଷ୍ଟ ହେବାକୁ ଜନ୍ମ ହୋଇନାହାନ୍ତି, ଟାଇପ୍ ମେସିନ୍‌ରୁ ଫିତା କାଟି ଏ ଶିକ୍ଷା ତମେ ଆମ ସମସ୍ତଙ୍କୁ ଦେଇଚ·· କ୍ଷମା କରିବେ ବଡ଼ବାବୁ, ଯାଉଚି···ଯାଉଚି କନକ ଦେଈ !

କନକ : ତମେ ଏଠିକି ଆସିଲ—ଏତେ ସୁନ୍ଦର ସୁନ୍ଦର କଥା କହିଲ—ସନ୍ଧ୍ୟା ରାୟ ଟାଇପିଷ୍ଟଙ୍କୁ ମୁଁ ଚିହ୍ନିଲି । କିନ୍ତୁ ତମେ ଏମିତି ଚାଲିଗଲେ ସନ୍ଧ୍ୟା ବୋଲି ମୋର ଯେ ଗୋଟିଏ ସାନ ଯାଆ ହେବାକୁ ଯାଉଚି, ତାକୁ ମୁଁ ଚିହ୍ନିବି କେମିତି ? ତମେ ରୁହ ।

( ତୃପ୍ତ ହସ ହସି ସନ୍ଧ୍ୟା ମୁହଁ ତଳକୁ କଲା )

କନକ : ( ଗୋଲକଙ୍କୁ ) ଶୁଣୁଚ—ମଧୁବାବୁଙ୍କୁ ନେଇ ତମେ ସେ ଘରେ ବସ—ମୁଁ ଜଳଖିଆ ପଠଉଚି । ସନ୍ଧ୍ୟା ଏଠି—ଏ ଘରେ ଖାଇବେ ।

[ ସମସ୍ତଙ୍କ ମୁହଁରେ ଆନନ୍ଦ ଓ ତୃପ୍ତିର ଆଭାସ ]



# ମହିଳା ମଧ୍ୟବୟସ୍କା

**ଚରିତ୍ର**

ଡାକ୍ତର — ବୟସ ପ୍ରାୟ ଚାଳିଶ
ବନ୍ଧୁ — ଡାକ୍ତରଙ୍କ ସହାୟକ, ବୟସ ପ୍ରାୟ ତିରିଶ
ପ୍ରଥମ ରୋଗୀ : ବୟସ ପ୍ରାୟ ପଚିଶ
ଦ୍ୱିତୀୟ ରୋଗୀ : ବୟସ ପ୍ରାୟ ପଚାଶ
ତୃତୀୟ ରୋଗୀ : ବୟସ ପ୍ରାୟ ଚାଳିଶ
ଯଶୋଦା — ମଧ୍ୟବୟସ୍କା ମହିଳା
ରାଧା — ଯଶୋଦାଙ୍କ ବାଳିକା ପରିଚାରିକା, ବୟସ ପ୍ରାୟ ସତର ।

[ଏକ ଫ୍ରେଷ୍ଟ ସହରର ଏକ ଘରେଇ ଡାକ୍ତରଖାନା । ସମୟ—ପୂର୍ବାହ୍ନ । ଡାକ୍ତର ତାଙ୍କ ଚୌକି ଉପରେ ବସି ଖବରକାଗଜ ପଢ଼ୁଚନ୍ତି । ପଢ଼ୁ ପଢ଼ୁ ତାଙ୍କ ମୁହଁରେ ହର୍ଷ-ବିସ୍ମୟର ପ୍ରତିଚ୍ଛବି ଫୁଟିଉଠୁଚି…ଟିକିଏ ପରେ ପଢ଼ା ବନ୍ଦକରି ଡାକିଲେ—]

ଡାକ୍ତର : ବିଶୁବାବୁ…ବିଶୁବାବୁ !

ବିଶୁ : (ଭିତର ଘରୁ) ଗଲି ଆଜ୍ଞା, ଗଲି । ଏ ଟେବୁଲଟା ଟିକିଏ ସଫା କରୁଥିଲି ! (ଗୁଣୁ ଗୁଣୁ ହୋଇ ଗାଉଥାନ୍ତି ) ଯାନେଓ୍ୱାଲି ଯାତା ହେଁ—ଆନେଓ୍ୱାଲି ଆ ଯାଓ…

[ ଘର ଭିତରୁ ବାହାରି ସେମିତି ଗୁଣୁଗୁଣୁ ହୋଇ ସିଧା ବାହାରକୁ ଚାଲିଯାଉଥିଲେ । ]

ଡାକ୍ତର : ବିଶୁବାବୁ !

ବିଶୁ : ସାର୍ !

ଡାକ୍ତର : ଶୁଣ । ଏଠିକି ଆସ ।

ବିଶୁ : (ପାଖକୁ ଆସି) ଆଜ୍ଞା ?

ବିଶୁ : ଆନେଓ୍ୱାଲେ…ମାନେ ଯେଉଁମାନେ ଆସିଲେଣି—ମାନେ ଯେଉଁ ରୋଗୀମାନେ ଆସି ବାହାରେ ବସିଚନ୍ତି—ତାଙ୍କୁ ଡାକିବି—ଆପଣ ତ ଖବରକାଗଜ ପଢ଼ି-ସାରିଲେଣି ।

ଡାକ୍ତର : ଶୁଣ, ରୋଗୀ ଆସୁଚନ୍ତି—ରୋଗୀ ଆସିବେ ।

ବିଶୁ : ନିଶ୍ଚୟ ଆସିବେ ସାର୍ ! ମଫସଲ ଅଞ୍ଚଳରେ ଏ ଗ୍ରେଟ ଟାଉନ୍‌ଟି—ହେଲେ ଏଠି ଚାରିଜଣ—ନାହିଁ ପାଞ୍ଚ ଜଣ—ନାହିଁ ଛ' ଜଣ—ଏଇ ଗଲକାଲି ଜଣେ ଆସିଚନ୍ତି —ମୋ' କହିବା କଥା, ଏତେ ଟିକେ ଗ୍ରେଟ ଟାଉନ୍‌ରେ ଛ'-ଛ' ଜଣ ଡାକ୍ତର, ହେଲେ ଆମ ରୋଗୀ ଆମର—ଦିନକୁ ଦିନ ବଢ଼ୁଛନ୍ତି ପଛେ କମୁନାହାନ୍ତି ।

ଡାକ୍ତର : ଏ ଖବରକାଗଜର ଖବରଟା ଆଗେ ଶୁଣ ।

ବିଶୁ : ଜଣ୍ଡିସ୍ ଖବର ତ ? ମୁଁ ଶୁଣିଚି । ଆମ ଏ ଅଞ୍ଚଳରେ ଟିକିଏ ବେଶୀ ବ୍ୟାପିଚି ।

ଡାକ୍ତର : ଜଣ୍ଡିସ୍ ନୁହେଁ । ଆଜି ଏ କାଗଜରେ ବାହାରିଚି—ଏଠିକା କଥା ନୁହେଁ—ଇଂଲଣ୍ଡର କଥା ।

ବିଶୁ : ଇଂଲଣ୍ଡର କଥା !

ଡାକ୍ତର : ହଁ ।

ବିଶୁ : ଶୁଣିବାକୁ ସାର୍ ଖୁବ ଲୋଭ ହଉଛି । ହେଲେ ସାର୍, ପଞ୍ଚାଏ ରୋଗୀ ଅପେକ୍ଷା କରି ବସିଛନ୍ତି ।

ଡାକ୍ତର : ଇଏ ସେଇ ରୋଗୀ, ରୋଗ ଆଉ ଡାକ୍ତରଙ୍କ କଥା—ଶୁଣ ! ଇଂଲଣ୍ଡର ଜଣେ ବୃଦ୍ଧା—ବୟସ୍କା ସ୍ତ୍ରୀ ଲୋକ—ବୟସ ପ୍ରାୟ ପଞ୍ଚାଅଶୀ—ଖୁବ—ଖୁବ୍ ଧନୀ—କିନ୍ତୁ ତାଙ୍କର ନିଜର ବୋଲି କେହି ନାହାନ୍ତି ।

ବିଶୁ : ଅଉ କେବେ କିଏ ଅଛନ୍ତି ସାର୍ ?

ଡାକ୍ତର : ରୋଗ । ତାଙ୍କର ନିଧନର ସାଥୀ ହେଉଛନ୍ତି ଅସଂଖ୍ୟ ରୋଗ ଜୀବାଣୁ । ତାଙ୍କୁ ଯେଉଁଦିନ ପ୍ରାୟ ପଚାଶ ବର୍ଷ ବୟସ, ଅର୍ଥାତ୍ ସେ ଯେତେବେଳେ ମଧ୍ୟବୟସ୍କା—ସେଦିନୁ ତାଙ୍କର ରୋଗ ଆରମ୍ଭ ହେଲାଣି । ତାଙ୍କ ଦେହ ହେଉଛି ରୋଗର ଖଣି । କିଛି ନା କିଛି ରୋଗ ତାଙ୍କର ନିତିପ୍ରତି ଲାଗିରହୁଛି ।

ବିଶୁ : ସେମିତି ଡାକ୍ତର, କମ୍ପାଉଣ୍ଡର, ନର୍ସ ନିତିପ୍ରତି ଲାଗିରହୁଥିବେ ।

ଡାକ୍ତର : ନିଶ୍ଚୟ ଲାଗିରହୁଥିଲେ ।···କିନ୍ତୁ···କିନ୍ତୁ ଏଇ ଗଲା ସୋମବାର ଦିନ ଭଦ୍ରମହିଳା ମରିଗଲେ ।

( ଏକଥା ଶୁଣି ବିଶୁଙ୍କ ମୁହଁର ଭାବ ବଦଳିଗଲା । ସେ ଆଖିବୁଜି ନୀରବରେ ଠିଆ ହୋଇ ରହିଲେ । )

ବିଶୁବାବୁ ! ବିଶୁବାବୁ !

ବିଶୁ : ସାର୍ !

ଡାକ୍ତର : ତମକୁ···ତମକୁ କାନ୍ଦ ମାଡ଼ୁଛି ?

ବିଶୁ : (ମଥା ହଲାଇ ଇଙ୍ଗିତରେ ମନାକଲେ)

ଡାକ୍ତର : ଆଖିବୁଜି ଚୁପହୋଇ ଠିଆହୋଇ ରହୁଛ ଯେ ? ତାଙ୍କର ଅମର ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା କରୁଛ ?

ବିଶୁ : ଯିଏ ମରିଗଲେ ତାଙ୍କ ପାଇଁ ପ୍ରାର୍ଥନା କରି ଲାଭ କଣ ? ଖବରଟା ଶୁଣିଲାକ୍ଷଣି ମୋ ଆଖି ଆପେ ଆପେ ବନ୍ଦ୍ ହୋଇଗଲା । ଭାବୁଥିଲି, ଏତେଗୁଡ଼ାଏ ସମ୍ପତ୍ତି—ଆତ୍ମୀୟସ୍ୱଜନ କେହି ନାହାନ୍ତି—ସବୁ ଅବ୍ୟବସ୍ଥା ହେଇଯିବ ।

ଡାକ୍ତର : ସେଥିପାଇଁ ତମକୁ ଏଠି ଆଖି ବୁଜି ଚିନ୍ତା କରିବାକୁ ପଡ଼ିବନାହିଁ । ସେ ବ୍ୟବସ୍ଥା ସେ କରିଯାଇଛନ୍ତି । ପ୍ରଥମେ କାହା କଥା ଲେଖିଛନ୍ତି ଜାଣ ?

ବିଶୁ : କିଏ ଜଣେ ଦୂରସଂପର୍କର ପୁରୁଷ କି ଝିଅଙ୍କ ହୋଇଥିବ ।

ଡାକ୍ତର : ନା—ଡାକ୍ତରଙ୍କ କଥା ।

ବନ୍ଧୁ : କୋଉ ଡାକ୍ତର ?

ଡାକ୍ତର : ଯୋଉ ଡାକ୍ତର ତାଙ୍କର ବର୍ଷ ବର୍ଷ ଧରି ଚିକିତ୍ସା କରିଆସୁଥିଲେ—ତାଙ୍କ ପର୍ସନାଲ୍ ଫିଜିସିୟାନ୍ ।

ବନ୍ଧୁ : କିନ୍ତୁ ସାର୍ ସିଏ ତ ମରିଗଲେ !!

ଡାକ୍ତର : କିଏ ମରିଗଲେ ? ଡାକ୍ତର କାହିଁକି ମରିବେ ? ମରିଛନ୍ତି ସେଇ ବୃଦ୍ଧ ବୟସ୍କା ମହିଳା ।

ବନ୍ଧୁ : ମୁଁ କଣ ସାର୍ ଏଇ ସହଜ କଥାଟା ବୁଝିପାରୁନାହିଁ ? ମୋର କହିବାର କଥା, ରୋଗୀ ତ ମଲା—ଉଇଲ୍‌ରେ ପ୍ରଥମେ ଡାକ୍ତରଙ୍କ କଥା ଲେଖାହେଲା କାହିଁକି ?

ଡାକ୍ତର : ଶୁଣ···ଉଇଲ୍‌ରେ କଣ ଲେଖାହୋଇଛି ମୁଁ ପଢ଼ୁଛି ଶୁଣ । ଭଦ୍ରମହିଳା ଲେଖିଛନ୍ତି—"ମୋର ଏ ଉଇଲ୍‌ରେ ମୁଁ ପ୍ରଥମେ ମୋର ଡାକ୍ତର ବନ୍ଧୁଙ୍କ କଥା ଉଲ୍ଲେଖ କରୁଛି । ପ୍ରକୃତରେ ସେ ମୋର କେବଳ ବିଜ୍ଞ ଚିକିତ୍ସକ ନ ଥିଲେ—ଥିଲେ ଶୁଭାକାଂକ୍ଷୀ ବନ୍ଧୁ ।"

ବନ୍ଧୁ : ଅଜ୍ଞା ହଁ, ରୋଗୀ ହେବ ତ ଏମିତି—ଆଉ ଡାକ୍ତର ହେବ ତ ଏମିତି ।···ସେଇଠି କଣ ଲେଖିଛନ୍ତି ଆଜ୍ଞା ?

ଡାକ୍ତର : ଲେଖିଛନ୍ତି—"ମୁଁ ଦୀର୍ଘ ଦିନ ଧରି ରୋଗ ଭୋଗିଆସୁଛି; କିନ୍ତୁ ଏଇ ଡାକ୍ତରଙ୍କ ପାଇଁ ରୋଗର ଯନ୍ତ୍ରଣା କଣ ମୁଁ ଜାଣିନାହିଁ । ଭୀଷଣ ଇନ୍‌ଫ୍ଲୁଏନ୍‌ଜା ଭୋଗିଲେ ସେ ଯେପରି ନିଷ୍ଠାର ସହିତ ଚିକିତ୍ସା କରନ୍ତି, ସାମାନ୍ୟ ମୁଣ୍ଡ ବିନ୍ଧିଲେ ମଧ୍ୟ ସେ ସେଇପରି ନିଷ୍ଠା ଆଉ ସାବଧାନତା ସହ ଚିକିତ୍ସା କରନ୍ତି । କାଳେ ଔଷଧ ଗୋଳମାଳ ହୋଇଯିବ, ସେଥିପାଇଁ ସେ ନିଜେ ବଜାରରୁ ଔଷଧ କିଣି ଆଣି ମତେ ଦିଅନ୍ତି । ରୋଗଗ୍ରସ୍ତ ଶରୀର ଯେନ ମୁଁ କେବଳ ତାଙ୍କର ଦୟାରୁ ଦୀର୍ଘକାଳ ବଞ୍ଚି ରହିଲି । ତାଙ୍କ ପ୍ରତି ମୋର କୃତଜ୍ଞତାର ସୀମା ନାହିଁ । ସେଇ କୃତଜ୍ଞତାର ଚିହ୍ନ ସ୍ୱରୂପ ମୁଁ ଘୋଷଣା କରୁଛି ଯେ ମୋର ମୃତ୍ୟୁ ପରେ ମୋର ସଞ୍ଚିତ ଭଣ୍ଡାରରୁ ସେ କିଛିଅଂଶ ପାଇବେ । ମୋର ଏକ ନମ୍ବର ଟ୍ରେଜେରୀ ବାକ୍ସଟି ମୁଁ ତାଙ୍କ ପାଇଁ ରଖିଗଲି । ଏଥିରେ ଯାହା ରହିଛି, ସେ ତାହା ପୁତ୍ର-ପୌତ୍ରାଦିକ୍ରମେ ଭୋଗକରିପାରିବେ ।"                    ( ଡାକ୍ତର ପଢ଼ା ବନ୍ଦକଲେ )

ବନ୍ଧୁ : ପଢ଼ନ୍ତୁ ସାର୍—ପଢ଼ିଯାନ୍ତୁ—ମୁଁ ମନ ପ୍ରାଣ ଦେଇ ଶୁଣୁଛି । ପଢ଼ନ୍ତୁ ।

ଡାକ୍ତର : ମୋର ଆଉ ପଢ଼ିବାର କିଛି ନାହିଁ—ଏଥର ତମ ପାଳି ।

ବନ୍ଧୁ : ନାଇଁ ଆଜ୍ଞା, ମୁଁ ପାରିବିନାହିଁ । ମୁଁ ଆପଣଙ୍କ ପରି ଏମିତି ପଢ଼ିପାରିବିନାହିଁ ।

ଡାକ୍ତର : ମୁଁ ତମକୁ ପଢ଼ିବାକୁ କହୁ ନାହିଁ । ଶୁଣିଲ ତ, ଭଦ୍ରମହିଳା ତାଙ୍କର ଏକ ନମ୍ବର ଟ୍ରେଜେରୀଟିକୁ ଡାକ୍ତରଙ୍କୁ ଦେଇଯାଇଛନ୍ତି !

ବନ୍ଧୁ : ସେଇଆ ପରା ମୁଁ କହୁଥିଲି ସାର୍ ! ରୋଗୀ ହେବ ତ ଏମିତି !

ଡାକ୍ତର : ଏବେ ବୁଝ ଦେଖି, ତାଙ୍କର ସେ ଏକ ନମ୍ବର ଟ୍ରେଜେଷ୍ଟରେ ଡାକ୍ତରଙ୍କ ପାଇଁ ସେ କଣ ରଖିଯାଇଥିବେ ?

ବଣ୍ଟୁ : ମୁଁ କହିବ ?

ଡାକ୍ତର : ହୁଁ, ବୁଝ ।

ବଣ୍ଟୁ : କାହିଁକ ସାର୍—କାଗଜରେ କଣ ଲେଖା ହୋଇଛ ? ଟ୍ରେଜେଷ୍ଟ କଣ ଖୋଲ ହୋଇଛ ?

ଡାକ୍ତର : କାଗଜରେ ଲେଖା ହୋଇଚ—ଟ୍ରେଜେଷ୍ଟ ଖୋଲାହୋଇଚ···ତେବେ ବି ତୁମେ ବୁଝ ।

ବଣ୍ଟୁ : ବୁଝିପାରୁନାହିଁ ସାର୍—ସତ କହୁଚ ମୁଁ ବୁଝି ପାରୁନାହିଁ ।

ଡାକ୍ତର : ଅନୁମାନ କର ବୁଝ ।

ବଣ୍ଟୁ : ଅନୁମାନ କରି···କବା ଲୋକ ମୁଁ—ଏଭଳ ଗୋଟାଏ ବସ୍ତ୍ୱବସ୍ଥାତ ଘଟଣା ଅନୁମାନ କର କହିପାରିବ !! ଟ୍ରେଜେଷ୍ଟରେ କଣ ଥିବ···ସୁନା ମୋହର ? ହୀରା ଜହରତ୍ ?? ···ନାହିଁ ସାର୍, ପାରିବ ନାହିଁ । ମୁଁ କିଛୁ ଅନୁମାନ କରିପାରୁନ ।

ଡାକ୍ତର : ଆଉ ଟିକିଏ ଚେଷ୍ଟା କରି ଦେଖ—ଅନୁମାନ କର—ବୁଦ୍ଧି ଖଟାଅ ।···ଜଣେ ରୋଗୀ—ଡାକ୍ତର ପାଖରେ ସେ ଗଭୀର କୃତଜ୍ଞ । ଦବାକୁ ଗୁହିଁଲେ ସେ ଅନେକ କିଛୁ ଦେଇଯାଇପାରିବ—ତେବେ ସେ କଣ ରଖିଯାଇଥିବ ?

ବଣ୍ଟୁ : ଇଏ ସାର୍ ତୈରାଶିକ ଅଙ୍କ କଷିଲ ଭଳି କଥା ହଉଚ—ଏତେକୁ ଏତେ ହେଲେ ଏତେକୁ କେତେ ? ମୁଁ ଅଙ୍କରେ ଟିକେ ଦୁର୍ବଳ ଥିଲି—ପାରୁ ନାହିଁ କ ମୋର ଧୈର୍ଯ୍ୟ ରହୁ ନାହିଁ । ରୋଗୀ-ଡାକ୍ତର ଉପାଖ୍ୟାନ କୋଉଠି ଯାଇ ପହଞ୍ଚିଲ, ଦୟାକରି ଚଞ୍ଚଳ କୁହନ୍ତୁ ।

ଡାକ୍ତର : ପାରିଲ ନାହିଁ ତେବେ ? ହଉ ଶୁଣ । ଉଇଲ୍ ପଢ଼ା ହେଲ—ଟ୍ରେଜେଷ୍ଟ ଖୋଲ ହେଲ—

ବଣ୍ଟୁ : ଇସ୍···କଣ ଯେ ଥିବ !!

ଡାକ୍ତର : ସରକାରୀଅଫିସର, ବହୁ ବଶିଷ୍ଟ ଭଦ୍ରବ୍ୟକ୍ତି ଭଦ୍ରମହିଳା ଉପସ୍ଥିତ ଥା'ନ୍ତି । ସମସ୍ତଙ୍କର ଗୋଟାଏ ଆଖି ଡାକ୍ତରଙ୍କ ଉପରେ—ଆଉ ଗୋଟାଏ ଆଖି ଟ୍ରେଜେଷ୍ଟ ଭିତରେ ।

ବଣ୍ଟୁ : ମେଜିକ୍ ! ମେଜିକ୍ ବାକ୍ସ । ମେଜିକ ବାକ୍ସରୁ କ'ଣ ଯେ ବାହାରିବ !! ସମସ୍ତଙ୍କ ମନ-ପ୍ରାଣ ଅଥୟ । ମୋ ମନ ତ ଏଠି ଅଥୟ ହୋଇଉଠୁଚ ।

ଡାକ୍ତର : ହେବା ସ୍ୱାଭାବିକ । ଟ୍ରେଜେଷ୍ଟ ପ୍ରକୃତରେ ମେଜିକ୍ ବାକ୍ସର କାମ ଦେଖାଇଲ । —ବାକ୍ସ ଭର୍ତ୍ତି ।

ବନ୍ଧୁ : ଭର୍ତ୍ତି !!

ଡାକ୍ତର : ଭର୍ତ୍ତି···Full to the brim ! ତିଳ ଧାରଣର ସ୍ଥାନ ନାହିଁ ।

ବନ୍ଧୁ : ଡାକ୍ତରଙ୍କ ଭାଗ୍ୟ !

ଡାକ୍ତର : ନା—ଦୁର୍ଭାଗ୍ୟ ।

ବନ୍ଧୁ : ଦୁର୍ଭାଗ୍ୟ ? ଡ୍ରେଜେଷ୍ଟ ଭର୍ତ୍ତି—ଦୁର୍ଭାଗ୍ୟ କାହିଁକ ? ଡ୍ରେଜେଷ୍ଟରୁ କଣ·· ମାନେ—ମାନେ—ଖାଲି ପଥର ବାହାରିଲା ।

ଡାକ୍ତର : ପଥର ତ କିଛି କାମରେ ଲଗିପାରିଥାନ୍ତା ! ଦୀର୍ଘ ତିରିଶ ପଇଁତିରିଶ ବର୍ଷ ଧରି ଡାକ୍ତର ଯେଉଁସବୁ ଆଉ ଯେତେସବୁ ଔଷଧପତ୍ର ଆଣି ଦେଇଥିଲେ, ସେସବୁ ଯେମିତି ଅକ୍ଷତ ଅବସ୍ଥାରେ ଅତି ସୁନ୍ଦର ଭାବେ ସଜା ହୋଇ ରହିଛି । ଗୋଟିଏ ବି ବୋତଲ ଖୋଲା ହୋଇନି କି ସିଲ୍ ଭଙ୍ଗା ହୋଇନି ।

ବନ୍ଧୁ : ତା' ଅର୍ଥ ରୋଗୀ ଔଷଧ ଖାଇନି ?

ଡାକ୍ତର : ନା ଖାଇନି ।

ବନ୍ଧୁ : ଅଥଚ ତାର ପଚିଶ ବର୍ଷରୁ ପଞ୍ଚାଅଶୀ ବର୍ଷଯାଏ ରୋଗୀ ବଞ୍ଚିଛି !

ଡାକ୍ତର : ବଞ୍ଚିଛି—ଆଉ ମଲାବେଳକୁ ରୋଗୀର ପରମ ହିତୈଷୀ ଡାକ୍ତରଙ୍କୁ ସେଇ ସବୁ ଔଷଧ ପ୍ରୀତି ଉପହାର ଦେଇଯାଇଛି ।···ଡ୍ରେଜେଷ୍ଟ ଭିତରେ ଗ୍ରେଟ ଖଣ୍ଡିଏ କାଗଜ । ସେଥିରେ ଲେଖା ଅଛି—ଯେଉଁ ଡାକ୍ତର ବନ୍ଧୁଙ୍କ ଦୟାରୁ ମୁଁ ଏତେ କାଳ ବଞ୍ଚିରହିଲି, ତାଙ୍କୁ ଏତକ ମୋର ପ୍ରୀତି ଉପହାର ।

ବନ୍ଧୁ : ଇଏ କଣ ହେଲା ସାର୍ !

ଡାକ୍ତର : ସେଇ କଥା ବନ୍ଧୁବାବୁ ! ଯାହା ସବୁ ଡାକ୍ତରଙ୍କ ଭାଗ୍ୟରେ ଏମିତି ଜଣେ ଜଣେ ମଧ୍ୟବୟସ୍କା ମହିଳା ରୋଗୀ ଜୁଟନ୍ତି—

ଯଶୋଦା : (ବାହାରୁ ଖୁବ୍ ନରମ ଗଳାରେ) ଡାକ୍ତରବାବୁ ଅଛନ୍ତି ।

( ଜଣେ ସ୍ତ୍ରୀ ଲୋକର ଗଳା ଶୁଣି ଡାକ୍ତରଙ୍କ ମନରେ ଯେମିତି ଟିକିଏ ଚମକ ଲାଗିଛି । )

ଡାକ୍ତର : (ବନ୍ଧୁକୁ) କିଏ ?

ବନ୍ଧୁ : ଜଣେ ମହିଳା ।

ଡାକ୍ତର : ରୋଗୀ ?

ବନ୍ଧୁ : ହୋଇଥିବେ—ଗଳା କେତେ ନରମ ଦେଖୁନାହାନ୍ତି !

ଡାକ୍ତର : ମହିଳା ଯେ···(ଡରି ଡରି) କଣ ମଧ୍ୟବୟସ୍କା ?

ବନ୍ଧୁ : ଦେଖୁଛି । (ପର୍ଦ୍ଦା ସାମାନ୍ୟ ଆଡ଼େଇ ଦେଖିଲେ)

ବନ୍ଧୁ : ହଁ ସାର୍, ମଧ୍ୟବୟସ୍କା ।

ଡାକ୍ତର : ଟାକ୍ସ...ଟାକ୍ସ...

ବିଶୁ : କଣ ଫେରାଇଦେବ ?

ଡାକ୍ତର : (ହତାଶ ସ୍ୱର) କିଛି ବୁଝି ପାରୁନି । ସେ ଇଂରେଜ ଭଦ୍ରମହିଳା ଯଦି ପୁନର୍ଜନ୍ମ ନେଇ ଏଠିକି ଆସିଥା'ନ୍ତି !!

ଯଶୋଦା : (ପ୍ରବେଶପଥ) ଡାକ୍ତରବାବୁ ଅଛନ୍ତି ?

ଡାକ୍ତର : (ଛେପ ଢୋକି) ଅଛି—ଆସନ୍ତୁ—ପର୍ଦ୍ଦା ଆଡ଼େଇ ଆସନ୍ତୁ ।

[ ସ୍ୱଚ୍ଛଳ ମଧ୍ୟବିତ୍ତ ପରିବାରର ମଧ୍ୟବୟସ୍କା ମହିଳା ଯଶୋଦା ହସ ହସ ମୁହଁରେ ଆସିଲେ । ତାଙ୍କର ବିଶେଷତ୍ୱ ହେଲା ଯେ, ସେ ଏଇ ଡାକ୍ତରଖାନାର ଦୁଇ କର୍ମକର୍ତ୍ତା ଡାକ୍ତରବାବୁ ଓ ବିଶୁ ସହିତ ଖୁବ୍ ନରମ ମଧୁର ଗଳାରେ କଥା କହିବେ ଓ ଅନ୍ୟମାନଙ୍କ ସହିତ ଖୁବ୍ କଡ଼ା ଓ ତୀବ୍ର ଗଳାରେ କଥା କହିବେ । ]

ଯଶୋଦା : ନମସ୍କାର ।

ଡାକ୍ତର : ନମସ୍କାର...ଆପଣ...

ଯଶୋଦା : ଆପଣ ଏଠିକି ନୂଆ ଆସିଚନ୍ତି ତ, ମତେ ଜାଣିନାହାନ୍ତି ।

ଡାକ୍ତର : ନୂଆ ? ନାହିଁ ତ । ମୋର ଏଠିକି ଆସିବା...ବିଶୁବାବୁ, ମୋର ଏଠିକି ଆସିବା କେତେ ଦିନ ହେଲା ?

ବିଶୁ : ବର୍ଷେ ! ଦୋଳପୂର୍ଣ୍ଣିମାରୁ ଦୋଳପୂର୍ଣ୍ଣିମା ବର୍ଷେ ହେଲା ।

ଡାକ୍ତର : ହଁ, ବର୍ଷେ ହେଲା ।

ଯଶୋଦା : ବର୍ଷେ ଆଉ କେତେ ଯେ ! ଏଇ ପରା କମ୍ପାଉଣ୍ଡର ବାବୁ କହିଲେ, ଏ ଦୋଳରୁ ସେ ଦୋଳ ବର୍ଷେ । ଲୁଗାପଟାରୁ ଅବିର ଦାଗ ଲିଭିନଥିବ, ବର୍ଷେ ପୂରିଯିବ । (କଡ଼ା ଗଳାରେ ଡାକଲେ) ରାଧା...ରାଧା !

ରାଧା : (ବାହାରୁ) ମା !

ଯଶୋଦା : ଭିତରକୁ ଆ । (ଡାକ୍ତରଙ୍କୁ) ସେଠି ସେ ଟବ୍‌ରେ ପାଣି ଅଛି ନା ? ମୁଁ ଟିକିଏ ମୁହଁ ହାତ ଧୋଇବି...ଯାଉଚି ! (ଭିତରକୁ ଗଲେ)

ଡାକ୍ତର : ବିଶୁବାବୁ !

ବିଶୁ : ସାର୍ !

ଡାକ୍ତର : କଥା କଣ ? ଏ ନରମ ଆଉ କଡ଼ା ?

ବିଶୁ : ସେଇଆ ତ...

ଡାକ୍ତର : ଏ ରାଧା କଏ ଦେଖିଲ !

ବଂଶୁ : (ପର୍ଦ୍ଦା ଆଢ଼େଇ ଦେଖି) ଦେଖିଲ ।

ଡାକ୍ତର : ରୋଗୀ ?

ବଂଶୁ : ଜଣାପଡ଼ୁ ନାହିଁ ।

ଡାକ୍ତର : ମଧ୍ୟବୟସ୍କା ?

ବଂଶୁ : ନା, ଅଳ୍ପବୟସ୍କା । [ ଯଶୋଦା ଆସିଲେ ]

ଯଶୋଦା : ବେଶ୍ ଥଣ୍ଡା—ବେଶ୍ ମିଠା । ଖୁବ ଭଲ ପାଣି ଏଠି ଆପଣଙ୍କର ।

ଡାକ୍ତର : ପାଣି ଭଲ—କିନ୍ତୁ କୂଅଟା ଆମର ନୁହେଁ ।

ବଂଶୁ : କୂଅ ସୁରବାବୁଙ୍କର ।

ଯଶୋଦା : ଓଃ ଆରେ, ରାଧା କାହିଁ ଗଲା ।? ( ଡାକଲେ) ରାଧା—ରାଧା !

ରାଧା : (ବାହାରୁ) ମା' !

ଯଶୋଦା : କହ୍ନଲ ଭିତରକୁ ଆ—ସେଠି ମା' ମା' କଣ ହେଉଚୁ ?
[ ରାଧା ଆସିଲା । ବେଶଭୂଷା ସାଧାରଣ ]
କଣ କରୁଥିଲୁ ସେଠି ?

ରାଧା : ଇଏ···ଇଏ ସବୁ ମତେ ମନାକଲେ ଆସିବାକୁ ।

ଯଶୋଦା : କଏ ?
[ ଏକାବେଳକେ ତିନିଜଣ ପୁରୁଷ ରୋଗୀ ଭିତରକୁ ପଶିଆସିଲେ । ]

ପ୍ରଥମ, ଦ୍ୱିତୀୟ, ତୃତୀୟ : (ଡାକ୍ତରଙ୍କୁ) ନମସ୍କାର ଆଜ୍ଞା !

ଡାକ୍ତର : ନମସ୍କାର ।

ଯଶୋଦା : କଏ ତତେ ମନାକଲେ ଆସିବାକୁ ?

ରାଧା : ଇଏ ।

ପ୍ରଥମ, ଦ୍ୱିତୀୟ, ତୃତୀୟ : ( ବଂଶୁକୁ ) ନମସ୍କାର କମ୍ପାଉଣ୍ଡର ବାବୁ !

ବଂଶୁ : ନମସ୍କାର, ନମସ୍କାର ।

ଯଶୋଦା : ଆଲୋ କଏ ?

ରାଧା : (ଦ୍ୱିତୀୟ ରୋଗୀକୁ ଲକ୍ଷ୍ୟକରି) ଏଇ ସେଇ ସବୁ !

ଦ୍ୱିତୀୟ : ( ହଠାତ୍ ଜରରେ କମ୍ପି ) ଓହୋ ହୋ ! ଦେହରେ ମେଲେରିଆ ଥିଲା, ଭଲ ହୋଇଥିଲା । ମେଲେରିଆ ଉପରେ ଆଉ କୋଉ ଜର ପାଖ ପଶୁ ନ ଥିଲେ । ମେଲେରିଆ କମିଗଲା—ତା' ଜାଗାରେ ଦଶ କି ପଚିଶ ଜର ଆସି ବସାବାନ୍ଧିଲେଣି । ଓହୋ ହୋ···

ଡାକ୍ତର : ଆପଣଙ୍କୁ ଜର ?

ଦ୍ୱିତୀୟ : ଆଜ୍ଞା, ମତେ ଟିକିଏ ଚଞ୍ଚଳ ବିଦାକରନ୍ତୁ ।

ଡାକ୍ତର : ଆପଣମାନେ ସମସ୍ତେ ଭିତରକୁ ଚାଲିଆସିଲେ—ବସିବାର ସୁବିଧା ନାହିଁ ।

ବନ୍ଧୁ : ବାହାରେ ବି ବସିବାରେ ସୁବିଧା ନାହିଁ ସାର୍ ! ଆଉ ପାଞ୍ଚ ଜଣ ଆସି ଜାଗା ଦଖଲ କରିଗଲେଣି ।

ଡାକ୍ତର : ଆଚ୍ଛା, ଆଚ୍ଛା, ଆପଣମାନେ···ଇଏ ବନ୍ଧୁବାବୁ !

ବନ୍ଧୁ : ହଁ, ବସନ୍ତୁ ଆପଣମାନେ ! ଏଇ ବେଞ୍ଚଟାରେ ଟିକିଏ ଜକାଜକି ହୋଇ ବସନ୍ତୁ ।
( ଯଶୋଦା ଠିଆହୋଇଥାନ୍ତି )

ଡାକ୍ତର : ଆପଣ ଆଜ୍ଞା ଠିଆ ହୋଇ ରହିଲେ କାହିଁକି···ଏଇ ଚୌକିରେ ଆପଣ ବସନ୍ତୁ ।

ଯଶୋଦା : ହଉ !···ରାଧା, ସିଏ ମନାକଲେ ବୋଲି ତୁ ତାଙ୍କ ମନା କାହିଁକି ମାନିଲୁ ? ଏଁ··· ମାନିଲୁ କାହିଁକି ?

ଦ୍ୱିତୀୟ : ଓହୋ—ହୋ କି କମ୍ପରେ ବାବା !

ପ୍ରଥମ : ଆପଣଙ୍କ କମ୍ପରେ ଆମେ ବି ଏଠି କମ୍ପିଗଲୁଣି ।

ଦ୍ୱିତୀୟ : ଟିକିଏ···ଟିକିଏ ଆଜ୍ଞା କରି ମାଡ଼ି ବସନ୍ତୁ, ନଇଲେ ମୁଁ ଏପାଖରେ ଖସିପଡ଼ିବି ।

ତୃତୀୟ : ଆପଣ ବରଂ ଏ'ପାଖରୁ ମତେ ଜାକି ଆଣନ୍ତୁ ଯେ···

ଯଶୋଦା : (ରାଧାକୁ) କହିଲେ ମୁଁ ତୋତେ କଣ ପଚାରୁଚି ପରା ?

ଦ୍ୱିତୀୟ : ବାବାରେ !

ରାଧା : ମୁଁ କେମିତି ଜାଣିବି, କାହା କଥା ମାନିବି ନମାନିବି ?

ଦ୍ୱିତୀୟ : ( ସୁର୍ ଧରି ) "ମାନେ ନା—ମାନେନା ମନା ସେ—ମାନେ ନା···" ହାସ୍ସ ହାସ୍ସ, ଜର ହେଲେ ପୁଣି ଏମିତି ଗୀତ ଗାଇବାକୁ ମନ ହୁଏ !

ଡାକ୍ତର : ବନ୍ଧୁବାବୁ !

ବନ୍ଧୁ : ଏମିତି ହୋଇଥାଏ ଆଜ୍ଞା ! ସେଦିନ ମତେ ଦେଖିଲେ ନାହିଁ, ଜର ଶହେ ଦୁଇ ଯେମିତି ଡେଇଁଚି, ଆପଣଙ୍କ ସାମନାରେ ସବୁ ଲାଜ ସରମ ଛାଡ଼ି ସେଇ ଫିଲ୍ମ ଗୀତଟା ପୂରା ସୁର ଧରି ଗାଇବା ଆରମ୍ଭ କରିଦେଲି ।

ଯଶୋଦା : ଆପଣ ରାଧାକୁ କାହିଁକି ମନାକଲେ ଭିତରକୁ ଆସିବାକୁ ?

ବନ୍ଧୁ : ମୁଁ—ମୁଁ ମନାକଲି !!

ଯଶୋଦା : ନା—ନା—ଆପଣ ନୁହନ୍ତି । ମୁଁ ପୁଣି ଆପଣଙ୍କୁ କହିବ ? ଏଇ ସିଏ···

ପ୍ରଥମ : ମୁଁ ! ମୁଁ କାହିଁକି କାହାକୁ କଣ କହିବ ? କି କଥା ଇଏ ! ( ତୃତୀୟଙ୍କୁ ) ଆପଣ ମନା କରିଥିଲେ କି ?

ତୃତୀୟ : ମୁଁ ? ମୋ ସ୍ତ୍ରୀକୁ ତ ମୁଁ ଆଜି ଯାଏ କୋଉ କଥାରେ କିଛି ମନାକରିନାହିଁ— ଏଠି କାହିଁକି ସେ କାମ କରିବାକୁ ଯିବ ? (ଦ୍ୱିତୀୟଙ୍କୁ) କେଜାଣି ସେ ହୋଇଥିବେ ।

ଦ୍ୱିତୀୟ : ଏଁ ! ହଁ ହଁ । ସିଏ ମତେ କହୁଚନ୍ତି ।

ଯଶୋଦା : ( ଦ୍ୱିତୀୟଙ୍କୁ ) ଆପଣ ତ ସେଠି ବାହାରେ ବସିଥିଲବେଳେ କମ୍ପ ଆସି ନ ଥିଲା ?

ଦ୍ୱିତୀୟ : ସେ କଥା ଡାକ୍ତରବାବୁ କହିବେ । ଭିତରକମ୍ପ ଇଏ—କେତେବେଳେ ଆସେ —କାହିଁକି ଆସେ···

ଯଶୋଦା : କାହିଁକି ଆପଣ ମନାକଲେ ତାକୁ ଆସିବାକୁ ?

ଦ୍ୱିତୀୟ : ଓହୋ ହୋ—

ଡାକ୍ତର : ( ଅସହାୟ ହୋଇ ) ବଶୁବାବୁ !

ବଶୁ : ( ଦ୍ୱିତୀୟଙ୍କୁ ) ଆପଣ କହୁନାହାନ୍ତି କାହିଁକି ତାଙ୍କୁ ମନାକଲେ ?

ଦ୍ୱିତୀୟ : କଥା କଣ କି ଆଜ୍ଞା—ମୁଁ ତାଙ୍କୁ କହିଲି, ତୁମେ ତ ରୋଗୀ ନୁହଁ—ଭିତରକୁ ଯାଇ କାହିଁକି ମିଛଟାରେ ଭିଡ଼ କରିବ—ଡାକ୍ତର ବାବୁ ବିରକ୍ତ ହେବେ ।

ଯଶୋଦା : ଆପଣ କେମିତି ଜାଣିଲେ ସେ ରୋଗୀ ନୁହେଁ ? କେମିତି ଜାଣିଲେ ?

ଦ୍ୱିତୀୟ : ସେ କଥା ଡାକ୍ତରବାବୁ କୁହନ୍ତୁ । ( କମ୍ପ ) ମେଲେରିଆ ତ ଆମ ଏ ଅଞ୍ଚଳରେ ନାହିଁ କୁଆଡ଼େ ଆସିଲା ଏ କମ୍ପ ?

ଡାକ୍ତର : ( ଯଶୋଦାଙ୍କୁ ) ତାଙ୍କର କଣ ହୋଇଚି ଆଜ୍ଞା ?

ଯଶୋଦା : ରାଧାର ?

ଡାକ୍ତର : ଆଜ୍ଞା !

ଯଶୋଦା : ନାଇଁ, ତାର କିଛି ହୋଇନି ଯେ, ସେ ମୋ' ସାଙ୍ଗରେ ଆସିଚି । ମା' ଛେଉଣ୍ଡି ଝିଅଟି—ପିଲାଦିନୁ ଆସି ଏଡ଼େଟିଏ ହେଲାଣି, ମୋରି ପାଖରେ ଅଛି । ସବୁ କଥାରେ ଧୁରନ୍ଧର । ରାଧା—

ରାଧା : ମା' !

ଯଶୋଦା : ଡାକ୍ତରବାବୁ କମ୍ପାଉଣ୍ଡରବାବୁ ସମସ୍ତଙ୍କୁ ନମସ୍କାର କର ।

( ରାଧା ମଥା ନୁଆଁଇ ନମସ୍କାର କଲା )

ବଶୁ : ହଁ—ହଁ—ନମସ୍କାର ନମସ୍କାର ।

ଡାକ୍ତର : ରାଧା ତ ରୋଗୀ ନୁହଁ—ଏଠି ବସିବାର ସୁବିଧା ନାହିଁ—

ଦ୍ୱିତୀୟ : ଦେଖିଲେ ତ, ମୁଁ ଯାହା କହୁଥିଲି ଡାକ୍ତରବାବୁ ଠିକ୍ ସେଇଆ କହିଲେ ।

ବନ୍ଧୁ : ଆପଣଙ୍କ କଣ ଗ୍ରହଣର ପଦ୍ମ ?

ଯଶୋଦା : ଡାକ୍ତରବାବୁ—

ଡାକ୍ତର : କୁହନ୍ତୁ ।

ଯଶୋଦା : ରାଧା ଏଇଠି ରହୁ । ସେ ଏଇଠି ମୋ ପଛରେ ଠିଆହବ—କଣ କହୁଚନ୍ତି ?

ଡାକ୍ତର : ରହୁ···ହୁଁ, ଏଥର କହନ୍ତୁ ଆପଣମାନେ—

ପ୍ରଥମ : ମୁଁ କହୁଥିଲି କଣ କି ଆଜ୍ଞା···

ଦ୍ୱିତୀୟ : ମୁଁ କହୁଥିଲି କଣ କି ଆଜ୍ଞା··· ( ପ୍ରାୟ ଏକସଙ୍ଗରେ )

ତୃତୀୟ : ମୁଁ କହୁଥିଲି କଣ କି ଆଜ୍ଞା···

ଯଶୋଦା : ମୁଁ ଆସିଥିଲି ଡାକ୍ତରବାବୁ···

ପ୍ରଥମ : ବର୍ଷେରୁ ଉପର ହେଲାଣି···

ଦ୍ୱିତୀୟ : ଜର ତ ଯାହା ହବାର ହେଇଗଲା···

ତୃତୀୟ : ଇଏ ଉନମାସ ପୂର୍ବ ଗୃଣମାସ ଗ୍ଲଲା···

ଡାକ୍ତର : ( ହସି ) ମୁଁ ବୁଝିପାରୁନି ଆଜି କଣ ହେଉଛି···

ସମସ୍ତେ : କଣ ହେଇଚ ଆଜ୍ଞା ?

ଡାକ୍ତର : ଗ୍ରହନ୍ତୁ, କିଛି ହେଇନି; କିନ୍ତୁ ଆପଣମାନେ ଯଦି ସମସ୍ତେ ଏକାବେଳକେ ସବୁ କଥା କହି ବସିବେ···

ଯଶୋଦା : ଡାକ୍ତର ଯିଏ, ସିଏ ସବୁ କଥା ଭଲ ଭାବେ ବୁଝିଶୁଝି ଚିକିତ୍ସା କରିବେ । ତାଙ୍କୁ ବିରକ୍ତକଲେ ସେ ହଇରାଣ ହେବେ--ଏଣେ ରୋଗୀର କ୍ଷତି । ନା କଣ ଡାକ୍ତର ବାବୁ, ମୁଁ ଠିକ୍ କହୁଚି ତ ?

ବନ୍ଧୁ : ଇଏତ ହାତ ଶଙ୍ଖା ଦର୍ପଣ । ଏଥିରେ ଆଉ ସନ୍ଦେହ କଣ ଅଛି ?

ପ୍ରଥମ : ହଁ, ହଁ ଠିକ୍ କଥା । ଡାକ୍ତର ବାବୁ ଆଜ୍ଞା—ଆପଣ ଜଣ ଜଣକ କଥା ବୁଝନ୍ତୁ ।

ଯଶୋଦା : ଏଇ ଆଜ୍ଞା, ଟିକିଏ ଏଣେ ଗ୍ୱହାନ୍ତୁ ।

ଡାକ୍ତର : କୁହନ୍ତୁ । ଆଗେ ଆପଣଙ୍କ କାମ ଶେଷ କରେ । କୁହନ୍ତୁ କଣ ହେଇଚି ?

ଯଶୋଦା : ଆପଣ କେଜାଣି ତାଙ୍କ ନାଁ ଜାଣିଥିବେ—

ଡାକ୍ତର : ଆପଣ କୁହନ୍ତୁ ।

ଯଶୋଦା : ରାଧା, କହିଦେ ନାଁଟା ।

ରାଧା : ( ବୁଝିନପାରି ) ମା' ?

ଯଶୋଦା : ଆଲୋ ବୋକି—ବାବୁଙ୍କ ନାଁ କହ ।

ଡାକ୍ତର : ଆପଣ, ଆପଣଙ୍କ ସ୍ୱାମୀଙ୍କ କଥା କହୁଛନ୍ତି ?

ଯଶୋଦା : ହଁ ।

ଡାକ୍ତର : ତାଙ୍କ ଦେହ ଖରାପ ଅଛି ?

ଯଶୋଦା : ହଁ, ଜ୍ୱର ଛାଡ଼ିଗଲେଣି, ଜ୍ୱର କଷ୍ଟ ପାଇଲେଣି । ରାଧା, ବାବୁଙ୍କ ନାଁ କହ ।
ରାଧା : ଶ୍ରୀ ନରହରି ଦାସ ।
ଯଶୋଦା : ହଁ, ସେଇଆ ।
ପ୍ରଥମ : ଆଜ୍ଞା ଆଜ୍ଞା—ସବୁ ଗୋଳମାଳ ହୋଇଗଲା ।
ଡାକ୍ତର : ଆପଣଙ୍କର ପୁଣି କ'ଣ ହେଲା ?
ଯଶୋଦା : ଡାକ୍ତରବାବୁ କହୁଚନ୍ତି ଜଣଜଣଙ୍କ କଥା ବୁଝିବେ ।
ପ୍ରଥମ : ଏଠି ଘଣ୍ଟ ଦୁ'ଜଣ ଜଣେ ହେଇଯାଉଚନ୍ତି ।
ଡାକ୍ତର : ମାନେ ?
ପ୍ରଥମ : ମୋ ନାଁଟା ଆଉ ଖଣ୍ଡେ କାଗଜର ଟିପି ରଖନ୍ତୁ ଆଜ୍ଞା !
ଡାକ୍ତର : କାହିଁକି ?
ପ୍ରଥମ : ହାତ ଯୋଡ଼ୁଚି ଆଜ୍ଞା, ଟିପି ରଖନ୍ତୁ, ନଇଲେ ସବୁ ଗୋଳମାଳ ହେଇଯିବ ।
ଡାକ୍ତର : କଣ ଆପଣଙ୍କ ନାଁ ?
ପ୍ରଥମ : ନରହରି ଦାଶ—ତାଳବ୍ୟ ଶ—ଦନ୍ତ୍ୟ ସ ନୁହେଁ—ଅଲଗା ଟିପି ରଖନ୍ତୁ । ତାଙ୍କର କ ରୋଗ—ମୋର କ ରୋଗ—ଟିପି ରଖନ୍ତୁ—ତାଳବ୍ୟ ଶ ।
ଦ୍ୱିତୀୟ : ଡାକ୍ତରବାବୁ ଇଂରେଜୀରେ ଲେଖିଚନ୍ତି—ଏଠି ଦନ୍ତ୍ୟ ସ ତାଳବ୍ୟ ଶ ସବୁ ସମାନ ।
ଯଶୋଦା : କଣ ସବୁ ସମାନ ? ଆପଣ କଏ ସବୁ ସମାନ କରିଦବାକୁ ? ଦେଖୁଚନ୍ତି ତ ଡାକ୍ତରବାବୁ ?
ଡାକ୍ତର : ବିଶୁବାବୁ !!
ବିଶୁ : ବୁଝିପାରୁନାହାନ୍ତି ସାର୍ ? ତାଙ୍କର ତାଙ୍କଙ୍କ ନାଁ ନରହରି ଦାସ । ଆଉ ସ୍ୱାଙ୍କର ସ୍ୱାଙ୍କ ନିଜ ନାଁ ନରହରି ଦାସ ।
ଡାକ୍ତର : ଆରେ ବାବୁ, ମୁଁ ସବୁ ବୁଝୁଚି, ସବୁ ଜାଣୁଚି । କିନ୍ତୁ···
ଯଶୋଦା : ଡାକ୍ତର ବାବୁ···
ଡାକ୍ତର : କୁହନ୍ତୁ ।
ଯଶୋଦା : ଆପଣ ଏଙ୍କ ନାଁ ଆଉ ତାଙ୍କ ନାଁ ସବୁ ସମାନ କରିଦେବେ ?
ଡାକ୍ତର : ନାଁ ସିନା ସମାନ—ହେଲେ ରୋଗ ସମାନ ନୁହେଁ କି ରୋଗୀ ସମାନ ନୁହେ । ଆପଣ ଭୟ କରନ୍ତୁ ନାହିଁ, କୁହନ୍ତୁ କ'ଣ ହୋଇଚି ?
ଯଶୋଦା : ପହିଲେ ଜର ହେଲା ।
ଡାକ୍ତର : ହଁ, ଜର ହେଲା ।
ଯଶୋଦା : ସେଇଠୁ ଜର ଛାଡ଼ିଲା ।
ଡାକ୍ତର : ଭଲ କଥା ।
ଯଶୋଦା : ପୁଣି ଜର ହେଲା ।

ଡାକ୍ତର : ବେଶ୍ ।
ଯଶୋଦା : ପୁଣି ଜର ଗ୍ଭଡ଼ିଲ ।
ଡାକ୍ତର : ଇଏତ ଅତି ଉତ୍ତମ କଥା । ଆପଣ ଅଉ ଅପିଚନ୍ତ କାହିଁକି ?
ବଶୁ : ପୁଣି କାଲେ ଜର ହବ ।
ଯଶୋଦା : ହେଲା ତ' ହେଉଚ, ପୁଣି ଜର ହେଲା ।
ଡାକ୍ତର : କେବେ ?
ଯଶୋଦା : କାଲି ରାତିରେ ।
ଡାକ୍ତର : କାଲି ରାତିରୁ ଏ ଯୋଉ ଜର ହେଉଚ, ସେ ଜର ଆଉ ଗ୍ଭଡ଼ି ନାହିଁ ?
ଯଶୋଦା : ଗ୍ଭଡ଼ିଚ ।
ଡାକ୍ତର : କେତେବେଳେ ଗ୍ଭଡ଼ିଲା ?
ଯଶୋଦା : ଏଇ ··ଆଜ ସକାଳେ ।
ବଶୁ : ମୁଁ ତ ସେଇ କଥା କହୁଥିଲି—ପୁଣି କାଲେ ଆଜ ରାତିରେ ଜର ହେବ ।
ଦ୍ୱିଜସ୍ୱ : ଆଜ ରାତିରେ ଜର ହେଲେ କାଲି ସକାଳେ ପୁଣି ଗ୍ଭଡ଼ିଯିବ ।
ଡାକ୍ତର : ଆପଣ ଟିକିଏ ଚୁପ ହୋଇ ବସନ୍ତୁ । ମୁଁ ୟାଁଙ୍କ କାମଟା ଶେଷ କରିଦିଏଁ ।
ଦ୍ୱିଜସ୍ୱ : ହଉ ଆଜ୍ଞା !
ଡାକ୍ତର : ଆଚ୍ଛା କୁହନ୍ତୁ ତ, କାଲି ରାତିରେ କେତେ ଜର ହୋଇଥିଲା ?
ଯଶୋଦା : ବହୁତ ଜର ।
ଡାକ୍ତର : ମପା ହୋଇଥିଲା ?
ଯଶୋଦା : ହଁ ।
ଡାକ୍ତର : ଥର୍ମୋମିଟର୍‌ରେ ଜର ମପାହୋଇଥିଲା ?
ଯଶୋଦା : ହଁ, ସିଏ ନିଜେ ମାପିଥିଲେ ।
ଡାକ୍ତର : ଜର କେତେ ଥିଲା ?
ଯଶୋଦା : ସବୁ ଟିପା ହୋଇଚ । ମୁଁ ନିଜେ ଟିପିଚ ।···ରାଧା, ଟିପା କାଗଜଟା ଦେ'···
ଦେ ଚଞ୍ଚଳ ।

( ରାଧା କାଗଜ ଦେଲା )

ହଁ, ଏଇ ଟିପା । ନିଅନ୍ତୁ ।
ଡାକ୍ତର : (କାଗଜ ଦେଖି) ହୁଁ । ତିନଥର ଟେମ୍ପରେଚର୍ ନିଆହେଇଚ ?
ଯଶୋଦା : ଆଜ୍ଞା !
ଡାକ୍ତର : ଥରେ ଶଏଏକ, ଥରେ ଶଏ ପଏଣ୍ଟ ପାଞ୍ଚ, ଆଉ ଥରେ ··ଏଁ !! ଏ କ'ଣ ?
ଯଶୋଦା : ସେଇଟା ରାତି ଅଧବେଳକୁ ମପାହୋଇଥିଲା । ସେତେବେଳକୁ ବେଶି ଜର ।

ଡାକ୍ତର : ବେଶି ଜର ଯେ; କିନ୍ତୁ ଏଠି ଏ ଯାହା ଟିପା ହୋଇଚ…! ଏ କେଉଁ ଥର୍ମୋମିଟର୍‌ରେ ମପା ହୋଇଥିଲା ?

ବନ୍ଧୁ : କେତେ ଉଠିଚ ଆଜ୍ଞା ?

ଡାକ୍ତର : ଶହେ କୋଡ଼ିଏ ।

ବନ୍ଧୁ : ଏଁ !!

ଯଶୋଦା : ନାଇଁ ଆଜ୍ଞା, ହେଇଥିବ । ରାତି ଅଧକୁ ଜର ବଢ଼ିଲା । ମୁଁ ଡାକ୍ତର ଡାକିବାକୁ କହିଲି—ସିଏ ମନାକଲେ ।

ଡାକ୍ତର : ଶହେ କୋଡ଼ିଏ ଜରରେ ଡାକ୍ତର ଯାଇ କ'ଣ କରିବ ? ସେଥିରେ ତ ଘରଦ୍ୱାର ଜଳିବା କଥା ।

ବନ୍ଧୁ : ହଁ, ସେତେବେଳେ ତ ଲୋକବାକ ଡାକି କୂଅ ପୋଖରୀରୁ ପାଣି ବୁହାଇ ଘରଦ୍ୱାରରେ ଢାଳିବା କଥା ।

ଡାକ୍ତର : ଏ ଟିପା ନିଶ୍ଚୟ ଆପଣଙ୍କର ଭୁଲ !

ଯଶୋଦା : ଭୁଲ ! ରାଧା, ଅଧରାତିରେ ବାବୁଙ୍କର ଏ ଜର କେତେ ମପାହୋଇଥିଲା ?

ରାଧା : ଶହେ ଦୁଇ ।

ଯଶୋଦା : ତୁ କେମିତି ଜାଣିଲୁ ଶହେ ଦୁଇ ?

ରାଧା : ବାବୁ ନିଜେ କହିଲେ—ତମେ ଲେଖିଲ । ଆଉ ତ ରାତିରେ ମପାହୋଇନାହିଁ ।

ଡାକ୍ତର : ତା'ହେଲେ ଜର ଶହେ ଦୁଇ ?

ଯଶୋଦା : ହଁ ଆଜ୍ଞା, ଶହେ ଦୁଇ । ମୁଁ ଭୁଲ୍‌ରେ ଶହେ କୋଡ଼ିଏ ଲେଖିଦେଇଥିଲି ।

ପ୍ରଥମ : ଟିକିଏ ନଜର ରଖନ୍ତୁ ଆଜ୍ଞା ! ଭୁଲ୍‌ରେ କାଳେ ମୋ ଆଡ଼େ ଶହେ କୋଡ଼ିଏ ଉଠିଯିବ । · ମୋ ନାଁ ଟା…

ଡାକ୍ତର : ଜାଣେ ।

ପ୍ରଥମ : ହଁ ଆଜ୍ଞା, ଚାଲିବେ ଣ' ।

ଡାକ୍ତର : ଆପଣ ଟିକିଏ ସ୍ଥିର ହୋଇ ବସନ୍ତୁ । ମୁଁ ସ୍ୱାଙ୍କ କାମଟା ସାରିଦିଏଁ—ଆପଣଙ୍କେ ଚାଲିବେ ଣ' କଥା ବୁଝିବି ।

ପ୍ରଥମ : ଆଜ୍ଞା !

ଡାକ୍ତର : ( ଯଶୋଦାଙ୍କୁ ) ଆଜ୍ଞା କୁହନ୍ତୁ ତ, ଏ ଯେଉଁ ଜର ହେଲା, ପ୍ରଥମେ କେବେ ହେଲା ?

ଯଶୋଦା : କେଉଁ ଜର ?

ଡାକ୍ତର : ଏଇ ଯେଉଁ ଜର କଥା ଏଠି ଆପଣ କହିଗଲେ ?

ଯଶୋଦା : ( ରହି ରହି ) ଜ…ର…

ଡାକ୍ତର : ବୁଝିପାରୁ ନାହାନ୍ତି…ଏଇ ଯେଉଁ ଜର ହେଲା ଲାଗିଲା—ହେଲା ଲାଗିଲା ?

ଯଶୋଦା : ସିଏ ତ କେବେଠୁଁ ହେଲଣି ।

ଡାକ୍ତର : କୁହନ୍ତୁ କେବେଠୁଁ ? ସାତ ଆଠ ଦିନ ?

ଯଶୋଦା : ନା—ସାତ ଆଠଦିନ କଣ କହୁଚନ୍ତି—ସାତ ଆଠ ବରଷ ହେବ ।

ଡାକ୍ତର : ଆପଣ ବୋଧହୁଏ ଠିକ୍ ବୁଝିପାରୁ ନାହାନ୍ତି । ଏଇ ଯେଉଁ ଜର କଥା ମତେ ବର୍ତ୍ତମାନ ଆପଣ କହୁଲେ···

ଯଶୋଦା : ସେଇ ଜର ତ ! ସାତ ଆଠ ବରଷ ତଳେ ହୋଇଥିଲା ?···ରାଧା, ବାବୁ ଦୁଇଜଣ ଗୁଡ଼ୁ ଘରେ ଆସି ରହିବା କେତେ ବର୍ଷ ହେଲାଣି ?

ରାଧା : ସାତ ଆଠ ବର୍ଷ ହବ ।

ଯଶୋଦା : ଠିକ୍ । ବୁଝିଲେନା ଡାକ୍ତର ବାବୁ, ସେତିକବେଳେ ତାଙ୍କୁ ଜର ଦି'ଥର ହୋଇ ଦି'ଥର ଗୁଡ଼ୁଥିଲା ।

ଡାକ୍ତର : ଆଉ ମଝିରେ ଜର ହେଇନଥିଲା ?

ଯଶୋଦା : ନା—ଯାହା କାଲି ହେଇ ଆଜ ସକାଳୁ ଗୁଡ଼ିଲା ।

ଡାକ୍ତର : ଆଜ ତା'ହେଲେ ଆସିଲେ କାହିଁକି ? ଆଉ ଦିନେ ଦି'ଦିନ ଅପେକ୍ଷା କରି ଅବସ୍ଥା ଦେଖି ଆସିପାରିଥା'ନ୍ତେ ।

ଯଶୋଦା : ଖାଲି କଣ ସେତିକି ?

ଡାକ୍ତର : ଆଉ ପୁଣି କଣ ?

ଯଶୋଦା : କାହିଁରେ କଣ ଅଛୁ ?

ଡାକ୍ତର : କୁହନ୍ତୁ ।

ଯଶୋଦା : ଗୋଡ଼ ଗଣ୍ଠି ଟା ଫୁଲିଚ ।

ଡାକ୍ତର : କେବେ ଫୁଲିଲା ?

ଯଶୋଦା : ତାଙ୍କ ପିଲାଦିନୁ ।

ଡାକ୍ତର : ତାଙ୍କ ପିଲାଦିନ କଥା ବର୍ତ୍ତମାନ କହୁଲେ ମୁଁ କ ଚିକିତ୍ସା କରିବ ? ବର୍ତ୍ତମାନ ରୋଗ କଣ ହୋଇଚ ଦୟାକରି କୁହନ୍ତୁ ।

ଯଶୋଦା : ଆପଣ ବିରକ୍ତ ହଉଚନ୍ତି କି ?

ଡାକ୍ତର : ନା । ଆଉ କଣ ହେଇଚ କହନ୍ତୁ ।

ଯଶୋଦା : ଅଣ୍ଟା ଦରଜ ହଉଚ ।

ଡାକ୍ତର : ତା'ପରେ ?

ଯଶୋଦା : ଅଧାକପାଳ ବିନ୍ଧୁଚ ।

ଡାକ୍ତର : ବେଶ୍···ବଣ୍ଟୁ ବାବୁ—

ବଣ୍ଟୁ : ସାର୍ ।

ଡାକ୍ତର : ଏଜ କଥା···ହଁ, ବୟସ କେତେ ?

ଯଶୋଦା : ବୟସ ?

ବଶୁ : ଡାକ୍ତରବାବୁ ବାବୁଙ୍କ ବୟସ କଥା ପଚାରୁଛନ୍ତି ।

ଯଶୋଦା : ମୁଁ କଣ ସେ କଥା ବୁଝିପାରୁନାହିଁ ? ଟିକଏ ଭାବିଲେ ତ କହିବ ।···ରାଧା—

ଡାକ୍ତର : ରାଧାକୁ କଣ ପଚାରୁଚନ୍ତି···ଆପଣ ଅନୁମାନ କରି କୁହନ୍ତୁ ।

ଯଶୋଦା : ମୁଁ ରାଧାକୁ ସେ କଥା ପଚାରୁନଥିଲି ।···ତାଙ୍କ ବୟସ···

ଡାକ୍ତର : କେତେ କୁହନ୍ତୁ ।

ଯଶୋଦା : ବୟସ ତାଙ୍କ ବେଶି ହେବନାହିଁ ।

ଡାକ୍ତର : ପଚାଶ ପାଖାପାଖି ?

ଯଶୋଦା : ହେଇଥିବ । ହେଲେ ପଚାଶ ଏ ପାଖରେ, ସେ ପାଖରେ ନୁହେଁ ।

( ଡାକ୍ତର ବ୍ୟବସ୍ଥାପତ୍ର ଲେଖିବା ଆରମ୍ଭକଲେ )

ଡାକ୍ତର : ଅଚ୍ଛା···ବଶୁବାବୁ, ନିଅ—ଆଜି ତୁମେ ଟିକେ ହାତ ଚଞ୍ଚଳ କର । ଦେଖୁଚ ତ ଅବସ୍ଥା ।

ଯଶୋଦା : ତାଙ୍କ ପାଇଁ ଔଷଧ ଲେଖୁଚନ୍ତି ?

ଡାକ୍ତର : ହଁ, ଔଷଧ ନେବେ ନାହିଁ ?

ଯଶୋଦା : ଆଉ ଟିକଏ ଥିଲା ।

( ଡାକ୍ତର ବ୍ୟତିବ୍ୟସ୍ତ ହୋଇଉଠିଲେଣି )

ଡାକ୍ତର : କଣ, ଝାଡ଼ା ସଫା ହେଉନି ?

ଯଶୋଦା : ନାହିଁ, ଝାଡ଼ା ମୋଟେ ସଫା ହଉନି ।···ରାଧା—

ରାଧା : ମା' !

ଯଶୋଦା : ବାବୁ କାଲି କେତେଥର ବାହାରକୁ ଯାଇଚନ୍ତି ବୋଲି କହୁଥିଲେ ?

ରାଧା : ତିନିଥର ।

ଯଶୋଦା : ତିନିଥର ଯାଇଚନ୍ତି ସିନା, ହେଲେ···

ଡାକ୍ତର : ବୁଝିଲି ଆଜ୍ଞା, ମୁଁ ଠିକ୍ ବ୍ୟବସ୍ଥା କରିଚି ।···ବଶୁବାବୁ, ନିଅ ।

( ବ୍ୟବସ୍ଥାପତ୍ର ଦେଲେ )

ବଶୁ : ଯାଉଁ ଯାଉଁ ଔଷଧ ବାହାର କଲି ଆଜ୍ଞା !

ଯଶୋଦା : ମୋର ଆଉ ଟିକଏ କହିବାର ଥିଲା ।

ଡାକ୍ତର : ମୁ ସବୁ ବ୍ୟବସ୍ଥା କରିଚି ।

ଯଶୋଦା : ପଦେ କଥା ।

ଡାକ୍ତର : ( ଉପାୟଶୂନ୍ୟ ) କୁହନ୍ତୁ ।

ଯଶୋଦା : କହୁଚନ୍ତି, ସବୁବେଳେ ଢ' କାନ···

ଡାକ୍ତର : ଭ ଭଁ ହଉଚ ?

ଯଶୋଦା : ଆଜ୍ଞା ! ଆଉ ଆଖିପତା—

ଡାକ୍ତର : ପୋଡ଼ୁଚ ?

ଯଶୋଦା : ଆଜ୍ଞା । ଆଉ ନାକପୁଡ଼ା ଭିତରଟା···

ଡାକ୍ତର : ରଗରଗ ହଉଚ ?

ଯଶୋଦା : ଆଜ୍ଞା···ଆପଣ ତ ସବୁ ଜାଣିପାରୁଚନ୍ତି ।

ଡାକ୍ତର : ସବୁ ବ୍ୟବସ୍ଥା ବ କରିଚ ।··· ( ହାତଯୋଡ଼ି ) ଏଥର ଆପଣ ଆସନ୍ତୁ । ( ମୁହଁ ବୁଲାଇ ) ହଁ, ନରହରି ଦାସ ।

ପ୍ରଥମ : ଚାଲିବେ ଣ ଆଜ୍ଞା !

ଡାକ୍ତର : ଜାଣିଚ ବାବୁ, ବୟସ କେତେ କୁହନ୍ତୁ ।

ପ୍ରଥମ : ଇଏ ଆଜ୍ଞା ସବୁ ଗୋଳମାଳ ଧରିଲଣି ।

ଡାକ୍ତର : ଆପଣଙ୍କ ବୟସ ଆପଣ କହିବେ, ଏଥିରେ ଗୋଳମାଳ କଣ ଧରିଲା ?

ପ୍ରଥମ : ନଧରିବ କେମିତି ? ନାଁ ସମାନ, ବୟସ ସମାନ···

ଡାକ୍ତର : ଓ ! ଆପଣଙ୍କ ବୟସ ତେବେ ପଚିଶ ପାଖାପାଖି ?

ପ୍ରଥମ : ହଁ ଯେ, ସିଏ ତ ପଚିଶ ଏ ପାଖରେ ରହିଲେଣି—ମୋର ନ ହେଲା ପଚିଶ ସେପାଖରେ ବସେଇ ଦଅନ୍ତୁ—ଅଡ଼ୁଆ ତୁଟିଯିବ ।

ଡାକ୍ତର : ହଉ ହେଲା, କଣ ହେଉଚ ଆପଣଙ୍କର କୁହନ୍ତୁ ?

ପ୍ରଥମ : ଆଜ୍ଞା, କଣ ଯେ ମୋର ନ ହଉଚ···

ଡାକ୍ତର : ବା···ସ୍ !

ସୁଧା : ଆମ କାମ ସରିଲା ମା' ?

ଯଶୋଦା : ନାଇଁ, ସରିନାହିଁ । ଡାକ୍ତର ବାବୁ ସେ ଆଡ଼କୁ ଅନେଇଚନ୍ତି—ଏଣିକି ଆଖି ଫେରାଇଲେ ମୋ କଥା ପୁଣି କହିବ ।

ଡାକ୍ତର : ( ଶୁଣି ନ ଶୁଣିଲା ପରି ) ଶୁଣନ୍ତୁ ନରହରି ବାବୁ···

ପ୍ରଥମ : ମତେ କହୁଚନ୍ତି ତ ?

ଡାକ୍ତର : ହଁ, ଆପଣଙ୍କୁ ।

ପ୍ରଥମ : ମୁଁ ପରା ଟିକିଏ ଗୋଳମାଳଆରେ ପଡ଼ିଯାଉଚ ।

ଡାକ୍ତର : ଆପଣ ଶୁଣନ୍ତୁ ମୋ' କଥା । ଆପଣଙ୍କର କଣ କଣ ହଉଚ ଯଦି ଆପଣ ଠିକ୍ କରି କହି ପାରୁନାହାନ୍ତି, ତେବେ କଣ କଣ ନ ହଉଚ ସେ କଥା ମତେ କୁହନ୍ତୁ । ସେଇଥିରୁ ମୁଁ ସବୁ ବୁଝି ପାରିବି—ବୁଝିଲେ ? ଏ କ'ଣ···ଗୁଡାଏ କାହିଁକି ସ୍ଥିରଧରି ବସିଲେଣି ?

ଯଶୋଦା : ( ଝୁଙ୍କିପଡ଼ି ) ସେଇ ଗୁଡ଼ି !

ଡାକ୍ତର : ନରହରି ବାବୁ !
ଯଶୋଦା : ମୋର ଆଉ ପଦେ କଥା !
ଡାକ୍ତର : ମୁଁ ଏଠି ହାତ ବନ୍ଦକରି ବସିରହିଲି ଯେ ନରହରି ବାବୁ !
ଯଶୋଦା : ଟିକଏ ଏଣେ ଶୁଣିବେ କି ?
ଡାକ୍ତର : ( ନରହରିଙ୍କୁ ) ଆପଣଙ୍କର ତେବେ ରୋଗ ବେମାରି କିଛୁ ନାହିଁ ?
ପ୍ରଥମ : ଜଣେ ନରହରି ଅଡୁଆ ତ ଏ ଯାଏଁ ତୁଟିଲା ନାହିଁ । ମୁଁ ଏଥିରେ ଆଉ କଣ କରିବି ?
ଯଶୋଦା : କେମିତି ଅଡୁଆ ତୁଟିବ ? ଆପଣ କଏ ଅଡୁଆ ତୁଟେଇବାକୁ ! ଇଏ ଜୀବନ-ମରଣ କଥାଟି !! ( ଡାକ୍ତରଙ୍କୁ ) ଆଜ୍ଞା ଡାକ୍ତର ବାବୁ, ଟିକଏ ଏଣିକି ଶୁଣିବେ କି ?
ଡାକ୍ତର : ଶୁଣିଲି···କୁହନ୍ତୁ ।
ଯଶୋଦା : କହୁଚନ୍ତି, ଖାଇସାରିଲା ପରେ ଟିକିଏ ଭିତରୁ ଖାଲି···
ଡାକ୍ତର : ଅମ୍ବିଲା ଢେକୁଟି ଉଠିଆସୁଚି, ଏଇଆ ତ ?
ଯଶୋଦା : ଆଜ୍ଞା, ଆଉ ବେଳେବେଳେ ପାଦ ତଳଟା···
ଡାକ୍ତର : ପୋଡୁଚି ।
ଯଶୋଦା : ( ଖୁସି ହୋଇ ) ଆପଣ ତ ସବୁ ଜାଣିଚନ୍ତି !
ଡାକ୍ତର : ନଜାଣିଲେ ଏ ବ୍ୟବସାୟ ଏଠି ଚଳେଇ ହବନାହିଁ । ସବୁ ଜାଣିଚି—ସବୁ ବ୍ୟବସ୍ଥା ବି କରିଚି ।···ବଂଶୁବାବୁ !
ବଂଶୁ : ହେଲା ଆଜ୍ଞା, ହେଇଗଲା ।
ଡାକ୍ତର : ହଁ ନରହରି ବାବୁ, ଏଥର କୁହନ୍ତୁ ।
ପ୍ରଥମ : କଥା କ'ଣ କି ଆଜ୍ଞା—ମୋର କେତେବେଳେ କ'ଣ ହଉଚି ତାର ଠିକ୍ ଠିକଣା ରହୁନାହିଁ । କେତେବେଳେ ଏଇଟା ହେଲଣି ତ, କେତେବେଳେ ସେଇଟା ହେଲଣି—ଆଜି ଅମୁକଟା ହେଲଣି ତ କାଲି ସମୁକଟା ହେଲଣି ।
ଡାକ୍ତର : ବୁଝିଲି; ଆପଣଙ୍କର ନିର୍ଦ୍ଦିଷ୍ଟ ରୋଗ କିଛି ନାହିଁ ?
ପ୍ରଥମ : ନାହିଁ ପୁଣି, ଅଛି ।
ଡାକ୍ତର : ନାହିଁ ଯଦି ତେବେ ଦସ୍ତଖତ କରି ଯା'ନ୍ତୁ, ଅଛି ଯେବେ ଦସ୍ତଖତ କରି କୁହନ୍ତୁ ।

( ବଂଶୁ ହାତରେ ଔଷଧ ଶିଶି ଧରି ଆସିଲେ )

ବଂଶୁ : ହୁଁ, ନରହରି ଦାସ—ଏ ଦ'ଟା ଔଷଧ ।
ପ୍ରଥମ : କୋଉ ଦାସ ଆଜ୍ଞା ? ତାଲବେ ଶ ନା ଦନ୍ତ୍ୟ ସ ?
ବଂଶୁ : ଏଇଟା ମୂର୍ଦ୍ଧନ ଷ'—ମାନେ ଯୋଉ ଷ' ଏଠି ନାହିଁ—ମାନେ ଯୋଉ ନରହରି ଦାସ ଏଠି ନାହାନ୍ତି ।

ରାଧା : ଏ ଆମ ବାବୁଙ୍କ ଔଷଧ ?

ବନ୍ଧୁ : ହଁ, ତମର ବାବୁଙ୍କ ଔଷଧ ।...ଏ ବଡ଼ ବଟିକା ଖାଲିପେଟରେ ଥରକୁ ଗୋଟାଏ କରି ଦିନକୁ ତିନି ଥର—ଆଉ ଏ ସାନ ବଟିକା...

ଯଶୋଦା : ଟିକିଏ ରୁହନ୍ତୁ ଆଜ୍ଞା !

ବନ୍ଧୁ : ରହିଲି ।

ଯଶୋଦା : ରାଧା, ଭଲକରି ମନେରଖ—ଟିକିଏ ଯେମିତି ଏପାଖ ସେପାଖ ହବନାହିଁ ।

ରାଧା : ମନେରଖିଛି ମା'—ବଡ଼ ବଟିକା ଖାଲିପେଟରେ ଥରକୁ ଗୋଟାଏ କରି ଦିନକୁ ତିନିଥର ।

ବନ୍ଧୁ : ଗୁଡ୍ ! ଆଉ ଏ ସାନ ବଟିକା ଖାଇସାରି ଥରକୁ ଦି'ଟା କରି ଦିନକୁ ତିନିଥର ।

ଯଶୋଦା : ଏତିକି ଆଜ୍ଞା ?

ବନ୍ଧୁ : ବାସ୍ ! ଏତିକି !

ଡାକ୍ତର : ଖଟା ଖାଇବେ ନାହିଁ । ଆଉ ଏ ବୋତଲ ଉପରେ ଯାହା ଲେଖା ହୋଇଛି...

ଯଶୋଦା : ରାଧା, ବୋତଲ ଉପରେ ଯାହା ଲେଖାହୋଇଛି... ( ଡାକ୍ତରଙ୍କୁ ) କଣ ଲେଖା ହୋଇଛି ଆଜ୍ଞା ?

ଡାକ୍ତର : ଭଲ କରି ଠିପି ବନ୍ଦକରି ଅନ୍ଧାରୁଆ ଜାଗାରେ ରଖିବେ । ବାସ୍—ଆପଣଙ୍କ କାମ ସୁଝିଲା ।

ବନ୍ଧୁ : ଆଉ ଟିକିଏ ଅଛି । ଔଷଧ ଦାମ୍‌ଟା—ସାତଟଙ୍କା ପଇଁତିରିଶ ପଇସା । ଆଉ...

ଯଶୋଦା : ଜାଣେ । ନିଅନ୍ତୁ । ( ଟଙ୍କା ଦେଲେ )

ଡାକ୍ତର : ଚଞ୍ଚଳ ଯାଇ ଔଷଧ ଆଜଠୁଁ ଆରମ୍ଭ କରିଦିଅନ୍ତୁ ।...ହଁ, ନରହରି ବାବୁ !

ପ୍ରଥମ : ଆଜ୍ଞା, ଆପଣଙ୍କୁ ମିଛ ମତେ ସତ—ବେଳେବେଳେ ମୋର ଏମିତି ମନହୁଏ, ଜୀବନ ହାରିଦିଅନ୍ତି—ବିଷ ଜହର ଖାଇଦିଅନ୍ତି—ଆଉ ଏମିତି ହଇରାଣ ହ'ନ୍ତି ନାହିଁ ।

ଡାକ୍ତର : ନହ'ନ୍ତେ କେମିତି ? ବିଷ ଜହର ଖାଇଲେ ଆପଣଙ୍କୁ ଆମ ପାଖକୁ ଆସିବାକୁ ପଡ଼ନ୍ତା—ଆପଣ ପୁଣି ବଞ୍ଚନ୍ତେ—ପୁଣି ଏମିତି ହଇରାଣ ହ'ନ୍ତେ ।

ପ୍ରଥମ : ଯାହା କହୁଚନ୍ତି ଆଜ୍ଞା !

ବନ୍ଧୁ : ବୁଝିଲେ ନରହରି ବାବୁ, ମଣିଷ ବଞ୍ଚିବ କି ମରିବ ସେ କଥାରେ ଆପଣ ମୁଣ୍ଡ ନ ଖେଳାଇ ସେ କାମଟି ଡାକ୍ତରଙ୍କ ଉପରକୁ ଛାଡ଼ିଦିଅନ୍ତୁ । ସେ କଥା ସିଏ ବୁଝିବେ ।

ପ୍ରଥମ : ତା' ଅର୍ଥ ଡାକ୍ତର ମାରିଲେ ମାରିବେ, ନ ହେଲେ ବଞ୍ଚେଇଲେ ବଞ୍ଚେଇବେ ।

ଡାକ୍ତର : ( ହସି ) ବାଃ ! ଭଲ କଥାଟିଏ ଆପଣ କହୁଚନ୍ତି । ଆପଣଙ୍କ ନାଡ଼ିଟା ଦେଖି । ( ନାଡ଼ି ଦେଖି ) ହୁଁ, ନାଡ଼ି ଠିକ୍ ଅଛି ।

ପ୍ରଥମ : ସତ କହନ୍ତୁ, ଠିକ୍ ଅଛୁ ?

ଡାକ୍ତର : ହଁ ବାବୁ, ଠିକ୍ ଅଛି । ନାଡ଼ୀକୁ ତ ଆପଣ ଚଳାଉନାହାନ୍ତି—ନାଡ଼ୀ ତା ମନକୁ ଚାଲିଚ--ଠିକ୍ ନ ରହିବ କାହିଁକି ?

ପ୍ରଥମ : ଭୁଲ୍ ତା'ହେଲେ ରହିଲା କୋଉଠି ?

ଡାକ୍ତର : ଆପଣଙ୍କ ମନ । ମନ ବୋଧହୁଏ ଆପଣଙ୍କର ଠିକ୍ ନାହିଁ···କଣ କହୁଚନ୍ତି ?

( ଏ ପର୍ଯ୍ୟନ୍ତ ଯଶୋଦା ଏକଲୟରେ ଡାକ୍ତରଙ୍କ ଗତିବିଧି ଲକ୍ଷ୍ୟ କରୁଥିଲେ )

ଯଶୋଦା : ( ସଙ୍ଗେ ସଙ୍ଗେ ) ପଦେ କଥା—ମୋର ଆଉ ପଦେ କଥା କହିବାର ଅଛି ।

ପ୍ରଥମ : ( ଯଶୋଦାଙ୍କ କଥାପ୍ରତି ଇଙ୍ଗିତ ରଖି ) ଦେଖୁଚନ୍ତି ତ ! ଏଥିରେ ମନ କେମିତି ଠିକ୍ ରହିବ ବୁଝନ୍ତୁ ।

ଡାକ୍ତର : ଆଚ୍ଛା, ଆପଣ ଟିକିଏ ସ୍ଥିର ହୋଇ ବସନ୍ତୁ—ମୁଁ ଏମାନଙ୍କୁ ଦେଖିସାରେ—ପଛରେ ଆପଣଙ୍କ କଥା ବୁଝାଯିବ ।

ପ୍ରଥମ : ହଉ ଆଜ୍ଞା, ମୁଁ ବସିଲି ।

ଯଶୋଦା : ଡାକ୍ତର ବାବୁ, ଟିକିଏ ଏଣିକି ଚାହିଁବେ କି ?

( ଡାକ୍ତର ଶୁଣି ମଧ୍ୟ ଶୁଣୁ ନ ଥାନ୍ତି । ଦେଖାଗଲା ଦ୍ୱିତୀୟ ରୋଗୀଟି ଶୋଇପଡ଼ିଲେଣି । )

ଡାକ୍ତର : ଆରେ, ଇଏ କଣ ଏଠି ନଘୋଡ଼ ନଦରେ ଶୋଇଲେଣି ! ହୋ' ବାବୁ ।

ତୃତୀୟ : ଆଜ୍ଞା ସିଏ ତ ଶୋଇଚନ୍ତି, ଆଗେ ମୋ କଥାଟା ବୁଝନ୍ତୁ—ମୋର ଦୂର ବାଟ ।

ଡାକ୍ତର : ଆପଣଙ୍କ ନାଁ ?

ତୃତୀୟ : ଯମେଶ୍ୱର ପଣ୍ଡା । ବୟସ ଚାଳିଶ ।

ଡାକ୍ତର : କୁହନ୍ତୁ କଣ ହେଉଚି ?

ତୃତୀୟ : ( ମନେ ମନେ ହିସାବକରି ) ଚାରିମାସ···ହଁ, ଇଏ ତିନି ମାସ ପୂରି ଚାରିମାସ ଚାଲିଲା ।

ଡାକ୍ତର : ଏ ଯାଏଁ କଣ ଶୋଇଥିଲେ ? ଘରେ ବସି ବସି ରୋଗ ବଢ଼େଇବେ—ଶେଷକୁ ଡାକ୍ତରଙ୍କୁ ଦୋଷ ଦେବେ ।

ତୃତୀୟ : ନାହିଁ ଆଜ୍ଞା, ଆଗରୁ ସେମିତି କିଛି ଅସୁବିଧା ଦୃଶ୍ୟ ହଉ ନ ଥିଲା—ସବୁ ଭଲରେ ଭଲରେ ଯାଉଥିଲା···ଏଇ ଦିନ ଆଠ ପନ୍ଦର ହବ···

ଡାକ୍ତର : ସେଇଆ ତ କହିବେ, ଆଉ ତିନି ଚାରି ମାସ କଣ କହୁଚନ୍ତି ? କୁହନ୍ତୁ କଣ ହେଉଚି ?

ତୃତୀୟ : ଯାହା ସବୁ ହେଉଥାଏ···ଟିକିଏ ଯାହା ବଦଳିପଡ଼ୁଚି । ବାନ୍ତି ଖୁବ୍ ହଉଥିଲା—ଏବେ ଟିକିଏ କମ୍ ହଉଚି । ମୁଣ୍ଡ ବୁଲଉଚି । ମୁହଁ ଶୋଥ ପଡ଼ିଚି—ପାଦଟା ଟିକିଏ ଫୁଲିଲା ଫୁଲିଲା ଦିଶୁଚି ।

ଡାକ୍ତର : କାହିଁ, ମୁହଁ ତ ଶେଥା ପଡ଼ିଲା ପରି ଜଣାପଡ଼ୁନି । ପାଦଟା ଦେଖି ।

ଭଦ୍ରାୟୁ : ପାଦ ?

ଡାକ୍ତର : ହଁ, ଉପରକୁ ଟେକନ୍ତୁ ତ ।

ଭଦ୍ରାୟୁ : ଆଜ୍ଞା, ମୋ' ପାଦ ଦେଖି କଣ ବୁଝିବେ ?

ଡାକ୍ତର : ଆଉ କାହା ପାଦ ଦେଖିବ ?

ଭଦ୍ରାୟୁ : ମୋ' ସ୍ତ୍ରୀ···ଏଇଟା ତାଙ୍କର ପ୍ରଥମ ଗର୍ଭ ।

ଡାକ୍ତର : କଣ ଯେ ଆପଣଙ୍କୁ କହିବ !! ନିଜ ନାଁ ଲେଖେଇଲେ···ବୟସ କହିଲେ···

ଭଦ୍ରାୟୁ : ମୋର କଣ ଆଉ ଏତେ ଶରୀରକୁ ସ୍ପଷ୍ଟ ଅଛି ! ମୁଁ କହିଲି, ମୁଁ ତ ଭଲ ମଣିଷଟାଏ—ଡାକ୍ତର ବାବୁ ମତେ ଦେଖିଲେ ସବୁ ବୁଝିପାରିବେ ।

ଡାକ୍ତର : ହଁ ହଁ, ମୁଁ ସବୁ ବୁଝିଲିଣି । ଏଇଟା ତା'ହେଲେ ତାଙ୍କର ପ୍ରଥମ ଗର୍ଭ ?

( ବଶୁ ଏକଦୃଷ୍ଟିରେ ପରମେଶ୍ୱରଙ୍କୁ ଚାହିଁରହିଥାନ୍ତି )

ଭଦ୍ରାୟୁ : ଆଜ୍ଞା, ପ୍ରଥମ ଗର୍ଭ···ଟିକିଏ ଦୁର୍ବଳିଆ ଲୋକ ତ···

ବଶୁ : ( ପରମେଶ୍ୱରଙ୍କୁ ) ଟିକିଏ ରୁହନ୍ତୁ ତ !

ଭଦ୍ରାୟୁ : କଣ ଆଜ୍ଞା ?

ବଶୁ : ପ୍ରାୟ ଦୁଇ ବର୍ଷ ତଳେ ଆପଣ କଟକ ବଡ଼ଡାକ୍ତରଖାନାକୁ ଯାଇଥିଲେ ନା ?

ଭଦ୍ରାୟୁ : ଆପଣ କେମିତି ଜାଣିଲେ ?

ବଶୁ : ମୁଁ ସେତେବେଳେ ସେଠି ଚାକିରି କରୁଥିଲି ।

ଭଦ୍ରାୟୁ : ହଁ ଆଜ୍ଞା, ଯାଇଥିଲି ।

ବଶୁ : ଆପଣଙ୍କ ସ୍ତ୍ରୀଙ୍କୁ ନେଇ ଯାଇଥିଲେ ।

ଭଦ୍ରାୟୁ : ହଁ, ସ୍ତ୍ରୀଙ୍କୁ ନେଇ ଯାଇଥିଲି ।

ବଶୁ : ଡାକ୍ତରଖାନାରେ ତାଙ୍କ ପେଟ ଅପରେସନ୍ ହୋଇ ଯାଉଁଳି ପିଲା ଜନ୍ମ ହୋଇଥିଲେ—ପୁଅଟିଏ, ଝିଅଟିଏ ।

ଭଦ୍ରାୟୁ : ହଁ ଆଜ୍ଞା, ଆପଣ ଯାହା କହୁଛନ୍ତି ସବୁ ଠିକ୍ ।

ବଶୁ : ଆଉ କହୁଛନ୍ତି କେମିତି ଇଏ ଆପଣଙ୍କ ସ୍ତ୍ରୀର ପ୍ରଥମ ଗର୍ଭ ?

ଭଦ୍ରାୟୁ : ହଁ ଆଜ୍ଞା, ପ୍ରଥମ ଗର୍ଭ ।

ଡାକ୍ତର : ଆପଣଙ୍କ ମୁଣ୍ଡ ଠିକ୍ ଅଛି ତ ?

ଭଦ୍ରାୟୁ : ଆଜ୍ଞା, ସିଏ ମୋର ପ୍ରଥମ ସ୍ତ୍ରୀ । ତାଙ୍କର କାଳ ହୋଇଗଲାଣି । ଇଏ ଦ୍ୱିତୀୟ ସ୍ତ୍ରୀ ।

ଡାକ୍ତର : ଓ···( କିଛିକ୍ଷଣ ପାଇଁ ନୀରବତା )

ଭଦ୍ରାୟୁ : ( ରହି ରହି ) ଦ୍ୱିତୀୟ ସ୍ତ୍ରୀ ହେଲା ବୋଲି ତାକୁ ସ୍ତ୍ରୀ ନ କହି ଆଉ କଣ କହିବି···

ଡାକ୍ତର : ନା-ନା-ଆପଣ ଠିକ୍ କହୁଛନ୍ତି ।...ହଁ, ଆଉ ଥରେ କୁହନ୍ତୁ ତ—କଣ ସବୁ ଲକ୍ଷଣ !

( ଏଇଠି ଡାକ୍ତର ଅତର୍କିତ ଅବସ୍ଥାରେ ମୁହଁ ଫେରାଇ ଅଣିବା ସଙ୍ଗେ ସଙ୍ଗେ ଯଶୋଦା କଥା ଆରମ୍ଭ କରିଦେଲେ )

ଯଶୋଦା : ଆଜ୍ଞା, ଖଟା ଖାଇବାକୁ ଯେ ମନାକଲେ....

ଡାକ୍ତର : ମନାକରିଛି ଖଟା ଖାଇବେ ନାହିଁ । ( ଯମେଶ୍ୱରଙ୍କୁ ) ହଁ, କଣ ହେଲା ? ମୁଣ୍ଡ ବୁଲଉଛି ?

ଭୃତ୍ୟ : ଆଜ୍ଞା !

ଯଶୋଦା : ଯଦି ଖଟାରେ ଖୁବ୍ ମିଠା ହଉଥିବ—ତ'ଗୁଣ କି ଚଉଗୁଣ...

ଡାକ୍ତର : ସେଇଟା ମିଠା ହୋଇଗଲା । ମୁଁ ଖଟା ଖାଇବାକୁ ମନାକରିଛି । (ଯମେଶ୍ୱରଙ୍କୁ) ଆଚ୍ଛା, ଯମେଶ୍ୱରବାବୁ ..

ଯଶୋଦା : ରାଧା, ମନେରଖ—ଖଟା ସାଙ୍ଗରେ ଚଉଗୁଣ ମିଠା ।

ଡାକ୍ତର : ଝୋଳ ହଉଛି ?

ଯଶୋଦା : ଝୋଳ କଥା ପଚାରିଲେ ଯେ...

ଡାକ୍ତର : ମୁଁ ଯମେଶ୍ୱରବାବୁଙ୍କୁ ପଚାରୁଛି ଆଜ୍ଞା !

ଯଶୋଦା : ପଚାରନ୍ତୁ—ପଚାରନ୍ତୁ । ମୋର ଖାଲି ପଦେ କଥା—

ଡାକ୍ତର : ପଦେ କଥା ?

ଯଶୋଦା : ହଁ, ପଦେ କଥା । କହି ଜାଣିଲେ ତ ପଦେ ପଦେ କଥାରେ କାମ ତୁଟିଯିବ—ଦଶ ପନ୍ଦର କଥା କହିବ କାହିଁକି ? (ଡାକ୍ତର ତୀକ୍ଷ୍ଣ ଦୃଷ୍ଟିରେ ତାଙ୍କୁ ଚାହିଁଲେ) ପଦେ କଥା ।

ଡାକ୍ତର : କୁହନ୍ତୁ ।

ଯଶୋଦା : ଆଗେ ଖାଲିପେଟରେ ବଡ଼ ବଟିକା ଖାଇ...(ରାଧାକୁ) ବଡ଼ ବଟିକାଟି ରାଧା ?

ରାଧା : ହଁ, ବଡ଼ ବଟିକା ।

ଯଶୋଦା : ଖାଲିପେଟରେ ବଡ଼ ବଟିକା ଖାଇ—ତା'ପରେ ଖାଇବା ଜିନିଷ ଖାଇ ପେଟ ଭର୍ତ୍ତିକରି ସାନ ବଟିକା ଖାଇ ପୁଣି ପେଟ ଖାଲିକରି ବଡ଼ ବଟିକା ଖାଇବେ, ନା ?

ଡାକ୍ତର : ଓଲଟେଇ ଦେବେ । ଆପଣ ଯାହା ଯାହା କହିଗଲେ ସବୁ ଓଲଟେଇ ଦେବେ—କିଛି ଯାଏ ଆସେନା । ହଁ, ଯମେଶ୍ୱରବାବୁ, ଝୋଳ ହଉଛି ତ ?

ଭୃତ୍ୟ : ହଁ, ଝୋଳ ହଉଛି । ଦିନକୁ ଚାରିଥର ଖାଉଛି ଯେତେବେଳେ ଝୋଳ ନିଶ୍ଚେ ହଉଛି ।

ଡାକ୍ତର : ଦେହ ଜର-ଜର ଲାଗୁଚି କି ?
ଜଗନ୍ନାଥ : କେବେ କେମିତି ।
ଡାକ୍ତର : ଟିକିଏ ଗାଧୋଇବାଟାକୁ ଜଗିବେ ।
ଯଶୋଦା : ଗରମ ପାଣିରେ ଗାଧୋଇବେ ?
ଡାକ୍ତର : ମୁଁ ପରମେଶ୍ୱର ବାବୁଙ୍କୁ କହୁଚି ଆଜ୍ଞା !
ଯଶୋଦା : ଇଏ ଆମର କଣ ଗରମ ପାଣିରେ···
ଡାକ୍ତର : ହଁ, ଗରମ ପାଣିରେ ଗାଧୋଇବେ ।
ଯଶୋଦା : ଥଣ୍ଡାପାଣି ?
ଡାକ୍ତର : ପିଇବେ ।
ଯଶୋଦା : ଆଉ ଥଣ୍ଡା ଗରମ ପାଣି ?
ଡାକ୍ତର : ପିଇବେ ନାହିଁ କି ଗାଧୋଇବେ ନାହିଁ ।
ଯଶୋଦା : ସୁଧା, ନାହିଁଟା ମନେରଖ ।
ଡାକ୍ତର : ହଁ, ପରମେଶ୍ୱର ବାବୁ—ଆପଣଙ୍କ ସ୍ତ୍ରୀଙ୍କୁ ଯେ ରୋଗ ହଉଚି କହୁଚନ୍ତି—ଯାହା ପାଇଁ ତା' ତାଙ୍କୁ ଖାଇବାକୁ ଦେଇଦେବେ ନାହିଁ ।
ଯଶୋଦା : କଣ ଖାଇବେ ?
ଡାକ୍ତର : ମୁଁ ପରମେଶ୍ୱର ବାବୁଙ୍କ ସ୍ତ୍ରୀଙ୍କ କଥା କହୁଚି ଆଜ୍ଞା !
ଜଗନ୍ନାଥ : ସରଳ ଲୋକ ସେ । ତାଙ୍କ ସ୍ୱାମୀଙ୍କ କଥା ଆଗେ ବୁଝନ୍ତୁ—ପରେ ମୋ' ସ୍ତ୍ରୀଙ୍କ କଥା ବୁଝିବେ ।
ଯଶୋଦା : ମୋର ପଦେ କଥା ।
ଡାକ୍ତର : କୁହନ୍ତୁ !
ଯଶୋଦା : କଣ ସେ ଖାଇବେ ?
ଡାକ୍ତର : କଣ ଆପଣ ଦେବେ ?
( ଯଶୋଦା ହଠାତ୍! ବୁଝି ପାରଲେ ନାହିଁ କଣ କହିବେ )
ଯଶୋଦା : ମୂଳା ?
ଡାକ୍ତର : ଖାଇବେ ।
ଯଶୋଦା : ସଜନା ଶାଗ ?
ଡାକ୍ତର : ଖାଇବେ ।
ଯଶୋଦା : ଚକୁଳି ପିଠା ?
ଡାକ୍ତର : ଖାଇବେ ।
( ଜଣାଯାଉଥାଏ ଡାକ୍ତରଙ୍କ ପାଟିରୁ ଆପେ ଆପେ ଉତ୍ତର ବାହାରି ଆସୁଚି )
ଯଶୋଦା : ଶେଉଳ ମାଛ ?

ଡାକ୍ତର : ଖାଇବେ ।
ଯଶୋଦା : ବାଲିଆ ମାଛ ?
ଡାକ୍ତର : ଖାଇବେ ।
ଯଶୋଦା : ଖାଇବେ ? ବାଲିଆ ମାଛ ଖାଇବେ ?
ଡାକ୍ତର : ନା—ନା—ଖାଇବେ ନାହିଁ ।
ଯଶୋଦା : ରାଧା, ବାଲିଆ ମାଛ ଖାଇବେ ନାହିଁ ।...ମୁଗଡାଲି ?
ଡାକ୍ତର : ଖାଇବେ ।
ଯଶୋଦା : ବିରିଡାଲି ?
ଡାକ୍ତର : ଖାଇବେ ନାହିଁ ।
ଯଶୋଦା : ଉଷୁନା ଭାତ ?
ଡାକ୍ତର : ଖାଇବେ ।
ଯଶୋଦା : ଅରୁଆ ଭାତ ?
ଡାକ୍ତର : ଖାଇବେ ନାହିଁ ।
ଯଶୋଦା : କଞ୍ଚା କଦଳୀ ?
ଡାକ୍ତର : ଖାଇବେ ।
ଯଶୋଦା : ପାଚିଲା କଦଳୀ ?
ଡାକ୍ତର : ଖାଇବେ ନାହିଁ ।
ଯଶୋଦା : ରାଧା, ଖାଇବେ ନାହିଁ ଯାକ ମନେରଖ ।...ଦୁଧ ?
ଡାକ୍ତର : ଖାଇବେ ।
ଯଶୋଦା : ଦହି ?
ଡାକ୍ତର : ଖାଇବେ ନାହିଁ ।
ଯଶୋଦା : ଛେନା ?
ଡାକ୍ତର : ଖାଇବେ ।
ଯଶୋଦା : ଆଉ...ଆଉ କଣ ତା' ନାଁ ଟି...
ଡାକ୍ତର : ( ଆଖିବୁଜି ) ଖାଇବେ ନାହିଁ... ଖାଇବେ...ଖାଇବେ ନାହିଁ...ଖାଇବେ... ଖାଇବେ ନାହିଁ...ଖାଇବେ...
ରାଧା : ମୁଁ ଏବେ କଣ ମନେରଖିବ ମା' ?
ଡାକ୍ତର : ଖାଇବେ ନାହିଁ...ଖାଇବେ...ଖାଇବେ ନାହିଁ...
ଯଶୋଦା : ଆଜ୍ଞା, ଆଜ୍ଞା ଡାକ୍ତର ବାବୁ !
ଡାକ୍ତର : ଖାଇବେ—ଖାଇବେ ନାହିଁ—( ଟିକିଏ ବଡ଼ପାଟିରେ ) ଖାଇବେ...
ବିଜୟ : ( ଚକାରକରି ) ଖାଇଗଲି ଲୋ ମା' !

ଡାକ୍ତର : କଣ ହେଲା ଆପଣଙ୍କର ? ଆପଣ ତ ନିଘୋଡ଼ ନିଦରେ ଶୋଇଥିଲେ ?

ବ୍ରିଜ ଓସ୍ପ : ସେଇ ହେଲା ମୋର ରୋଗ । ଯେତେବେଳେ ପାରି ସେତେବେଳେ—ଯୋଉଠି ପାରି ସେଠି ଶୋଇପଡ଼ୁଛି, ଆଉ ସ୍ୱପ୍ନ ଦେଖୁଛି । ସ୍ୱପ୍ନରେ ଏଇନେ କଏ ଗୋଟାଏ ମତେ ଖାଇବାକୁ ଗୋଡ଼ାଉଥିଲା ।

ଡାକ୍ତର : ଆପଣଙ୍କ କର୍ମ ?

ବ୍ରିଜ ଓସ୍ପ : କର୍ମ ଫର୍ମ କିଛୁ ନାହିଁ—ଖାଲି ନିଦ ଆଉ ସ୍ୱପ୍ନ—ସ୍ୱପ୍ନ ଆଉ ନିଦ ।

ଯଶୋଦା : ସେଇ ନିଦ ।

ଡାକ୍ତର : ନିଦ ରୋଗଟା ତାଙ୍କର ଆଜ୍ଞା !

ଯଶୋଦା : ମୋର ପଦେ କଥା···

ଡାକ୍ତର : ବେଶ୍ ।

ଯଶୋଦା : ଅସଲ କଥାଟା ମୋର ମନେପଡ଼ୁନଥିଲା । ତାଙ୍କୁ ମୋଟେ ନିଦ ହଉନାଇଁ ।

ଡାକ୍ତର : ଆପଣ କେମିତି ଜାଣିଲେ ତାଙ୍କୁ ନିଦ ହଉନାଇଁ ?

ଯଶୋଦା : ମୁଁ ଦିନ ରାତି ତାଙ୍କ ପାଖେ ପାଖେ ରହୁଛି—ମୁଁ ଜାଣିବିନାଇଁ ?

ଡାକ୍ତର : ଓ, ଆପଣ ଦିନରାତି ତାଙ୍କ ପାଖେ ପାଖେ ରହୁଚନ୍ତି ! ବେଶ, ବଣୁବାବୁ, ସ୍ଲିପିଙ୍ଗ୍ ପିଲ୍—ନିଦ ଔଷଧ ।

ଯଶୋଦା : ( ଖୁସିହେଇ ) ହଁ ଆଜ୍ଞା, ମୁଁ ଶୁଣିଚି—ନିଦ ଔଷଧ ଦେଲେ ଭଲ ନିଦ ହୁଏ —ସେଇ ବଟିକା ଦିଅନ୍ତୁ । ( ବଣୁ ଔଷଧ ଆଣିଲେ )

ବଣୁ : ଏଇ ନିଅନ୍ତୁ ।

ଯଶୋଦା : ନେ ରାଧା—ଔଷଧ ରଖ—ନିଦ ଔଷଧ ।

ରାଧା : କେମିତି କେତେ ଖାଇବେ ?

ଡାକ୍ତର : ଟାଳେ—ଗୋଟିଏ ବଟିକାରୁ ଟାଳେ ଖାଇ ଶୋଇପଡ଼ିବେ ।

ଯଶୋଦା : ଆଜ୍ଞା, ତାଙ୍କୁ ଟାଳେ ଔଷଧ କଣ କାମ ଦବ ?

ଡାକ୍ତର : ଏ ନିଦଔଷଧ ଆପଣଙ୍କ ସ୍ୱାମୀ ଖାଇବେ ନାହିଁ—ଆପଣ ଖାଇବେ—ଆପଣଙ୍କୁ ଠିକ୍ କାମ ଦେବ ।

ଯଶୋଦା : ମୁଁ କାହିଁକି ଖାଇବି ଡାକ୍ତରବାବୁ—ମୋର କଣ ହେଇଚି ?

ଡାକ୍ତର : ଆପଣଇ ଖାଇବେ । ଆପଣ ନିଦ ଔଷଧ ଖାଇ ଶୋଇପଡ଼ିଲେ ଆପଣଙ୍କର ସ୍ୱାମୀ ଆରାମରେ ଶୋଇବେ । ବୁଝିଲେ—ଏଥର ଉଠିବା ହୁଅନ୍ତୁ ।

ଯଶୋଦା : ହଉ···ରାଧା···

ରାଧା : ହଁ ମା'—ଆଉ ତ କିଛି ବୁଝିବାର ନାହିଁ—ଯିବା ।

ଡାକ୍ତର : ଖାଇବେ ।
ଯଶୋଦା : ବାଳିଆ ମାଛ ?
ଡାକ୍ତର : ଖାଇବେ ।
ଯଶୋଦା : ଖାଇବେ ? ବାଳିଆ ମାଛ ଖାଇବେ ?
ଡାକ୍ତର : ନା—ନା—ଖାଇବେ ନାହିଁ ।
ଯଶୋଦା : ରାଧା, ବାଳିଆ ମାଛ ଖାଇବେ ନାହିଁ ।···ମୁଗଡାଲି ?
ଡାକ୍ତର : ଖାଇବେ ।
ଯଶୋଦା : ବିରିଡାଲି ?
ଡାକ୍ତର : ଖାଇବେ ନାହିଁ ।
ଯଶୋଦା : ହଷନା ଘିଅ ?
ଡାକ୍ତର : ଖାଇବେ ।
ଯଶୋଦା : ଅରୁଆ ଭାତ ?
ଡାକ୍ତର : ଖାଇବେ ନାହିଁ ।
ଯଶୋଦା : କଞ୍ଚା କଦଳୀ ?
ଡାକ୍ତର : ଖାଇବେ ।
ଯଶୋଦା : ପାଚିଲା କଦଳୀ ?
ଡାକ୍ତର : ଖାଇବେ ନାହିଁ ।
ଯଶୋଦା : ରାଧା, ଖାଇବେ ନାହିଁ ଯାକ ମନେରଖ ।···ଦୁଧ ?
ଡାକ୍ତର : ଖାଇବେ ।
ଯଶୋଦା : ଦହି ?
ଡାକ୍ତର : ଖାଇବେ ନାହିଁ ।
ଯଶୋଦା : ଛେନା ?
ଡାକ୍ତର : ଖାଇବେ ।
ଯଶୋଦା : ଆଉ···ଆଉ କଣ ଡା' ନା ଟି···
ଡାକ୍ତର : ( ଆଖିବୁଜି ) ଖାଇବେ ନାହିଁ·· ଖାଇବେ···ଖାଇବେ ନାହିଁ···ଖାଇବେ···
ଖାଇବେ ନାହିଁ···ଖାଇବେ···
ରାଧା : ମୁଁ ଏବେ କଣ ମନେରଖିବ ମା' ?
ଡାକ୍ତର : ଖାଇବେ ନାହିଁ··ଖାଇବେ···ଖାଇବେ ନାହିଁ···
ଯଶୋଦା : ଆଜ୍ଞା, ଆଜ୍ଞା ଡାକ୍ତର ବାବୁ !
ଡାକ୍ତର : ଖାଇବେ—ଖାଇବେ ନାହିଁ—( ଟିକିଏ ବଡ଼ପାଟିରେ ) ଖାଇବେ···
ହରିଶ : ( ଚକାବକଣ ) ଖାଇଗଲା ଲୋ ମା' !

ଡାକ୍ତର : କଣ ହେଲା ଆପଣଙ୍କର ? ଆପଣ ତ ନିଘୋଡ଼ ନିଦରେ ଶୋଇଥିଲେ ?

ଦ୍ୱିଜାସ୍ସ : ସେଇ ହେଲା ମୋର ରୋଗ । ଯେତେବେଳେ ପାଉ ସେତେବେଳେ—ଯୋଉଠି ପାଉ ସେଠି ଶୋଇପଡ଼ୁଛି, ଆଉ ସ୍ୱପ୍ନ ଦେଖୁଛି । ସ୍ୱପ୍ନରେ ଏଇନେ କଏ ଗୋଟାଏ ମତେ ଖାଇବାକୁ ଗୋଡ଼ଉଥିଲା ।

ଡାକ୍ତର : ଆପଣଙ୍କେ କମ୍ପ ?

ଦ୍ୱିଜାସ୍ସ : କମ୍ପ ଫମ୍ପ କିଛି ନାହିଁ—ଖାଲି ନିଦ ଆଉ ସ୍ୱପ୍ନ—ସ୍ୱପ୍ନ ଆଉ ନିଦ ।

ଯଶୋଦା : ସେଇ ନିଦ ।

ଡାକ୍ତର : ନିଦ ରୋଗଟା ତାଙ୍କର ଆଜ୍ଞା !

ଯଶୋଦା : ମୋର ପଦେ କଥା···

ଡାକ୍ତର : ବେଶ୍ ।

ଯଶୋଦା : ଅସଲ କଥାଟା ମୋର ମନେପଡ଼ୁ ନଥିଲା । ତାଙ୍କୁ ମୋଟେ ନିଦ ହଉନାଇଁ ।

ଡାକ୍ତର : ଆପଣ କେମିତି ଜାଣିଲେ ତାଙ୍କୁ ନିଦ ହଉନାଇଁ ?

ଯଶୋଦା : ମୁଁ ଦିନ ରାତି ତାଙ୍କ ପାଖେ ପାଖେ ରହୁଛି—ମୁଁ ଜାଣିବିନାଇଁ ?

ଡାକ୍ତର : ଓ, ଆପଣ ଦିନରାତି ତାଙ୍କ ପାଖେ ପାଖେ ରହୁଚନ୍ତି ! ବେଶ, ବିଶୁବାବୁ, ସ୍ଲିପିଙ୍ଗ୍ ପିଲ୍—ନିଦ ଔଷଧ ।

ଯଶୋଦା : ( ଖୁସିହେଇ ) ହଁ ଆଜ୍ଞା, ମୁଁ ଶୁଣିଚି—ନିଦ ଔଷଧ ଦେଲେ ଭଲ ନିଦ ହୁଏ—ସେଇ ବଟିକା ଦିଅନ୍ତୁ । ( ବିଶୁ ଔଷଧ ଆଣିଲେ )

ବିଶୁ : ଏଇ ନିଅନ୍ତୁ ।

ଯଶୋଦା : ନେ ରାଧା—ଔଷଧ ରଖ—ନିଦ ଔଷଧ ।

ରାଧା : କେମିତି କେତେ ଖାଇବେ ?

ଡାକ୍ତର : ଫାଲେ—ଗୋଟିଏ ବଟିକାରୁ ଫାଲେ ଖାଇ ଶୋଇପଡ଼ିବେ ।

ଯଶୋଦା : ଆଜ୍ଞା, ତାଙ୍କୁ ଫାଲେ ଔଷଧ କଣ କାମ ଦବ ?

ଡାକ୍ତର : ଏ ନିଦଔଷଧ ଆପଣଙ୍କ ସ୍ୱାମୀ ଖାଇବେ ନାହିଁ—ଆପଣ ଖାଇବେ—ଆପଣଙ୍କୁ ଠିକ୍ କାମ ଦେବ ।

ଯଶୋଦା : ମୁଁ କାହିଁକି ଖାଇବି ଡାକ୍ତରବାବୁ—ମୋର କଣ ହେଇଚି ?

ଡାକ୍ତର : ଆପଣହିଁ ଖାଇବେ । ଆପଣ ନିଦ ଔଷଧ ଖାଇ ଶୋଇପଡ଼ିଲେ ଆପଣଙ୍କର ସ୍ୱାମୀ ଆରାମରେ ଶୋଇବେ । ବୁଝିଲେ—ଏଥର ଉଠିବା ହୁଅନ୍ତୁ ।

ଯଶୋଦା : ହଉ···ରାଧା···

ରାଧା : ହଁ ମା'—ଆଉ ତ କିଛି ବୁଝିବାର ନାହିଁ—ଯିବା ।

ଯଶୋଦା : ଆଜ୍ଞା, ଏ ଔଷଧ ଦାମ୍ଟା ?

ଡାକ୍ତର : ନାଇଁ ଆଜ୍ଞା, ଦାମ୍ କିଛି ନାହିଁ । ଏ ଔଷଧ ଆମେ ଆପଣଙ୍କୁ ସେମିତି ଦେଲୁ । ଆପଣ ଏଥିରୁ ପାନେ ଖାଇ ଶୋଇଯା'ନ୍ତୁ, ଦେଖିବେ ସବୁ ଠିକ୍ ହୋଇଯିବ···ନମସ୍କାର ।

ଯଶୋଦା : ନମସ୍କାର । ଯାଉଚୁ ।

( ଯଶୋଦା ଓ ରାଧା ଚାଲିଗଲେ । ଡାକ୍ତର ଯେମିତି ଅବଶ ହୋଇ ଚୌକି ଉପରେ ଢଳିପଡ଼ିଲେ । )

ଡାକ୍ତର : ବଣ୍ଟୁବାବୁ !

ବଣ୍ଟୁ : ସାର୍ ! ସେ ଇଂରାଜୀ ଭଦ୍ରମହିଳା ପିନା ତାଙ୍କ ଡାକ୍ତରଙ୍କ ପାଇଁ ବାକ୍ସ ଭର୍ତ୍ତି ଔଷଧ ରଖିଦେଲେ—ଇଏ ଆପଣଙ୍କ ପାଇଁ କଣ ଛାଡ଼ିଗଲେ ?

ଡାକ୍ତର : ସବେ କଥା ।

ସ୍ତ୍ରୀ-କଣ୍ଠ : (ବାହାରୁ) ଡାକ୍ତରବାବୁ ଅଛନ୍ତି ?

( ଡାକ୍ତର ସଜାଗ ହୋଇ ବସିଲେ । ବଣ୍ଟୁବାବୁ ପରଦା ଉଠାଇଲରୁ ଦେଖିଲେ )

ଡାକ୍ତର : କଏ ?

ବଣ୍ଟୁ : ଜଣେ ଭଦ୍ରମହିଳା ।

ଡାକ୍ତର : ମଧ୍ୟବୟସ୍କା ?

ବଣ୍ଟୁ : ହଁ !

ଡାକ୍ତର : ବଣ୍ଟୁବାବୁ !

ବଣ୍ଟୁ : ସାର୍ ?

ଡାକ୍ତର : ସେ ବଡ଼ ଗ୍ଲାସରେ ଗାଧେ ଥଣ୍ଡା ପାଣି···

□□□

# ଦେଖାଦେଖି

**ଚରିତ୍ର**

ଭୋଳାନାଥ : ପ୍ରାୟ ପଚାଶ ବର୍ଷ ବୟସ୍କ ଗାଁ ମୁଖିଆ ଢଙ୍ଗର ସରଳପ୍ରାଣ ଭଦ୍ରଲୋକ ।

ମକୁ : ଭୋଳାନାଥଙ୍କ ଭଣଜା ତଥା ପାଳିତ ପୁତ୍ର । ଅବିବାହିତ ଯୁବକ ।

ଗୋପସୁନ୍ଦର : ମକୁର ଭାବୀ ଶ୍ୱଶୁର, ସୁପୁରୁଷ ।

ଧଡ଼ି ଗୋପସୁନ୍ଦରଙ୍କ ଅନୁଚର ।

ମନ୍ଦର : ମଧ୍ୟବୟସ୍କ ଗ୍ରାମବାସୀ ଭଦ୍ରଲୋକ ।

ଇନ୍ଦୁମତୀ : ଭୋଳାନାଥଙ୍କ ସ୍ତ୍ରୀ ।

ମାଳୀ : ଇନ୍ଦୁମତୀଙ୍କ ଭ୍ରାତୃଷ୍ପୁତ୍ରୀ—ଅବିବାହିତା ତରୁଣୀ ।

[ ଗ୍ରାମାଞ୍ଚଳର ଏକ ସ୍ୱଚ୍ଛଳ ପରିବାରର ମୁଖ୍ୟ ଭୋଳାନାଥଙ୍କ ବାସଗୃହର ଏକ କୋଠରି । ସମୟ—ଆଦ୍ୟ ଅପରାହ୍ଣ । ଆସନ ଉପରେ ବସିଛନ୍ତି ଭୋଳାନାଥ । ପାଖରେ କିଛି କାଗଜପତ୍ର । ସେଇ କୋଠରିରେ ଟିକିଏ ଦୂରରେ ଭୋଳାନାଥଙ୍କ ପଛକରି ବସିଛନ୍ତି ଇନ୍ଦୁମତୀ—ପାଖରେ ପାନ ସରଞ୍ଜାମ । ]

ଭୋଳା : ତମେ ଆସିବଟି ମୋ ପାଖକୁ—ଆସ ।

ଇନ୍ଦୁ : ହଁ ହଁ, ଆସୁଛି ।

ଭୋଳା : ମୁଁ କହୁଛି ଆଜି ଏ ହିସାବପତ୍ର ତାଲିକା—ଯେତେ ଯାହା କାଗଜପତ୍ର କାମ ସବୁ ଶେଷ କରିବାକୁ ହେବ, ଆଜି ଦିନଟା ଭଲ । ମୁଁ ଆଜି ଦି'ଥର ପାଞ୍ଜି ଦେଖି-ସାରିଲିଣି । ଆଜି ତିଥି ହଉଛି···କି ତିଥିଟି ଆଜି···ହଇଓ, କି ତିଥିଟି ଆଜି ?

ଇନ୍ଦୁ : ତେମେ ପରା ଆଜି ଦି'ଥର ପାଞ୍ଜି ଦେଖିଲଣି ?

ଭୋଳା : ତମେ ସେଠି କଣ କରୁଛ ? ମୁଁ ପରା ତମକୁ ଡାକିଲି ।

ଇନ୍ଦୁ : ଯାଉଛି···

ଭୋଳା : ସେଠି ତ ହେଇ ଆସନ ଉପରେ ଟେକା ମେଲି ବସିଲଣି !

ଇନ୍ଦୁ : ଭୁଲ ପରା, ଯାଉଛି ।

ଭୋଳା : ମୋ' ଆଡ଼କୁ ପଛକରି ବସି କଣ କରୁଛ ସେଠି ?

ଇନ୍ଦୁ : ପାନ ଖଣ୍ଡେ ଭାଙ୍ଗି ଯାଉଛି ।

ଭୋଳା : ତମର ପୁଣି ଏତିକିବେଳେ ପାନ ଭାଙ୍ଗିବାକୁ ଥିଲା ?

ଇନ୍ଦୁ : ପାନ ଭାଙ୍ଗିବାକୁ କଣ କାହାର ଠିକଣା ବେଳ ଥାଏ ନା ପାନ ଭାଙ୍ଗିବାକୁ କାହାକୁ ବେଳ ଲାଗେ ? ମୋର ତ ପୁଣି ସବୁବେଳେ ଆଠଦିନକୁ ଭଙ୍ଗା-ହୁଅ ଥାଏ ।

ଭୋଳା : ଗୋଟାଏ ଦୋଷ ମୁଁ ସବୁଦିନେ ତମର ଦେଖେ, ଜାଣେ, ବୁଝେ—ହେଲେ ତମକୁ କହିବାକୁ ଭୁଲିଯାଏ । ( ଇନ୍ଦୁ ପାନ ଭାଙ୍ଗୁଥାନ୍ତି )

ଇନ୍ଦୁ : କାହିଁକି ତମର ଏଡ଼େ ଦୟା ? ମୋ' ଦୋଷ କଥା ପୁଣି ତମେ ଭୁଲିଯାଉଛ ?

ଭୋଳା : ଭୁଲି ତ ଯାଉଛି ।

ଇନ୍ଦୁ : ଏଇନେ ତା'ହେଲେ କୁହ । ମୁଁ ଏଇ ପାନଭଙ୍ଗା ଅଧାରଖି ବସିଲି, କୁହ ।

ଖୋଲା : କଥାଟା ହଉଚି, ମୁଁ ଯେତେବେଳେ ତମକୁ ଗୋଟାଏ କିଛି ଜରୁରି କାମରେ ଡାକେ, ତମେ ସାଙ୍ଗେ ସାଙ୍ଗେ ପାନ ଭାଙ୍ଗି ବସ । ( ଇନ୍ଦୁ କୌତୁକଭରା ଦୃଷ୍ଟିରେ ସ୍ୱାମୀଙ୍କ ଆଡ଼େ ଚାହିଁରହିଲେ )

ଖୋଲା : ଏମିତି ବଲବଲ କରି ମୋ ଆଡ଼କୁ ଅନେଇଁ ରହିଲ କଣ ? ଏଇଟା ସତକଥା ନୁହେଁ ?

ଇନ୍ଦୁ : ( ରହସ୍ୟ କରି ) ହଁ, ସତ କଥା ।

ଖୋଲା : ସତକଥାଟି ! ମୁଁ ଜାଣେ ପରା, ମୁଁ କଥାଟା ଠିକ୍ ଧରିପାରିଚି । ଯେତେବେଳେ ତମକୁ ଗୋଟାଏ କିଛି ଜରୁରି ଦରକାରୀ କାମରେ ମୁଁ ଡାକିବି, ତମେ ସଙ୍ଗେ ସଙ୍ଗେ ପାନ ଭାଙ୍ଗି ବସିବ ।...କାହିଁକି ?

ଇନ୍ଦୁ : ଡରରେ ।

ଖୋଲା : ଡରରେ ? ଡରରେ କଣ ?

ଇନ୍ଦୁ : ହଁ ପରା, ଡରରେ । ତେମେ ଯେତେବେଳେ ତରବର ହୋଇ ମତେ ଅତରଗ୍ରନ୍ଥଆ ଡାକ ଗ୍ଣତ୍, ସେତେବେଳେ ତମ ପାଟିରୁ ତ କଥା ଛୁଟେନାହିଁ, ଛୁଟେ ଢେଲା—ଖଣ୍ଡ ଖଣ୍ଡ ମାଙ୍କଡ଼ା ପଥର !

ଖୋଲା : ସେଇଟା ତ ମୋର କଥା କହିବାର ଗୋଟାଏ ଢଙ୍ଗ ।

ଇନ୍ଦୁ : ହେଲେ ସେଇ ଡରରେ ପରା ମୁଁ ପାନଡାଲା ପାଖରେ ବସିପଡ଼ି ଆଗେ ତମପାଇଁ ଦି'ଖଣ୍ଡେ ପାନ ଭାଙ୍ଗି ଦିଏ ! ପାଟିରେ ପାନ ଖଣ୍ଡେ ଜାକିଲେ ଆଉ ପଥର ବାହାରିବ ନାହିଁ ।

ଖୋଲା : ଥଟ୍ଟା କରୁଚ ନା ?

ଇନ୍ଦୁ : ଥଟ୍ଟା କାହିଁକି କରିବି ମ ? ଏଇ ପରା ତମ ପାଇଁ ପାନ ଭାଙ୍ଗୁଚି । ତମ ଡବାରେ ଆଉ ପାନ ନାହିଁ ତ ?

ଖୋଲା : ଦି'ଖଣ୍ଡ ବୋଲି ପାନ ଦେଇଥିଲ, ଏତେବେଳଯାଏ ଥା'ନ୍ତା ?

ଇନ୍ଦୁ : ହଁ, ଏ ଭିତରେ ଦି'ଥର ପାଞ୍ଜି ଦେଖିସାରିଲଣି, ଦି'ଖଣ୍ଡ ପାନ ଅଣ୍ଟନ୍ତା କେମିତି ?

ଖୋଲା : ଆରେ ବାବୁ, ଦି'ଥର ଦେଖିଲେ କଣ ହେଲା, ତିଥିଟା ଭୁଲିଗଲିଣି ।...ହଁ, ପାଞ୍ଜିଟା ନେଇ ଆସ—ଏଇ ସେଇଠି, ତମ ମୁଣ୍ଡ ଉପରେ ଅଛି ।

ଇନ୍ଦୁ : ମୁଣ୍ଡ ଉପରେ !

ଖୋଲା : ଆରେ ବାବୁ, ତମ ମୁଣ୍ଡ ଉପରେ ସେଇ ଥାକରେ ଅଛି !!

ଇନ୍ଦୁ : ରକ୍ଷା ! ( ପାଖକୁ ଆସି ) ଏଇ ନିଅ—ପାନ, ପାଞ୍ଜି ।

ଖେଳା : ତମେ ବସ ଏଠି । ( ଇନ୍ଦୁ ବସିଲେ ) ଆଗେ ପାଞ୍ଜିଟା ଦେଖେ । ( ଦେଖି ) ହୁଁ, ଆଜ ତିଥି ହେଲା—ତ୍ରୟୋଦଶୀ । ବୁଝିଲ, ପାଞ୍ଜିକାରମାନେ କହନ୍ତି—ଏଇ ତ୍ରୟୋଦଶୀ ତିଥିଠୁଁ ବଳି ତିଥି ଆଉ ନାହିଁ । ଏ ତିଥିରେ ପଞ୍ଚଗ୍ରହକୂଟ କ ନବଗ୍ରହକୂଟ ପଡ଼ିଥାଉ—ତେବେ ଯୋଗିନୀ ତମ ସାମନା ସାମନି ଦଗ ମାଡ଼ି ବସିଥାଉ—କିଛି ନମାନି ସବୁ କଣ ଗୁଲିଯିବ । ଭାରି ଭଲ ତିଥି ଏଇଟା ।··· ଆଉ ଆଜ ଚନ୍ଦ୍ର ହେଲା—ମୀନଚନ୍ଦ୍ର—ପୂର୍ବ ଛାଠିଏ ଦଣ୍ଡ । ମୀନଚନ୍ଦ୍ରଟା ତମକୁ ଭଲ, ମତେ ଭଲ ।··· ଯୋଗିନୀ ପଶ୍ଚିମେ ।···ମୁଁ ତ ଏଇ ପୂର୍ବକୁ ମୁହଁକରି ବସିଚ—ଆଉ ଆମ ଘର ମୁହଁଟା ଦକ୍ଷିଣକୁ—ବାସ୍ ।

ଇନ୍ଦୁ : ତମକୁ ଏଡ଼େ ସୁନ୍ଦର ପାଞ୍ଜି ଦେଖି ଆସେ ବୋଲି ମୁଁ ଜାଣିନଥିଲି ।

ଖେଳା : ସେଇ କଥା । ଖାଲି ପାଞ୍ଜି ଦେଖି ପାରିବାଟା ବଡ଼ କଥା ନୁହେଁ—ପାଞ୍ଜି ଦେଖି ଏମିତି ଗୋଟାଏ ସୁନ୍ଦର ତିଥି ବାହାର କରି ଥୋଇବା ହେଲା ବାହାଦୁରୀ ।

ଇନ୍ଦୁ : ହେଲା ଯେ, ହେଲେ ଏମିତି ଭଲ ତିଥିଟା ଆଜ କଣ ଆମର ଦରକାର ମୁଁ ଜାଣିପାରୁନି । କହୁଚ ତ ଆଜ ବସି ତାଲିକା କରିବ · ଏଇ କବା କଥା ପାଇଁ···

ଖେଳା : ଏଇଠି ତମ ସାଙ୍ଗରେ ମୋ ମତର ଅମେଳ । ଏଇଟା ପୁଣି ··କବା କଥା । ହଇଓ, ଏ ତାଲିକାଟାକୁ ସିନା ତମେ କବା କଥା କହୁଚ—ହେଲେ ଯୋଉଥିପାଇଁ ଏ ତାଲିକା, ସେଇଟା ତମ ଆଖିକୁ ଦିଶୁନି ନାହିଁ ?···ସେଇଟାକୁ ତ ତମେ କବା କଥା କହିପାରିବ ନାଇଁ ! ନା—ନା—କେବେ ନୁହେଁ—କସ୍ମିନ୍‌କାଳେ ନୁହେଁ ।

ଇନ୍ଦୁ : ଓହୋ, ଏ କବା କଥାକୁ କାଇଁକି ଏମିତି ହଉଚ ?

ଖେଳା : ପୁଣି ସେଇ କବା କଥା ?

ଇନ୍ଦୁ : ନାଇଁ ମ, ମୁଁ କହୁଥିଲି—ମୁଁ ଏମିତି କବା କଥା କହିଲି ଯେ ତେମେ ଏମିତି ଯୋଷି ହଉଚ ?

ଖେଳା : ଶୁଣ, ଆଜ ଗୋଟାଏ ଅତି ଭଲ ଦିନ ।

ଇନ୍ଦୁ : ସେଇ କଥା ତ ! ଭଲ ଦିନ ବୋଲି ମିଛଟାରେ ଏଣୁ ତେଣୁ କଥାରେ ଆସି ଏତେ ବେଳ ହେଲାଣି ।

ଖେଳା : (ରାଗି) ତା' ମାନେ ତୁମେ କହୁଚ ଯେ ଆଜ ଦିନଟା ଭଲ ନୁହେଁ ?

ଇନ୍ଦୁ : ଏଇଲେ ମା', ତମେ ରାଗିଲଣି ।

ଖେଳା : ରାଗିବି ନାହିଁ ? ଏମିତି କଥା କହିଲେ କେଉଁ ପୁଅଟା ନ ରାଗିବ କହିଲ ଦେଖି !

ଇନ୍ଦୁ : ନାହିଁମ, ରାଗ ନାହିଁ । କହୁଚ ଆଜ ଭଲ ଦିନଟା···

ଖେଳା : ମୁଁ କହୁଚ···ଆଉ ତୁମେ କହୁନ, ନା ?

ଇନ୍ଦୁ : କ କଥା ଯେ ତମେ କୁହ ! ପାଞ୍ଜିରୁ ତ ବାହାରିଲା ଅଜ ଭଲ ଦିନ—ତାହା କହିବାରେ କଣ ଅଛି ?

ସ୍ୱେଳା : ତୁମ୍ଭ ଲ୍··· ତମେ ମତେ ଆଜ କିଛି କରେଇଦବନାହିଁ ।

ଇନ୍ଦୁ : କାହିଁକି ? କଣ ହେଲା ? ମୁଁ କଣ କଲି ?

ସ୍ୱେଳା : ପାଞ୍ଜିରୁ ବାହାରିଲା କଣ ? ଏଁ ? ପାଞ୍ଜିରେ କିଛି ନଥିଲା—ମନରୁ ବାହାରିଲା !

ଇନ୍ଦୁ : ତମେ ପରା ଖୋଜି ଖୋଜି ବାହାରକଲ ।

ସ୍ୱେଳା : ତମର···ତମର କଣ ହେଉଚି ମତେ କହିବ କି ?

ଇନ୍ଦୁ : କଣ ହେଉଚି ?

ସ୍ୱେଳା : "ପାଞ୍ଜିରୁ ବାହାରିଲା"—"ମୁଁ ଖୋଜି ଖୋଜି ବାହାର କଲି"—ଏମିତି ଉପରଠାଉରିଆ କୁବୁଦ୍ଧିଆ କଥା କଣ କହୁଚ ?

ଇନ୍ଦୁ : ତମେ ପରା ନିଜେ କହିଲ···

ସ୍ୱେଳା : (ରାଗି) ଛତ୍ରୀ କହିଲି !···ଛିଓ, ତମ ଆଖି ଆଗରେ ଏଠି ହେଇ ଥୁଆ ହେଉଚି ବିଖ୍ୟାତ ଦୃକ୍‌ସିଦ୍ଧ ପଞ୍ଜିକା ! ଖଡ଼ୀରତ୍ନ ଉପାଧିଧାରୀ ମହା ମହା ଗଣକ ଜ୍ୟୋତିଷମାନେ ନିର୍ଭୁଲ ଗଣନା କରି ଏ ପଞ୍ଜିକା ପ୍ରକାଶ କରିଚନ୍ତି । ଆଉ ତୁମେ କହୁଚ କଣ ନା···

ଇନ୍ଦୁ : ନାଇଁ ନାଇଁ, ମୁଁ କିଛି କହୁନି । ମୋର ସବୁ ଭୁଲ୍ । ତମେ ତମ ତାଲିକା କାମ ଆରମ୍ଭ କରିବଟି ।

ସ୍ୱେଳା : ମନଟା ବିଗିଡ଼ି ଗଲେ କିଛି କାମ ହେଇ ପାରିବ ନାଇଁ ।

ଇନ୍ଦୁ : ନାଇଁମ, ମନ ବିଗିଡ଼ିବ କାହିଁକି ? ଦିଅ, ତାଲିକା କାମ ଆରମ୍ଭ କର ।

ସ୍ୱେଳା : ହଉ ଆଣ—କାଗଜ କଲମ ଆଣ ।

ଇନ୍ଦୁ : ଏଠି ପରା ହେଇ କାଗଜ ଥୁଆହେଇଚି ।

ସ୍ୱେଳା : ଏ ଗୁଡ଼ା ଛଠା କାଗଜ । ଏଇ ଯେ ସୁଟ୍‌କେଶ୍ ଉପରେ ଭଲ କାଗଜ କଲମ ଅଛି ଆଣ ।

ଇନ୍ଦୁ : ମା' ଲୋ ! ମତେ ପୁଣି ଉଠେଇଲ ? (ସୁଟ୍‌କେଶ୍ ପାଖକୁ ଗଲେ) ଏଠି ତ ତିନିଟା କଲମ ଥୁଆ ହେଇଚି—କୋଉ କଲମଟା ନେବ ?

ସ୍ୱେଳା : ସେ ନାଲି କଲମଟା ଆଣ—ନାଲି ନାଲି—ଶୁଭ କାମ ପରା ଏଇଟା—ନାଲିରେ ଆରମ୍ଭ ହେବ ।

ଇନ୍ଦୁ : ଏଇ ନିଅ, ନାଲି କଲମ—ଧଳା କାଗଜ—ହେଲା ?

ସ୍ୱେଳା : ତମେ ବସ । (ଇନ୍ଦୁ ବସିଲେ) ··ହୁଁ···ଉଁ···ହୁଁ···ନ୍ନ୍ ।

ଇନ୍ଦୁ : ଇଏ କଣ ମ ? କଲମଟା ଫିଟଉଚ —ବନ୍ଦ୍ କରୁଚ · ଫିଟଉଚ, ବନ୍ଦ କରୁଚ । ଆଉ ଏମିତି ହୁଁ ହୁଁ କାହିଁକି ହେଉଚ ?

ଖେଳା : ମନେପଡ଼ୁନାହିଁ ।

ଇନ୍ଦୁ : କଣ ମନେପଡ଼ୁନାହିଁ ?

ଖେଳା : ଆରମ୍ଭଟା । ମାନେ···ଆରମ୍ଭରେ···

ଇନ୍ଦୁ : ତାଲିକା ଆରମ୍ଭ ?

ଖେଳା : ନାହିଁ ହେ ବାବୁ, ତାଲିକା ଆରମ୍ଭ ନୁହେଁ—ଯେଉଁଠାରୁ ଆରମ୍ଭ ହୋଇ ତାଲିକା ଲେଖା ସରିଲେ ।···କେତେ କେତେ ଲୋକଙ୍କର କେତେ ତାଲିକା କରିଥିବି—ନିଜ ବେଳକୁ ମନେପଡ଼ୁନାହିଁ···(ସ୍ତବ) ଓଁ ଶ୍ରୀହରି ଶରଣ ?···ଶ୍ରୀଗୁରୁ ନମଃ ? ···ନା—ମନେପଡ଼ୁନାହିଁ ।

ଇନ୍ଦୁ : କଣ ପ୍ରଜାପତି ନା କଣ ଲେଖା ହୁଏ ପରା ?

ଖେଳା : ହା···ରୁ ! ପ୍ରଜାପତି କାହିଁ କେତେ ଦୂରରେ । ପ୍ରଜାପତି ବେଳ ବର୍ତ୍ତମାନ ଆସିନାହିଁ ।

ଇନ୍ଦୁ : ତା'ହେଲେ ଯାହା ପାରି ତା' ଗୋଟାଏ ଲେଖିଦିଅ ।

ଖେଳା : ଏଇ, ଏଇଠି ମାଇପି ବୁଦ୍ଧି ବାହାରିଲା ! ଯାହାପାରି ତାହା ଲେଖିଦେବି ? କେମିତି—କେମିତି ଯାହା ପାରି ତାହା ଲେଖିଦେବି ? ଏଇଟା ଯାହା ପାରି ତାହା କାମ ? ଏ କାମ ପାଇଁ ବାନ୍ଧିମତ ଗୋଟାଏ ଧାରା ଅଛି—ନିୟମ ଅଛି—ବିଧିବିଧାନ ଅଛି । ଏମିତି ଯଦି ଯେଉଁଠି ପାରି ସେଠି ଯାହା ପାରି ତାହା ହୋଇ ଯାଉଥାନ୍ତା—ଏ ସଂସାର ଆଉ ସଂସାର ହୋଇ ନ ରହି ଗୋଟାଏ ଯାହାପାରି ତାହା ହୋଇଯାଇଥା'ନ୍ତା ! ବୁଝୁଛ ?

ଇନ୍ଦୁ : ମୁଁ କଣ ବୁଝିବି—ତମେ ବୁଝ ।

ଖେଳା : ମୁଁ ବୁଝିବି ?

ଇନ୍ଦୁ : ହଁ ।

ଖେଳା : ମତେ ବୁଝେଇବ କିଏ ? ତୁମେ ?

ଇନ୍ଦୁ : ମୁଁ କାହିଁକି ତମକୁ ବୁଝେଇବି ହୋ ? ମୋର ସେ କ୍ଷମତା କାହିଁ ? ତମର କଥାରୁ ତମେ ବୁଝ ।

ଖେଳା : କଣ ମୋ କଥାରୁ କଣ ମୁଁ ବୁଝିବି ?

ଇନ୍ଦୁ : ଏଇ ଯୋଉ କଥା ତେମେ ଏଇନେ କହିଲ—ଏଇ ସଂସାର କଥା ।

ଖେଳା : ହଁ, କହିଲିତ, କଣ ହେଲା ?

ଇନ୍ଦୁ : ତମ ସଂସାର ସେଇଆ ହୋଇଗଲାଣି—ଯାହାପାରି ତା ।

ଖେଳା : ସତେ ? ତମର ବୁଦ୍ଧିର ଦଉଡ଼ ପୁଣି ଏତେ ଦୂର ଗଲାଣି ?

ଇନ୍ଦୁ : ମୁଁ ଯାହା କହୁଛି ଠିକ୍ । ତମେ ଏତେ ଲୋକଙ୍କର ଏତେ ତାଲିକା କରି ଦେଇଛ —ଆଉ ତମ ନିଜ ତାଲିକାବେଳକୁ ହରି ଲେଖିବ କି ଗୁରୁ ଲେଖିବ ତମର ମନେ

ପଡ଼ୁନ ! ଏଥିରେ ତମ ସଂସାର ଆଉ ସଂସାର ହୋଇ ରହୁନାହିଁ । ଯାହା ପାଉ ତାହା ହୋଇଗଲଣି ।

ଷୋଳା : ଜାଣିଚ, ଭୁଲିଯିବା ଖୁବ୍ ବଡ଼ ବଡ଼ ଲୋକଙ୍କ କାମ । ମହାରାଜା ଦଶରଥ କୈକେୟୀ ରାଣୀଙ୍କୁ ତାଙ୍କ ବରଦେବା କଥାଟା ଏକାବେଳକେ ଭୁଲିଯାଇଥିଲେ । ନକେ ମହର୍ଷି ବାଲ୍ମୀକ ରାମାୟଣ ଲେଖୁଥିଲାବେଳେ ତାଙ୍କ ମନ ଭିତରର ଭାବନା ଗୁଡ଼ିକ ବେଳେବେଳେ ଭୁଲିଯାଉଥିଲେ । ସେଇଠୁ ସେ ଗୋଟିଏ ଶୁଆ ଆଣି ପୋଷିଲେ । ତାଙ୍କ ଭିତରେ ଯେତେ ଭବ ଭାବନାଗୁଡ଼ିକ ଉଠୁଥିଲା ହଠେ, ସେ ଗୁଡ଼ିକ ସେ ଗଡ଼ ଗଡ଼ କରି ଶୁଆ ଆଗରେ ଗାଇଯା'ନ୍ତି । ଯେତେବେଳେ ସେ ଲେଖଣୀ ପଞ୍ଚ ଧରି ବସନ୍ତି, ଶୁଆ ସେ ପାଠ ପଢ଼େ—ବାଲ୍ମୀକ ତା'ଠୁଁ ଶୁଣି ଶୁଣି ଲେଖନ୍ତି । ଆଉ ମୁଁ ଭୁଲିଗଲି ବୋଲି ତମେ ମତେ ଦୋଷ ଦଉଚ ? ଭୁଲିଯିବା ଗୋଟାଏ ବାହାଦୁରୀ ।

ଇନ୍ଦୁ : ହେଲା ଏବେ, ତମେ ଭୁଲ । ମତେ ଯଦି କେଜାଣି ବାଲ୍ମୀକ ଋଷିଙ୍କ ପରି ଶୁଆ ପାଠ ପଢ଼େଇଥା'ନ୍ତି—ମୁଁ ତମକୁ ଚେତେଇ ଦଉଥାନ୍ତି—ତମେ ଲେଖନ୍ତି । ସେ ପାଠ ତ ପଢ଼େଇନ । ଏଇନେ ଏବେ କାମ ଚଳିବା ପାଇଁ ସିଦ୍ଧିରସ୍ତୁରୁ ଆରମ୍ଭ କରିଦଉନ !

ଷୋଳା : କଣ କହୁଲ—କଣ କହୁଲ ? ସିଦ୍ଧିରସ୍ତୁ !

ଇନ୍ଦୁ : ହଁ, ଶ୍ରୀ ସିଦ୍ଧିରସ୍ତୁ ଲେଖି ତାଲିକା ଲେଖା ଆରମ୍ଭ କର ।

ଷୋଳା : ହଉଏ, ଅଳ୍ପ ହଉ ବହୁତ ହଉ—ତମେ ପରା କୁଆଡ଼େ ତମ ପିଲାଦିନେ ଇସ୍କୁଲ ପାଠ ପଢ଼ିଥିଲ ?

ଇନ୍ଦୁ : ପାଠ ସମସ୍ତେ ପିଲାଦିନେ ପଢ଼ନ୍ତି—ମୋ ବୟସରେ କେହି ପଢ଼ନ୍ତି ନାହିଁ ।

ଷୋଳା : ସେଇ କଥା ମୁଁ କହୁଚ—ପିଲାଦିନେ ପରା ତୁମେ ପାଠ ପଢ଼ୁଥିଲ ?

ଇନ୍ଦୁ : ହଁ, ପଢ଼ୁଥିଲି । ଶୁଣ, ଆଜିଯାଏ କହିନି ତମକୁ ସେ କଥା । ମୁଁ ଆମ ଗାଁ ନିମ୍ନ ପ୍ରାଥମିକ ଇସ୍କୁଲରେ ପଢ଼ୁଥିଲି । ଦିନେ ସାହାବ୍ ଇସ୍କୁଲ୍ ଦେଖିବାକୁ ଆସିଲା ।

ଷୋଳା : କୋଉ ସାହାବ୍ ? ସେନ୍ ସାହାବ୍ ନା ରାୟ ସାହାବ୍ ନା ସେନାପତି ସାହାବ୍ ?

ଇନ୍ଦୁ : ନାହିଁଗୋ, ପୁରା ଇଂରେଜୀ ସାହାବ୍—ଗୋରା । ମୁଁ ଭଲ ପଢ଼ୁଥାଏ ବୋଲି ସାହାବ୍ ବେକରେ ମୁଁ ନେଇ ଫୁଲମାଳ ଦେଲି ।

ଷୋଳା : (ରହସ୍ୟକରି) କଣ, ବରଣମାଳା ?

ଇନ୍ଦୁ : ଶୁଣ, ସେଇ ବରଣମାଳା କଥା କହୁଚ । ସାହାବ ଖୁସି ହୋଇ ମତେ ଅଙ୍କ ପଚାରିଲା । କହିଲା—ବେଟୀ···

ଷୋଳା : ବେଟି ! ( ହସି ) ବେଟି !!

ଇନ୍ଦୁ : ହଁ, ମୋର ସଫା ମନେଅଛି । କହିଲ, ବେଠୀ କହ ତ—ଦୁଇରେ ଦୁଇ ମିଶିଲେ କେତେ ?

ଖେଲ : ଓଃ ! (ହସି) ଏତେ ବଡ଼ ଗୋଟାଏ କଡ଼ା ପ୍ରଶ୍ନ ତମକୁ ପଚାରିଲି ! ତମ ମୁଣ୍ଡ ତ ଗୋଲମାଲ ହୋଇଯାଇଥିବ ?

ଇନ୍ଦୁ : ଶୁଣ ମୁଁ କଣ କହିଲି ।…କହିଲି —ଦୁଇରେ ଦୁଇ ଗୁଣିଲେ ଯେତେ, ଦୁଇରେ ଦୁଇ ମିଶିଲେ ସେତେ ।

ଖେଲ : ଏଁ !!

ଇନ୍ଦୁ : କଣ…ମୋ କଥା ଶୁଣି ଥ' ହୋଇ ରହିଗଲ ତ ! ସାହାବ୍ ବି ସେମିତି ଥ' ହୋଇ ରହିଗଲେ ।

ଖେଲ : ହୁଁ…ଏଭଳି ଉତ୍ତର ଶୁଣିଲେ ଇସ୍କୁଲ ସାହାବ୍‌କୁ କଏ ପଚାରେ, ଲାଟ୍‌ସାହେବ ତ ଥ' ହୋଇ ରହିଯିବାର କଥା ।

ଇନ୍ଦୁ : ସାହାବ ଭାରି ଖୁସି ହୋଇଗଲେ । ଇସ୍କୁଲ ଖାତାରେ ଲେଖିଦେଇଗଲେ—ଏ ପିଲା ବୃତ୍ତିପାଇବାର ଯୋଗ୍ୟ—ସ୍ୱା'କୁ ବୃତ୍ତିପରୀକ୍ଷାକୁ ପଠାଯାଉ ।

ଖେଲ : ସେଇଟୁ…ତୁମେ ପଠାହେଲ ?

ଇନ୍ଦୁ : କୋଉଠି ? ବାପା ରାଜିଥିଲେ—ଭାଇ ରାଜିଥିଲେ—ବୋଉ ରାଜିଥିଲା—ହେଲେ କେଜେମା ! ସିଏ ମୋଟେ ରାଜି ହେଲା ନାହିଁ । କହିଲା, ଇସ୍କୁଲରେ ଖଣ୍ଡେ ଫୁଲମାଳ ଦେଇଥିଲା ବୋଲି ତ ଏତେ କଥା—ନାତୁଣୀ ଯଦି ମୋର ବୃତ୍ତି ପାଇବ ନା, ସାହାବ୍ କହିବ ମୋ ବେକରେ ଏଥର ବରଣମାଳା ଦେ ।

ଖେଲ : ରକ୍ଷାହୋଇଚ, ତୁମେ ବୃତ୍ତି ପରୀକ୍ଷାକୁ ଯାଇନ । ହେଲେ ଦୁଇରେ ଦୁଇ ମିଶେଇବା ଯାଏ ପାଠ ଯେତେବେଳେ ତମେ ପଢ଼ିଥିଲ, କୋଉ ଅକଲରେ ମତେ ଏବେ କହୁଚ ଯେ ମୁଁ ସିଙ୍କିରସ୍ତୁରୁ ଆରମ୍ଭ କରିବ ?

ଇନ୍ଦୁ : କରିବନି ? ତମକୁ ଯେତେବେଳେ ପାଠ ଆସୁନି—ସବୁ ଭୁଲିଗଲଣି—କୁନିପିଲା ଚାଟଶାଳୀକୁ ନୂଆ ଯାଇ ସିଙ୍କିରସ୍ତୁରୁ ତା'ପାଠ ଆରମ୍ଭ କଲାଭଳି, ତମେ ସିଙ୍କିରସ୍ତୁରୁ ତମ ଲେଖା ଆରମ୍ଭ କରିଦିଅ, କାମ ତୁଟିଯିବ ।

ଖେଲ : (ରାଗି) ତୁନିହ । ଏ ବୟସରେ କୁନିପିଲା ହୋଇ ମୁଁ ସିଙ୍କିରସ୍ତୁ ଲେଖିବି—ନୂଆ ପାଠ ଆରମ୍ଭ କରିବି—ଏଇଆ ମତେ ତମେ କହୁଚ !… ଆଜି ଗୋଟାଏ ଭଲ ଦିନରେ ଏଣ୍ଡେଟେଣ୍ଡ ଗୁଡ଼ାଏ ବକ୍ ବକ୍ ହୋଇ ସବୁ ନଷ୍ଟଭ୍ରଷ୍ଟ କରିଦେଲା ଏ ଲୋକଟା !

( ରାଗରେ ଦ' ହାତ ଛୁଟିଦେଲେ )

ଇନ୍ଦୁ : ଇଏ କଣ ହେଲା ?

ଖେଳି : କଣ ହେଲା ?

ଇନ୍ଦୁ : ରଗିମାଗେ କଲମଟା ଝାଡ଼ିଦେଲ ଯେ, ମୋ ଲୁଗାଟା ଗଲା ।

ଖେଳି : ଆରେ ! ଇଏ କଣ ?

ଇନ୍ଦୁ : ଦେଖୁଚ ପଣତ ଗୋଟାଯାକ କାଳିଛିଟା—ଆଉ ପଚାରୁଚ ପୁଣି କ'ଣ ?

ଖେଳି : ଆହେ, ଏଇଟା କଣ ?

ଇନ୍ଦୁ : କେଉଁଟା ?

ଖେଳି : (କଲମ ଦେଖେଇ) ଏଇ—ଏଇ—ଏଇଟା—ମୋ ହାତରେ ମୁଁ ଧରିଚି ।

ଇନ୍ଦୁ : କଲମଟା ତ ହାତରେ ଧରିଚ—ଆଉ ଏତେ ଫଟେଇ ହଉଚ କ'ଣ ?

ଖେଳି : ଏଇଟା କି କଲମ ?

ଇନ୍ଦୁ : ହେଇଚି, ମୁଁ ପାଞ୍ଚବର୍ଷିଆ ପିଲା ନୁହେଁ ଯେ···

ଖେଳି : ବୟସ ସିନା ପାଞ୍ଚ ବର୍ଷ ନୁହେଁ, ବୁଦ୍ଧି ଏକାବେଳକେ ବାଚ୍ଛୁତ ବୁଦ୍ଧି । ମୁଁ ତମକୁ କି କଲମ ଆଣିବାକୁ କହିଥିଲି ?

ଇନ୍ଦୁ : ନାଲି କଲମ ପରା ?

ଖେଳି : ଏଇଟା ନାଲି କଲମ ?

ଇନ୍ଦୁ : ନୁହେଁ ? କଲମଟା ନାଲିଆ ନୁହେଁ ?

ଖେଳି : ଆରେ ବାବୁ, କଲମର ଉପର ରଙ୍ଗଟା ସିନା ନାଲିଆ—କଲମ ଭିତରେ ଯେ କଳା କାଳି !

ଇନ୍ଦୁ : ମୁଁ ଏବେ କେମିତି ଜାଣିବି ତମର କେଉଁ କଲମରେ କି କାଳି ? ସୁଟ୍‌କେଶ୍ ଉପରେ ତ ତିନିଟା କଲମ ଥୁଆ ହୋଇଚି—ଗୋଟାଏ ନାଲିଆ—ଗୋଟାଏ ନେଳିଆ—ଗୋଟାଏ ଛିଟ୍‌ଛିଟିକା । ମୁଁ ନାଲିଆଟା ଆଣିଲି ।···ତୁମେ ଏବେ କେଉଁ ବୁଦ୍ଧିରେ ନାଲିଆ କଲମରେ କଳା କାଳି ପୁରେଇଥିଲ ? ପୁଣି ଏତେ ଜୋର୍‌ରେ ଝାଡ଼ିଦେଲ ଯେ ଏ ପଣତ ସାରାଟା ଛିଟା ପଡ଼ିଯାଇଚି । ଅଉ କଣ ଏ ଦାଗ ଛାଡ଼ିବ ?

ଖେଳି : ଏ ସବୁ ତମର ସେ ଗୁଣମଣି ଭଉଣୀଙ୍କ କୀର୍ତ୍ତି । ଏ କଲମରେ ସେ କାଳି—ସେ କଲମରେ ଏ କାଳି—ଏଇ ପାଳି ତାର ଚାଲିଚି । ଆରେ ବାବୁ, ପକ୍ଷୀ କଲମ କୁଆଡ଼େ ଗଲା—କାଠି କଲମ କୁଆଡ଼େ ଗଲା—ହୋଲ୍‌ଡର୍ କୁଆଡ଼େ ଗଲା—ପଇସା ଶସ୍ତା ପଡ଼ିଚି ଯେ, ତିନିତିନିଟା ଫାଉଣ୍ଟେନ କଲମ କିଣା ହୋଇ ଆସିଲା ।···ଯୋଗକୁ ମୁଁ ସିନା ଲେଖା ଆରମ୍ଭ କରିନି—ଲେଖିଥିଲେ ଏ କଳା କାଳିରେ ଲେଖିଥାନ୍ତି ସିନା !

ଇନ୍ଦୁ : ତମର ତ ଗୁରୁ କି ହର ମନେପଡ଼ୁନି—ତୁମେ ଲେଖିଥାନ୍ତ କଣ ?

ଶ୍ୟାମ : ମନେପଡ଼ୁନି ବୋଲି ଏ ଶୁଭ କାମରେ ତମେ ମତେ କଳା କଲମଟା ଧରେଇଦେବ ...ଏଇ ବୁଦ୍ଧି ତମର ? ଯାଅ, ସେ ଆର କଲମଟା ଆଣ ।

ଇନ୍ଦୁ : ମୁଁ ଯିବ ନାହିଁ କି ଆଣିବ ନାହିଁ । ସେଥିରୁ କି କାଳି ନାହିଁ କି କାଳି ବାହାରେବ—ଶେଷକୁ ଦୋଷ ହେବ ମୋର !—କାହିଁକି ମ—ମୋ ଉପରେ ଏତେ ଚଢ଼ଉ କାହିଁକି ?

ଶ୍ୟାମ : ହୁଁ, ତମେ ତା'ହେଲେ ମୋ ସାଙ୍ଗରେ ଗୋଟାଏ କଳହ ଖଞ୍ଜିବ ବୋଲି ଏଠି ତିଆର ହୋଇ ବସିଚ ?

ଇନ୍ଦୁ : ଏଇ, ପୁଣି ତମର ସେଇ ପୁରୁଣା ଢଙ୍ଗ ବାହାରିଲା । ମୋର ଆଉ ଏଠି ବସିବା ଦର୍କାର ନାହିଁ—ମୁଁ ଉଠିଲି ।

ଶ୍ୟାମ : ଉଠିବ ତ ଉଠିବ, ସେଥିପାଇଁ ମୁଁ ଡରେଯାଉ ନାହିଁ ଯେ ! ତମେ ଏଠି ବସିଥିଲ କାହିଁକି ?

ଇନ୍ଦୁ : ହେଏ...ତମକୁ ଏମିତି ଦୋଷଦେଇ ଆସେ ? ଦ'ଘଡ଼ି ହେଲଣି, ମତେ କହୁ ହେଲେ କାମ କରେଇଦଉନ । ମୋର ତେଣେ ଦୁନିଆସାକର କାମ ପଡ଼ିଚ । ତାଲିକା ଲେଖା ହବ ବୋଲି ମତେ ଟାଣି ଯୋଷ୍ଟାର ଆଣି ବସେଇଲ ଭଲ ଏଠି ବସେଇଲ—ଛୁଟିପିଲାପରି ମୋ ହାତରେ ଏ କାମଟା ସେ କାମଟା କରେଇଲ —ମେଞ୍ଚାଏ କାଳି ଗୁଡି ମୋର ଏଡ଼େ ସୁନ୍ଦର ଲୁଗାଟାକୁ ସାରିଲ—ପୁଣି କହୁଚ କ'ଣ ନା କାହିଁକି ବସିଥିଲ ?

ଶ୍ୟାମ : ତମେ ବସିଚ କୋଉଠି ଜାଣିଚ ?

ଇନ୍ଦୁ : ନାହିଁ, ମୁଁ କହୁ ଜାଣିନାହିଁ ।

ଶ୍ୟାମ : (ରାଗି) ତମେ ପଶ୍ଚିମକୁ ମୁହଁକରି ବସିଚ । ପାଞ୍ଜି ଦେଖି ଦେଖି ମୁଁ ବାରବାର କରି କହୁଚ—ଯୋଗିନୀ ପଶ୍ଚିମରେ । ସେଥିପାଇଁ ମୁଁ ପୂର୍ବକୁ ମୁହଁକରି ବସିଲି । ତମକୁ ଏଠି ଏପାଖରେ ବସିବାକୁ କହିଲି । ତମେ ବସିବ ଥିଲ ଏଠି । କେତେବେଳେ ଏଠୁ ଉଠିଯାଇ ମୋ' ସାମନାରେ ଆସି ବସିଲଣି । ଏକାବେଳକେ ସମ୍ମୁଖ ଯୋଗିନୀ !!

ଇନ୍ଦୁ : ତମ ସାମନାରେ ତ ବସିଚ—ସମ୍ମୁଖ ଯୋଗିନୀ ହେଲି କେମିତି ? ସାମନାରେ ପରା ତମେ ବସିଚ ?

ଶ୍ୟାମ : କି ମୂର୍ଖ ଲୋକ ଇଏ ! କଉ, ମୋ ସାମନାରେ ବସିଲେ କଣ ହେଲା ? ଯୋଗିନୀ ପଶ୍ଚିମରେ । ତମେ ପଶ୍ଚିମ ମୁହାଁ ହୋଇ ବସିଚ । ସେଥିପାଇଁ ମୋର କହୁ ମନେ ପଡ଼ୁନାହିଁ । ନାଲି ଜାଗାରେ କଳା କଲମ ଲୁଚି ଯାଉଚ—ସବୁ ଗଣ୍ଡଗୋଳ—ସବୁ ଅଡ଼ୁଆ ।

ଇନ୍ଦୁ : ତମେ ଯଦି ଏଇ ଢଙ୍ଗ ଧରି ବୁଲିବ ନା, ତା'ହେଲେ ଦେଖିବ, ବାହାଘର ଶେଷଯାଏ ଯୋଗିନୀ ମୋ'ପିଣ୍ଡ ଛାଡ଼ିବ ନାହିଁ । ସେତେବେଳକୁ ଅଡ଼ୁଆ ସୂତା ଗଣ୍ଠି ଆଉ ଫିଟିବ ନାହିଁ ।

ଭୋଳ : କଣ, କଣ କହିଲ ତମେ ? ମଙ୍କୁର ବାହାଘର—ତମେ ଏଇ କଥା କହୁଛ ?

ଇନ୍ଦୁ : ବାହାଘର ତ ଯାଇ ଆଷାଢ଼ ମାସରେ । ମୂଳ କଥାର କିଛି ଠିକ୍ ଠିକଣା ନାହିଁ । ଆଉ ତମେ ଏଇ ବୈଶାଖ ମାସରୁ ଯାଇ ଗଛ ଅଗରେ ଉଠିଲଣି—କଣ ନା—ଚାଳିକା ଧଥାଉଛ ।

ଭୋଳ : ହଉ, ଯାହା ହବାର ତ ହେଲଣି, ତମେ ଆସ—ବସ ଏଠି ।

ଇନ୍ଦୁ : ନା—ମତେ ତ ଯୋଗିନୀ ଗ୍ରାସିଲଣି—ମୁଁ ଯାଉଛି । ତମେ ତମର ଯାହା କରୁଚ କର । (ଚାଲିଗଲେ)

ଭୋଳ : ଆସ ବସ କହୁଚି !

ଇନ୍ଦୁ : (ଅନ୍ତରାଳରୁ) ନା ।

ଭୋଳ : ଆଚ୍ଛା ବୁଝ, ମୁଁ ବୁଝୁଚି ତମ କଥା ।

[ ଉଠିଯାଇ ସୁଟ୍‌କେଶ୍ ଉପରୁ ଗୋଟିଏ କଲମ ଆଣି ଟେବୁଲପାଖେ ବସିଲେ ଓ କଲମଟିକୁ ମୁଣ୍ଡରେ ଛୁଆଁଇ ଆଖି ବୁଜି କଣ ସେମିତି ଭାବିବାକୁ ଲାଗିଲେ । ଏତିକିବେଳେ ମଙ୍କୁ ସେ ଘରକୁ ଆସିଲା । ଭୋଳଙ୍କୁ ଏ ଅବସ୍ଥାରେ ଦେଖି ସେ ଫେରିଯାଉଥିଲା । ]

ଭୋଳ : କିଏ ? ମଙ୍କୁ !

ମଙ୍କୁ : ଆଜ୍ଞା ।

ଭୋଳ : ଆ, ଶୁଣ । କୁଆଡ଼େ ଯାଇଥିଲୁ ?

ମଙ୍କୁ : କୁଆଡ଼େ ଯାଇ ନ ଥିଲି ତ—ଯିବି ବୋଲି ବାହାରୁଚି ।

ଭୋଳ : କୁଆଡ଼େ ଯିବୁ ?

ମଙ୍କୁ : ଏମିତି ଟିକେ ବୁଲି···

ଭୋଳ : କିଛି କାମ ନାହିଁ—ଏ ଖରାଟାରେ ଏମିତି ଖାଲି ବୁଲିଯିବୁ !···ନାହିଁ···ନାଇଁ—ଯା' ନାହିଁ ।

ମଙ୍କୁ : ମନା କରୁଚ ଯଦି ଯିବିନି । ହେଲେ ମାମୁ, ଖରା ତ ଏମିତି କିଛି କାଟୁନି !

ଭୋଳ : କଣ କହିଲୁ, ଖରା କାଟୁନି ? ଏ ବୈଶାଖ ମାସ ମୁଣ୍ଡଫଟା ଖରା ତତେ କାଟୁନି !

ମକୁ : କାହିଁକି କାହିଁକି ? ଖବ ଖୁବ୍ ତେଜ ହେଲେ ପଥର ଫଟେଇଦବ, ମୁଁ କୋଉ ଛାର ! ହେଲେ ମାମୁ, ମୁଁ ଏ ଖବ ବର୍ଷାକୁ ଖାତିର୍ କରେନା ।

ଭୋଳ : ମୁଁ ଜାଣେ, ସେଇଟା ଗୋଟାଏ ତୋର ବାହାଦୂରୀ । ପୁଣି ମୁଁ ତତେ କାମ ବତେଇ ଦିଏ, ତୁ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯମପୁର ଖୋଜି ଆସିବୁ ।...ହେଲେ ବାପ, ସବୁଦିନ କିଛି ସମାନ ନ ଥାଏ । ଏଣିକି ଟିକିଏ ଧୀର ଚିତ୍ତ ସ୍ଥିର ମନ କରି, ଦେହ ମୁଣ୍ଡକୁ ନଜର ଦେଇ ଚଳିବାକୁ ହେବ, ବୁଝିଲୁ ?...ଏଇ ଦେଖ, ଏଠି ଏ କି କାମ ଚାଲିଚି ।

ମକୁ : କଣ ମାମୁ ?

ଭୋଳ : ଚାଲିକା ।

ମକୁ : କି ଚାଲିକା ମାମୁ ? ଅଷ୍ଟପ୍ରହରୀ ଚାଲିକା ?

ଭୋଳ : ( ହସି ) କଣ ଆଉ କହିବି ତତେ ? ଆଷାଢ଼ ମାସରେ ତୋ ବାହାଘର—ତୁ ବୁଝିପାରୁନୁ ଇଏ କି ଚାଲିକା ? ( ମକୁ ମୁହଁ ତଳକୁ କରି ଠିଆହେଲା ) କରେ ମକୁ ! ବାହାଘର ନାଁ ଶୁଣୁ ଶୁଣୁ କଣ ମୁହଁ ତଳକୁ କରି ଠିଆହେଲୁଣି ! ଇଏ କି ଲାଜକୁଳା ଢଙ୍ଗ ? ତୁ ତ ଦେଖୁଚୁ, ମୁଁ ଏକୁଟିଆ ଲୋକ—ତୋ ଉପରେ ମୁଁ ଚାରଣା ଭରସା କରି ରହିଚି । ଆଉ ତୁ ବାହାଘର ନାଁ ଶୁଣି ଏମିତି ଲାଜରେ ଝାଉଁଳି ପଡ଼ୁଚୁ କଣ ? କଣ ମାଇକିନିଆ ହୋଇଚୁ ! ବସ୍ ଏଠି ।

( ମକୁ ଆଡ଼ୁରି ଲଜେଇଯାଇ ସେଠୁ ଚାଲିଗଲା )

ଆରେ ମକୁ—ମକୁ !...ଦେଖୁଚ, ଲାଜ କରି କେମିତି ପଳେଇଲା ! ଏଇଟା କି ମଣିଷ ହବ କେଜାଣି ?...ନାଃ, ଇଏ ଏଠି କିଛି ହୋଇ ପାରିବ ନାହିଁ, ମୁଁ ମେଳା ଘରକୁ ଯାଏଁ ।

( କାଗଜପତ୍ର ଧରି ବାହାରିଗଲେ । × × × ବେଶ୍ କିଛି ସମୟ ଅତିବାହିତ ହୋଇଯାଇଚି । ଇନ୍ଦୁ ଏ ଘରକୁ ଆସିଲେ )

ଇନ୍ଦୁ : ଏଁ, କଣ ନାହାନ୍ତି ଏଠି ! ଗଲେ କୁଆଡ଼େ ? ( ମାମା ଆସିଲା )

ତୋ ପିଇସା କୁଆଡ଼େ ଗଲେ କି ମାମା ?

ମାମା : ମେଳଘରେ ବସି ଚାଲିକା କରୁଚନ୍ତି । (ହସି) ଜାଣିଚୁ ନା ଅପା, ସେତେବେଳେ ପିଇସା ଏଠି ମକୁଭାଇଙ୍କୁ କଣ ବାହାଘର କଥା କହୁଥାନ୍ତି ଯେ, ମକୁଭାଇ ଏକ ଭଙ୍ଗୀରେ ମୁହଁ ତଳକୁ କରି ଠିଆହେଇଥାନ୍ତି । ପାଟିରେ ଓଁ ନାହିଁ କି ଚୁଁ ନାହିଁ ।

ଇନ୍ଦୁ : ସେଇଟା ସେମିତକାଟାଏ ।
ମାମା : ଏଇ ଆଷାଢ଼ରେ ତା'ହେଲେ ମକୁଝିଅଙ୍କ ବାହାଘର ହେଉଛି ?
ଇନ୍ଦୁ : ହବାର ତ କଥା ! ହେଲେ କୁଆଡ଼ୁ କଅଣ କିଛୁ ଠିକ୍‌ଠିକଣା ହେଲାଣି ?
ମାମା : ପିଇସା ପରା ବାହାଘର ତାଲିକା ତିଆରି କଲେଣି ।
ଇନ୍ଦୁ : ସେଇ କଥା ଲୋ ମାମା, ବାହାଘର ମୂଳକଥା କିଛୁ ଠିକଣା ହୋଇନି—ଏଣେ ସ୍ବାମୀଙ୍କର ତାଲିକା ଲମ୍ବି ଯାଉଛି ।
ମାମା : ତୁ ତ କନ୍ୟା ଦେଖିଚୁ, କନ୍ୟା ତୋ ମନକୁ ପାଇଛି । ବାପା ତ କନ୍ୟା ପକ୍ଷ ସାଙ୍ଗରେ କଥାବାର୍ତ୍ତା ହେଇଚନ୍ତି—ଆଉ ପୁଣି କଣ ?
ଇନ୍ଦୁ : ଆଲୋ ସେମାନେ ବରଘର ଦେଖି ଆସିବେ—ମହାପ୍ରସାଦ ବନ୍ଧନ ହେବ । ଆଉ ଇଏ କର୍ତ୍ତା ହେଇ ଏସବୁ କଥା କିଛୁ ବୁଝିବେ ନାହିଁ ?
ମାମା : ପିଇସାଙ୍କ କଥା କହୁଚୁ ତ ?
ଇନ୍ଦୁ : ହଁ...ଜାଣି ତ ଆମର ପୁଅପାଠ ନାହିଁ ବୋଲି ମକୁକୁ ତମେ ପୁଅ କରିଚ । ତମେ ମାମୁ, ତମେ ବାପ—ସବୁ ତମେ । ତମେ ଟିକିଏ କନ୍ୟାପକ୍ଷ ସଙ୍ଗରେ କଥାବାର୍ତ୍ତା କରିବ ନାହିଁ !!... ନା, ଯାହା କରିବେ ମାଧ ଝିଅ ।
ମାମା : ତୁ ଯାହା କହ ଅପା, ପିଇସା ଖୁବ ଭଲଲୋକ ।
ଇନ୍ଦୁ : ହଁ, ତୋର ପାଇଁ ଭଲ । ଯା' ଦେଖିବୁ, ବାହାଘରକୁ ତୋ ପାଇଁ କେତେଖଣ୍ଡ ଶାଢ଼ି ବରାଦ ହେଇଥିବ ।
ମାମା : ଏଇ ଅପା, ମକୁ ଝିଅ ଅସୁଚନ୍ତି । କେମିତି ମୁହଁ ଶୁଖେଇ ଦେଇଚନ୍ତି ଦେଖିଲ !

( ମୁହଁ ତଳକୁ କରି ବିରସ ମନରେ ମକୁ ଆସିଲା )

ଇନ୍ଦୁ : ମକୁ...ମକୁ...ତୋ ପାଟିରେ କଥା ନାହିଁକି ରେ ମକୁ ?
ମକୁ : ( ଭୋ'କନା କାନ୍ଦ ) ମାଇଁ ।

( ଇନ୍ଦୁଙ୍କର ଆଶ୍ଚର୍ଯ୍ୟର ସୀମା ନାହିଁ )

ଇନ୍ଦୁ : କଣ ହେଲା—କଣ ହେଲା ମକୁ ! କାନ୍ଦୁଚୁ କାହିଁକି ?
ମକୁ : ( କାନ୍ଦୁଥାଏ )
ଇନ୍ଦୁ : ( ବଡ଼ ପାଟିରେ ) ହଇଓ, ତମେ ମକୁକୁ କଣ କହିଲ କି ?
ମକୁ : ( ସେମିତି କାନ୍ଦ କାନ୍ଦ ) ମାଇଁ—ମାଇଁ, ତମ ଗୋଡ଼ଧରୁଚି ମାଇଁ, ତମେ ମାମୁଙ୍କୁ କିଛି କୁହନାହିଁ ।
ମାଇଁ : ଇଏ ଅଚ୍ଛା କଥା !...କଣ ହେଲା ଭଲା ମତେ କହ ।...କହ କାହିଁକି କାନ୍ଦୁଚୁ ?
ମକୁ : (କାନ୍ଦୁଥାଏ)

(ମକୁର କାନ୍ଦରେ ମାମା ଯେମିତି ଆମୋଦ ଲଭକରୁଥାଏ)

ମାମା : କଣ ହେଲା ମକୁଲାଇ ? କଣ ବାହା ହେଉଛ ବୋଲି କାନ୍ଦୁଛ ?

ମକୁ : ଚୁପ୍ କର ଫାଜିଲ୍ ଟୋକା ! ତୋର କଣ ଗଲା—ମୁଁ କାନ୍ଦିଲି !

ମାମା : ମଲା, ତମ ଆଖିରେ ବେଶି ଲୁହ ଅଛି, ତମେ କାନ୍ଦ—କିଏ ମନା କରୁଛି ? ଭଲ କହିଲେ ଏବେ ମନ୍ଦ !

ମକୁ : (କାନ୍ଦି) ମାଈଁ !

ମାଈଁ : ବାପାଟା ପରା, କଣ ହେଉଛି ମତେ କହ ।

ମକୁ : ତମେ ମତେ ପର କରିଦେଉଛ ମାଈଁ !

ମାଈଁ : ପର କରିଦେଉଛି !···ହଇରେ, ତତେ ଏକଥା କିଏ କହିଲା ? ମାମୁ କଣ କହିଲେ ?

ମକୁ : କହିବା ଯାଏ କଥା ଯିବ କାହିଁକି ? ଏଇନେ ଦେଖିଲି ମାମୁ ବସି ବସି ବାହାଘର ତାଲିକା ତିଆରି କରୁଛନ୍ତି ।

ମାଈଁ : ହଁ, କରୁଛନ୍ତି ତ । ଇଏତ ଭଲ କଥା—ଶୁଭ କଥା । ଏଇଟା ବୈଶାଖ ମାସ—ଆଷାଢ଼ ମାସରେ ତୋ ବାହାଘର ହେବ ।

ମକୁ : ତା'ହେଲେ···ତେବେ ମତେ ପର କରିଦଉନ ?

(ମାମା ହସିଉଠିଲା)

ଏ ମାମା ! ତୋ ମୁଣ୍ଡକୁ ଛେଚିଦେବି, ଜାଣିଚୁ ? ହସୁଚୁ କାହିଁକି ?

ମାମା : ହସିବିନାହିଁ ? ତମେ କଣ ଝିଅ ହୋଇଛ ଯେ ବାହା ହୋଇ ପର ଘରକୁ ଚାଲିଯିବ, ସେଇଥିପାଇଁ କାନ୍ଦୁଛ ?

ମକୁ : (ରାଗି) ମାମା !

ଇନ୍ଦୁ : ମାମା ଠିକ୍ କଥା କହୁଛି ମକୁ । ତୋ' ମାମୁ ତ କର୍ତ୍ତା ହୋଇ ତତେ ବାହା କରେଇବେ । ବାହାହୋଇ ପୁଅ ବୋହୂ ଆମ ଘରକୁ ଆସିବେ—ଏଇଠି ଆମ ଘରେ ରହିବ···ଆମେ ପର କରିଦବୁ କେମିତି ?

ମକୁ : ହେଲେ ବି ମତେ ଏ ଗୁଡ଼ା ଭଲଲାଗୁନି । କେତେ ହସଖୁସିରେ ମୁଁ ଚାଲୁଥିଲି ।

ଇନ୍ଦୁ : ବାହାହୋଇସାରି, ବୋହୂ ଘରକୁ ଆଣି ସେମିତି ହସଖୁସିରେ ଚାଲିବୁ, ମନା କରିବ କିଏ ? କୋଉ ଆମର ଆଉ ପାଞ୍ଚଟା ଛଅଟା ଅଛନ୍ତି ? ତୁ ଆମର ଭଣଜା—ତୁ ଆମର ପୁଅ—ସବୁ ତୁ ।

ମକୁ : ନାହିଁ ନାହିଁ, ତମେ ଜାଣିନ ମାଈଁ, ବାହାହବା ଭାରି ଅଡ଼ୁଆ ।

ମାମା : ସେଇଆ କୁହ—ଅଡ଼ୁଆରେ ପଶିବ ନାହିଁ ।

ମକୁ : ତାକୁ କହିବଟି ମାଈଁ, ସିଏ କାହିଁକି ମଝିଟାରେ ବକର ବକର ହଉଛି !

ଇନ୍ଦୁ : ବଳର ବଳର ହଉଚ ସିନା, ସିଏ ଠିକ୍ କଥା କହୁଚ । ବାହାଘରଟା ଅଭୁଆ ସତ, ହେଲେ ମଣିଷ ଜନମ ହୋଇ ଘର ସଂସାର ନକଲେ ରହିବ କୋଉଠି— କଣ ଜଙ୍ଗଲରେ ?

ମାନୀ : ତୋ' ବୋଉ ବାପଘର କୋଉ ଗାଁଟି ଅପା ?

ଇନ୍ଦୁ : ଏ ବାହାଘରରେ ତୋ ବାପା ପସ୍ତ ମଧ୍ୟସ୍ଥ—ତୁ ଜାଣିନୁ ? ହରସ୍ତଜପୁର ପସ୍ତ ! ତୋ' ପିଇସା ଗୋଟିଏ ଲୋକ ଯେ, କହୁ ହେଲେ ଏ କଥା ବୁଝୁଛନ୍ତି ! ତାଙ୍କର ଖାଲି ଚାଲିକା ଉପରେ ଚାଲିକା ଲମ୍ବି ଯାଉଚି ।···ପୋଡ଼ଯାଉ ମୋ' ମନ ! ସ୍ୱାମୀ ଯାଇଥାରେ କନ୍ୟା ଦେଖିଲି—କନ୍ୟା ନାଁଟି କଣ ପସ୍ତର ପାଗଲ ନାଇଁ··· ଆମେ କନ୍ୟା ଦେଖିଲୁ—କନ୍ୟା ଆମ ମନକୁ ପାଇଲା—ଏଣିକି ତାଙ୍କ ପକ୍ଷ ଏଠିକି ବରଘର ଦେଖି ଆସିବାର କଥା—ପୁଣି ମହାପ୍ରସାଦ ବନ୍ଧନ ହେବ । ଗୋପସୁନ୍ଦର ଦାସଙ୍କୁ ଡକେଇ ତା' ସାଙ୍ଗରେ ମୁହାଁମୁହିଁ ଏସବୁ କଥା ଇଏ କଥାବାର୍ତ୍ତା କରନ୍ତେ ନାହିଁ !

ମାନୀ : ଗୋପସୁନ୍ଦର ଦାସ କିଏ ? କନ୍ୟାର ବାପ ?

ଇନ୍ଦୁ : ହଁ ।

ମଳୁ : ଗୋପସୁନ୍ଦର ଦାସ ? (ମଳୁ ମୁହଁରେ ସୂଚିତ ହସ)

ଇନ୍ଦୁ : ହଁ, ତାଙ୍କ ନାଁ ଗୋପସୁନ୍ଦର ଦାସ ।

ମଳୁ : ଇଏ···ଭାରି ଭଲ ନାଁଟିଏ ହୋଇଚି ତ ! (ଇନ୍ଦୁ ଓ ମାନୀ ହସିଉଠିଲେ)

ମାନୀ : ଶୁଣୁଚଟି ଅପା ! ଇଏ ପୁଣି କହୁଥିଲେ ବାହାଘରଟା ଅଡ଼ୁଆ ! ଶଶୁରଙ୍କ ନାଁ ଶୁଣି ତ ଲହୁଣୀ ଭଳି ନରମିଗଲେଣି···କନିଆଁ ନାଁ ଶୁଣିଲେ ଏକାବେଳକେ ତରଳ ଘିଅ ହୋଇଯିବେ ।

ମଳୁ : ଯା--ଯା···ମୁଁ ସେମିତିକା ନୁହେଁ ।

ମାନୀ : ଆଉ କେମିତିକା ଟିକେ ଶୁଣେଇଲ !

ଇନ୍ଦୁ : ହଇରେ ମଳୁ, ଇଏ କୋଉ ଆଡ଼ର କଥା ? କନିଆଁ ବାପ ନାଁଟା ତତେ କାହିଁକି ଏମିତି ସୁନ୍ଦର ଲାଗିଲା ?

ମଳୁ : ଏଁ ! ଯୋଉଟା ସୁନ୍ଦର, ତାକୁ ସୁନ୍ଦର ନ କହି କଣ ଅସୁନ୍ଦର କହିବ—ସିଏ କନ୍ୟା ବାପ ହଉ କି ବର ବାପ ହଉ ।

ଇନ୍ଦୁ : ଭଲ, ତୋ' କଥା ଶୁଣି ଆମକୁ ସିନା ହସମାଡ଼ିଲା—ହେଲେ ମୋ' ମନ ଖୁସି । ସିଏ ଶଶୁର, ତୁ ଜ୍ୱାଇଁ । ତାଙ୍କ ନାଁ ତୋତେ ସୁନ୍ଦର—ତୋ' କାମ ତାଙ୍କୁ ସୁନ୍ଦର । ତା'ହେଲେ ସିନା ଭଲରେ ଘର-ସଂସାର କରି ରହିବ !···ହେଲେ ମଳୁ, ଆମେ ତ କେହି ତାଙ୍କୁ ଦେଖିନୁ—ନାଁଟି ସିନା ଗୋପସୁନ୍ଦର, ଚେହେରାଟି ଯଦି କଳା-ବାନ୍ଦର ହୋଇଥିବ ?

ମଲ୍ଲୁ : ଉ…ଉ…

(ଏ ଦୁହେଁ ହସୁଥାନ୍ତି । ଭୋଳାନାଥ ଆସିଲେ । ହାତରେ ତାଲିକା ।)

ଭୋଳ : କଣ ଏଠି ଖୁବ୍ ହସ ଖୁସିର ସୁଅ ଛୁଟିଚୁ !…ଏଇ ନିଅ, ତାଲିକା ଦେଖ । ତମେ ସିନା ଧର୍‌ଛୁଆଁ ଦେଲ ନାହିଁ, ହେଲେ ମୁଁ ତାଲିକା କାମ ମୋଟାମୋଟି ସାରିଦେଇଚ ।

ଇନ୍ଦ୍ର : କଣ ତା'ହେଲେ ହେଲା—ଗୁରୁ ନା ହରି ? କୋଉଥିରୁ ତାଲିକା ଆରମ୍ଭ କଲ ?

ଭୋଳ : ସେଇ ଗୋଟାଏ କଥାକୁ ତମେ ଭୁଲିପାରୁନ ?

ଇନ୍ଦ୍ର : ତମେ କଣ ଜାଣିନ ? ତମେ ସିନା ସବୁ କଥା ଭୁଲିଯାଅ—ହେଲେ ମୁଁ କିଛୁ ଭୁଲେନାହିଁ ।…କହିବଟି ଆଗେ, ଗୋପସୁନ୍ଦର ଦାସଙ୍କୁ ତମେ ଦେଖିଚ ?

ଭୋଳ : କୋଉ ଗୋପସୁନ୍ଦର ଦାସ ?

ଇନ୍ଦ୍ର : ତମକୁ ଆଉ ପାରିହବନାହିଁ ! ଏ ନାଁଟାକୁ ବି ଭୁଲିଗଲଣି ?

ଭୋଳ : ଓ, ହଁ ! ମୋର ତାଙ୍କୁ ଦେଖିବା ଦର୍କାର କଣ ? ସେ କଥା ମାଧବଭାଇ ଜାଣନ୍ତି ।

ଇନ୍ଦ୍ର : ତେମେ ମାଧବଭାଇଙ୍କ ଭଉଣୀଇ ବୋଲି ମାଧବଭାଇ କଣ କନ୍ୟାକୁ ମୁଣ୍ଡରେ ମୁଣ୍ଡେଇ ତମ ଘରେ ଆଣି ଗୁଞ୍ଜି ଦେଇ ଯିବେ କି ? ତାଙ୍କ ଉପରେ କ'ଣ ସବୁଯାକ ରଖି ଦେଇଚ ?

ଭୋଳ : ବାହାଘର ଏଇନେ ଦ'ମାସ ଡେରି । ଏ ବାହାଘରରେ ମାଧବଭାଇ ଭଲନ୍ତ୍ରକ—ଯାହା କରିବାର କଥା ସିଏ କରିବେ । ମୁଁ ସେ ଅଡ଼ୁଆରେ ନାହିଁ ।

ଇନ୍ଦ୍ର : ଯଦି ସ୍ୟା' ଭିତରେ ସେମାନେ ବରଘର ଦେଖିବାକୁ ଆସି ପହଞ୍ଚିଯା'ନ୍ତି ?

ଭୋଳ : ଆସନ୍ତୁ—ବର ତ ଅଛୁ—ଘର ତ ଅଛୁ—ଅଭାବ କଣ ?

ଇନ୍ଦ୍ର : ଏଇ କଥା ?

ଭୋଳ : ହଁ…ଶୁଣ, ତାଲିକା ପଢ଼ୁଚି ।

(ଆସନ ଉପରେ ବସିଲେ)

[ ପୂର୍ବବର୍ତ୍ତୀ ଦୃଶ୍ୟର କିଛୁଦିନ ପରର ଘଟଣା । ସମସ୍ତ ଅପରାହ୍ଣ । ଭୋଳାନାଥଙ୍କ ଗ୍ରାମ ସୀମାନ୍ତ ରାସ୍ତା । ରାସ୍ତା ଧାରରେ ବରଗଛ । ଗୋପସୁନ୍ଦର ଓ ଧଡ଼ି ଆସିଲେ । ଗୋପସୁନ୍ଦରଙ୍କୁ ଦେଖିଲେ ଜଣାଯାଏ ସେ ଏକ ସ୍ୱଚ୍ଛଳ ଗ୍ରାମ୍ୟ ପରିବାରର କର୍ତ୍ତା ।]

ଗୋପ : ଧଡ଼ି !

ଧଡ଼ି : ଆଜ୍ଞା !

ଗୋପ : ଏଇଟା ଆମ ଜ୍ୱାଇଁଙ୍କ ଗାଁ…ନା'ରେ ?

ଧଡ଼ି : ଆଜ୍ଞା କିଛୁ ବୁଝିହେଉନି—ଜ୍ୱାଇଁଙ୍କ ଗାଁ ?

ଗୋପ : ହବାକୁ କଣ ଆଉ ବାକି ଅଛି ଯେ ? ଏ କାନ ଯାହା ଶୁଣିଛ ଆଉ ଏ ଆଖି ଯାହା ଦେଖିବ ବୋଲ ମନ କରୁଛ—ସେଥିରେ ଆଉ ହଟିଯିବାର କଥା ନୁହେଁ । ତୁ କହୁଲୁ, ଏଇଟା ସେଇ ଗାଁ ତ ?

ଧଡ଼ : ହଁ ଗୋପବାବୁ, ଏଇଟା ମହି ସାହୁ । ଏଇ ବାଟେ ମୁଁ କେତେ କେତେଥର ଯା' ଆସ କରିଥିବ ।•••ଆପଣ କେବେ ଏଆଡ଼େ ଅସିନାହାନ୍ତି ପରା ?

ଗୋପ : ନାହିଁ । ତୋର ସିନା ଘର ବେଭାର ନେଇ ଗାଁ ଗାଁ ବୁଲିବା କାରବାର, ତୁ କେତେଥର କେବେ ଆସିଥିବୁ । ମୁଁ ଏ ଗାଁକୁ କେବେ ଆସିନ କି ମତେ ଏଠି କେହି ଚିହ୍ନିନାହାନ୍ତି ।•••ହଇରେ ଧଡ଼, ତତେ ଏ ଗାରେ କେହି ଚିହ୍ନିନାହାନ୍ତି ତ ?

ଧଡ଼ : ନାହିଁ ଗୋପବାବୁ, ଗାଁମୁଣ୍ଡ ଏ ରାସ୍ତା ବାଟେ ସିନା ମୁଁ ଯା'ଆସ କରେଁ—ହେଲେ ଗାଁ ଭିତରକୁ ମୋଟେ ଯାଇନ—କିଏ ମତେ କାହିଁକି ଚିହ୍ନିବ ?

ଗୋପ : ରହା !•••ହଉ ଧଡ଼, ଖରା ଖରା ହେଉଛି, ଏ ବରଗଛ ଛାଇରେ ଟିକେ ବସିପଡ଼ ।

(ଦୁହେଁ ବସିଲେ)

ଧଡ଼ : ଆଜ୍ଞା, ଏମିତି ଲୁଚ ଛପି—ନାଁ ଗାଁ ଲୁଚେଇ ଆମେ ଯେ ବରଘର ଦେଖିଆସିଥାଉଁ, ଯଦି ଚିହ୍ନାପଡ଼ିଯିବା ?

ଗୋପ : ତୁ କଣ ଏ ଗୋପସୁନ୍ଦର ଦାସକୁ ଚିହ୍ନିଲୁ ଧଡ଼ !•••ମାଧବ ଦାସେ—କୋଉ ମାଧବ ଦାସେ ?

ଧଡ଼ : ଏ ବାହାଘରେ ଯିଏ ଭଲୋକ ହୋଇଚନ୍ତି ତ ?

ଗୋପ : ଭଲୋକ ହୋଇଚନ୍ତି ସତ ଯେ—ହେଲେ ଆମର ଯିଏ ସମୁନ୍ଧ ହେବେ ଖେଳ ଦାସ—ଏ ମାଧବ ଦାସ ହଉଚନ୍ତି ସେଇ ଖେଳ ଦାସଙ୍କ ଶାଳକ ।

ଧଡ଼ : ତାହେଲେ ଆଉ ଭାବନା କଣ ?

ଗୋପ : ଅଛି•••ବୁଝିଲୁ ଧଡ଼, ଭାବନା ଅଛି । ମାଧବ ଦାସେ ସିଆଙ୍କର ସବୁ ହାଲ-ହଇକତ ମତେ କହୁଚନ୍ତି । ହେଲେ ନିଜ ଆଖିରେ ନ ଦେଖିବା ଯାଏ ମାନୁଚ କୋଉଠି ? ଆଉ ନିଜ ଆଖିରେ ଦେଖିବାକୁ ହେଲେ, ଏମିତି ଲୁଚଛପି ଛଦ୍ମ-ବେଶରେ ଦେଖିବା ଭଲ । ତା' ନହେଲେ କଳାଟା ଧଳା ହୋଇଯିବାକୁ କେତେ ବେଳ ?

ଧଡ଼ : ସେ କଥା ଠିକ୍ ।

ଗୋପ : (ଗାଁ ଭିତରକୁ ଚାହିଁ) ଆରେ ଧଡ଼, ଏଇ ଗାଁ ଭିତରୁ କିଏ ଜଣେ ଆସୁଛନ୍ତି ନା' କଣ !

ଧଡ଼ : ହଁ ଆଜ୍ଞା, ଏଇ ଆଡ଼କୁ ତ ଆସୁଛନ୍ତି ।

ଗୋପ : ଗୁଲଟା ଦେଖ ! କେମିତି ହଲି ଦୋହଲି ଆସୁଛନ୍ତି—ଯତେ ଅବା ଗୁଣ୍ଡୁଣୀ ହାତୀ ।

ଧଡ଼ : ଆଖି ଦି'ଟା ଆମରି ଉପରେ ପଡ଼ିଲାଣି । ଇଆଡ଼କୁ ମୁହାଁଇଚନ୍ତି ।

ଗୋପ : ଆସନ୍ତୁ—ତାଙ୍କର ମୁହଁରୁ କେତେ କଥା ଅସୁଲ୍ କରିବ ଦେଖ । ( ଗଳା ଶଙ୍କାରି ଟିକିଏ ବଡ଼ ପାଟିରେ ) ଆରେ ଧନ୍ତ ଶୋଷଟା ହେଲାଣି, ମୁନ୍ଦେ ପାଣି ପିଇଥାନ୍ତେ !

ଧନ୍ତ : ପାଣି !···ଆଖପାଖରେ ତ କାଁ କୂଅ ପୋଖରୀ କିଛି ନଦିଶୁନ୍ତି । ଏଇଟା ଅପାଣିଆ ଗାଁଟାଏ ନା' କଣ !

[ ଖେଳ ଆସିଲେ । ସେ ଏମାନଙ୍କ କଥା ଶୁଣିଚନ୍ତି । ଦୁଇ ପକ୍ଷ ପରସ୍ପର ନିକଟରେ ଅପରିଚିତ । ]

ଖେଳ : ( ଉଦ୍ଦେଶ୍ୟପୂର୍ଣ୍ଣଭାବେ କାଶିଲେ )

ଗୋପ : ଆଜ୍ଞା !

ଖେଳ : କଥାଟା କଣ ମତେ ଦେଖି ଲୁହାଗଲା ?

ଗୋପ : କି କଥା ଆଜ୍ଞା ?

ଖେଳ : ଏ ଗାଁଟା ଅପାଣିଆ···

ଗୋପ : ନାହିଁ ମହାଶୟ, ଏ କଥା କାହିଁକି କିଏ କହିବ ?···ହଇରେ ଧନ୍ତ ବାଉଳ ?

ଖେଳ : ସେଇ ଧନ୍ତ ବାଉଳ ତ କହୁଚ ।

ଧନ୍ତ : ମୋ' କଥାଟାକୁ ଆପଣେ ଲୁହଁ ପାରିଲେ ନାହିଁ ପରି ? ମୁଁ କହୁଲି କି—ଏ ଗାଁରେ କଣ ଏ ବର୍ଷ ଅପାଣିଆ ମୁଗ ବୁଣାହୋଇଥିଲା ?

ଖେଳ : କାହିଁକି ହେ ! ଆମ ଗାଁ ସାମନାରେ କେନାଲ୍ ଲମ୍ବି ଯାଇଚ—ଅପାଣିଆ ମୁଗ କାହିଁକି ବୁଣାହେବ ?

ଗୋପ : ଓ···ପାଣି ତେବେ ମଡ଼ାହୋଇଥିଲା ! ଏବର୍ଷ ମୁଗ ଫସଲଟା ଏଥର କେମିତି ଆପଣଙ୍କର ଉତୁରିଚ ?

ଖେଳ : ଫସଲ କଥା ଥାଉ—ମତେ ଦେଖି ମୁହଁକୁ ମୁହଁ ଯୋଡ଼ି କି କଥା ଏଠି ପଡ଼ିଥିଲା ଜାଣିପାରେ କି ?

ଗୋପ : କି ଦୁର୍ଭାଗ୍ୟ ଆମର ! ଏ ଗାଁକୁ ଟିକିଏ ଆସିଲୁ ବୋଲି ଆପଣ ଆମକୁ ଏମିତି କଥା-କଥାକେ ଜେରା କରିବେ ? ଧନ୍ତ ବାଉଳ ନଜାଣି ଆଉ ଏ ଗାଁକୁ ଅପାଣିଆ କହିଥିଲା !

ଖେଳ : ଆପଣ କଣ ଗୋଟାଏ ମହାଭାରତ ସୃଷ୍ଟି କରିବାକୁ ଏଠିକି ଆସିଛନ୍ତି ?

ଗୋପ : ଦିନେ ମହାଭାରତ ଏଇ ମାଟିରୁ ସୃଷ୍ଟି ହୋଇଥିଲା । ଏଇଟା ଆଉ ନୂଆ କଥା କଣ ?···ଆ'ରେ ଧନ୍ତ, ଯିବା । ବାଟୋଇ ଲୋକ ଆମେ—ଆମ କାମରେ ଆମେ ଆସିଥିଲୁ ।

ଝୋଲ : ଆପଣଙ୍କର କାମଟା କଣ ଜାଣିଲେ ଝାର ଖୁସି ହୁଅନ୍ତି !

ଧଡ଼ : କାମ···ଆମେ ଆସିଥିଲୁ···ଆମର ଗୋଟିଏ ଭଲ···

ଝୋଲ : କଣ···ଭଲ ଦାମୁଡ଼ ଦର୍କାର ? ଦାମୁଡ଼ କଣିବେ ?

[ ଗୋପ ଓ ଧଡ଼ର ଦୃଷ୍ଟି ବିନିମୟ ହୋଇଗଲା ]

ଗୋପ : ଆପଣ ମହାଶୟ ପ୍ରକୃତରେ ଜଣେ ଜ୍ଞାନୀ ଗୁଣୀ ଲୋକ । ଆମ ମନକଥାଟା ଆପଣ କେମିତି ଜାଣିଲେ···କୁହନ୍ତୁ ଆଜ୍ଞା, କେମିତି ଜାଣିଲେ ?

[ ଝୋଲଙ୍କ ମୁହଁରେ ଆତ୍ମପ୍ରସାଦସୂଚକ ହସ ]

ଝୋଲ : ଆପଣ ଏ ଝୋଲଦାସଙ୍କୁ ଚିହ୍ନିନାହାନ୍ତି । ଯେତେବେଳେ ଚିହ୍ନିବେ, ସେତେବେଳେ ବୁଝିବେ ଯେ ମୁଁ କେମିତି ଏସବୁ ଜାଣିପାରେ ।

ଧଡ଼ : ଯାହା କହୁଚନ୍ତି ଆଜ୍ଞା ! ସେ ବେଳ ଆସି ପହଞ୍ଚିଗଲା ବୋଲି ଜାଣ !

ଝୋଲ : ଆରେ ବାବୁ, ବେଳ ଆସିଲାବେଳେ ତ ଆସିବ, ହେଲେ ମଣିଷର ମୁହଁ ଦେଖି—ରୂପରେଖ ଦେଖି—ଗଠବଧ୍ ଦେଖି ଯଦି ତା' ମନକଥା ଜାଣିନପାରିଲ, ତା'ହେଲେ ତମେ ଜଣେ ମଣିଷ ନୁହଁ—କଦଳୀ ଗଛ ! ବୈଶାଖ ଯାଇ ଜ୍ୟେଷ୍ଠ ହେଲା—ମଝିରେ ମଝିରେ ବର୍ଷା ଅସ୍ରାଏ ହୋଇଯାଉଚି—ଆପଣ ଗୃହୀବନ୍ଧ ଲୋକ—ହଳହଣ୍ଡା ଯୋଗାଡ଼ କରିବାକୁ ବାହାରିପଡ଼ିଛନ୍ତି—ଏଇଟା ଏ ଝୋଲଦାସ ବୁଝିପାରିବ ନାହିଁ···ହୁଁ ! ( ଯିବାକୁ ଲାଗିଲେ )

ଗୋପ : ( ନିମ୍ନସ୍ୱର ) ଆରେ ଧଡ଼, ଝୋଲା ଦାସ !

ଧଡ଼ : ( ନିମ୍ନସ୍ୱର ) ଏଇ ଗୁଣ୍ଡ ଣୀହାଣ ଆପଣଙ୍କ ସମ୍ବନ୍ଧ ହେବେ !

[ ଝୋଲ ଫେରିଲେ ]

ଝୋଲ : କି କଥା ?

ଗୋପ : କଣ ଆଜ୍ଞା ?

ଝୋଲ : ପୁଣି କି ଫୁସ୍ ଫାସ୍ ?

ଗୋପ : ଇଏ···ମାନେ···ଆପଣଙ୍କ କଥା ଶୁଣି ମନଖୁସିରେ ମୁଁ ଧଡ଼ ବାବୁଙ୍କୁ କହୁଥିଲି—ମଝିପାହ ଝୋଲଦାସେ କାଳିଦାସଙ୍କ ପରି ଜ୍ଞାନୀ—ମୁହଁ ଦେଖି ମନକଥା ଜାଣିପାରନ୍ତି । ଅଉ ଜଣେ କାଳିଦାସ କହୁଚନ୍ତି, ମଣିଷର ପ୍ରଶଂସା କେବେହେଲେ ତା' ମୁହଁ ଉପରେ କରିବ ନାହିଁ । ସେଇଥିପାଇଁ ଟିକିଏ ଫୁସ୍ ଫାସ୍‌ରେ···

ଝୋଲ : ଆପଣ ଦାମୁଡ଼ କଣିବେ ପରା ?

ଧଡ଼ : ସେଇଥିପାଇଁ ତ ଘରୁ ଗୋଡ଼ କାଢ଼ି ବାହାରିଚୁ ।

ଝୋଲ : ଏ ବାଟଟା ସିଧା ହାଟକୁ ପଡ଼ିଚି । ଆଜି ହାଟପାଳି—ଶହ ଶହ ଗାଈଗୋରୁ ହାଟରେ କାରବାର ।

ଗୋପ : ସେ କଥା ଆମକୁ ଜଣା ଯେ, ହେଲେ ହାଟ ବାଟ ଘାଟ—ଏଠିକା କାରବାର ଯେଉ ହାଟୁଆ ବାଟୁଆ ଘାଟୁଆଙ୍କୁ ପୋଷାଏ । ଆମେ ହେଲୁ ଘରୁଆ ଘର···

ଭୋଳ : ଓ, ଆପଣ ଘରୁଆ ଘରୁ ଦାମୁଡ଼ କଣିବେ !

ଧଡ଼ : ଏ କଥା ଆଉ ବୁଝିପାରୁଣ ଅଛ ଆଜ୍ଞା ?

ଭୋଳ : କେମିତକା ଦାମୁଡ଼ ଆପଣଙ୍କର ଦରକାର ?

ଗୋପ : ଦାମୁଡ଼ ଟିକଏ ଏଭ ଦୋପଟିଆ ଗୋରୁ ହୋଇଥିବ—ଦ'ଟା କ ଗଣ୍ଡାଏ ଦାନ୍ତ ଥିବ—ପାଣିଏ ଅଧେ ହଳକଣଥିବ—

ଧଡ଼ : ଦରୁ ଲଞ୍ଜ, ଶିଙ୍ଗ ମୂନିଆଁ—ଖାଇବ ଦ'କୁଣ୍ଡ ପିଇବ କୁଣ୍ଡେ ।

ଭୋଳ : ତମେ ଧଡ଼ ବାଣକ ଟିକଏ ଆଗଚଲ ଲୋକ ମୁଁ ଦେଖୁଚ ।

ଧଡ଼ : ଆଜ୍ଞା !!

ଭୋଳ : ହଉ ଅସିବା ହଉ ମୋ' ସାଙ୍ଗରେ ।

ଗୋପ : ଦାମୁଡ଼ ତା'ହେଲେ ଆପଣଙ୍କ ନଜର ?

ଭୋଳ : ତା' ନହେଲେ ମୁଁ ଆପଣଙ୍କୁ ଡାକଥା'ନ୍ତି କାହିଁକି ?···ଗାଈ ପୁଅ—ବଢ଼େଇ କୁଢ଼େଇ ରଖିଚୁ—ସେମିତ ଘରୁଆଘର ଦେଖିଲେ ଛଡ଼େଇଦେବ···ବୁଝିଲେ, ଆପଣ ଚହ୍ନିନାହାନ୍ତି ଏ ଭୋଳ ଦାସକୁ ।

ଗୋପ : ସେ ଦ୍ରବ୍ୟ ଆଉ ହୋଇଥିଲା କୋଉଠି ?

ଭୋଳ : ଘର ପକ୍କା କାମ ମୋର । ଭଣଜା ବାହାଘର ଯାଇ କେବେ—ଭଣଜା କଏ ଆଉ ପୁଅ କଏ—ସବୁ ତ ସେଇ । ବାର ଏକର ଶାରଦ ଜମି—ତନ ଏକର ଆଳୁ ଜମି—ସାତ ଏକର ଘରବାଡ—ଗୃହବଖରା କୋଠା—ସବୁ ସେଇ ପାଇବ ।

ଗୋପ : ବାହାଘର କଥା କଣ କହୁଥିଲେ ?

ଭୋଳ : କହୁଥିଲି, ବାହାଘର ଯାଇ କେବେ—ଅବଶ୍ୟ କନ୍ୟାଘର ଠିକଣା ହେଇ-ଗଲଣି ।

ଧଡ଼ : ଠିକଣା ହେଇଗଲଣି ? କେଉଁଠି ଆଜ୍ଞା ?

ଭୋଳ : କାହିଁକି ହେ—କନ୍ୟାଘର କଥା ଶୁଣି ଚମକୁଚ କାହିଁକି ? ଦାମୁଡ଼ ସାଙ୍ଗକୁ ତମର ବରପାହଟିଏ ଦରକାର କି ? ବୁଝିଲ ଧଡ଼ ବାଣକେ, ଏ ଭୋଳ ଦାସଙ୍କ ମନ ଯୋଉଠିକି ଚଳଚ, ସେଥିରୁ ସେ ମାହାଏ ଟଳିବେ ନାହିଁ । ଘର ପକ୍କା କାମ ମୋର ।

ଧଡ଼ : ନାଇଁ ଆଜ୍ଞା, ମୁଁ ଏମିତ ଟିକଏ ଉପରଠାଉରିଆ ହେଇ ପଦେ ପଚାରିଦେଲି ।

ଭୋଳ : ହଁ, ମୁଁ କଣ କହୁଥିଲି···

ଗୋପ : ବାହାଘର କଥା ।

ଖେଳ : ବାହାଘର ଯାଇ କେବେ—ଏ ଯାଏ କନ୍ୟାକର୍ତ୍ତାଙ୍କ ସାଥିରେ ଆମର ଦେଖା-ସାକ୍ଷାତ୍ ହୋଇନ ।

ଗୋପ : ( ହସ ହସ ମୁହଁରେ ) ଆଜ୍ଞା ଏଇଠି ମୋର ଗୋଟିଏ ପଦ କହିବାର ଅଛି ।

ଖେଳ : କଣ ··କ ପଦ ?

ଗୋପ : କନ୍ୟାଘର ଠିକଣା ହେଇଗଲାଣି—ଆଉ କନ୍ୟାକର୍ତ୍ତା ସହିତ ଦେଖା ସାକ୍ଷାତ୍ ହେଇନାହିଁ···ଏ କେମିତି କଥା ?

ଖେଳ : ଦେଖାହେବ କେମିତି ! ସେ ଗୋପପୁରରେ—ଆମେ ମଥୁରାପୁରରେ ।

ଗୋପ : ( ହସି ) ଆଜ୍ଞା ଗୋପ ମଥୁରାଙ୍କର ଭେଟ ହେବା କଣ ବଡ଼ କଥା ?

ଖେଳ : ଓହୋ, ଏ ବାହାଘରକଥା ଆମ ଶାଳକ ବୁଝାବୁଝି କରୁଚନ୍ତି—ମାଧବ ଦାସେ ।

ଗୋପ : ଓଁ···

ଖେଳ : ମୁଁ ସେଇକଥା କହୁଥିଲି—ବାହାଘର ଯାଇ କେବେ···

ଧଡ଼ି : ଆଜ୍ଞା, ବାହାଘର କେବେ ହେବ କି ?

ଖେଳ : ମୁଁ ଦେଖୁଚି ଧଡ଼ି ବାଣକେ ତମେ ମତେ କଥା ବୁଝାଇଦେବ ନାହିଁ । ବାହାଘର ଯେବେ ହେଉ—ଆଠଦିନ ହେଲା ମୋ ଚାଲିକା କାମ ଶେଷ ହୋଇଗଲାଣି । ଖାଲି ପକ୍କା କାମ ମୋର ।···ହଉ, ଆସିବା ହଉ ।

ଗୋପ : ଚାଲନ୍ତୁ ଆଜ୍ଞା ।

[ ଖେଳ ଗାଁ ଭିତରକୁ ଚାଲିଲେ । ଏ ଦୁହେଁ ଟିକେ ପଛେଇଗଲେ ଓ ନିମ୍ନସ୍ୱରରେ କଥାବାର୍ତ୍ତା ହେଲେ । ]

ଗୋପ : ଦେଖିଲୁ ତ ଧଡ଼ି, ତାଙ୍କର କଥା କେମିତି ତାଙ୍କର ମୁହଁରୁ ଆଦାୟ କରନେଲି । ଚନ୍ଦ୍ରାଦେଇଥିଲେ କଣ ଏମିତି ଖୋଲି କଥା ତାଙ୍କ ତୁଣ୍ଡରୁ ବାହାରଥା'ନ୍ତା ?

ଧଡ଼ି : ହେଲେ କନ୍ୟାଘର କେଉଁଠି—କନ୍ୟାକର୍ତ୍ତା କିଏ ସେ ଗୁମର ତ ଫିଟଇ-ନାହାନ୍ତି :

ଗୋପ : କହିଲେ ପର ବାହାଘର କଥା ସବୁ ମାଧବ ଦାସେ ବୁଝୁଚନ୍ତି !

ଧଡ଼ି : ମାଧବ ଦାସେ ଯଦି ଆଉ କେଉଁଠି କନ୍ୟାପାତ୍ର ଠିକଣା କରିଥାନ୍ତି !

ଗୋପ : ଏଁ !! କଥାଟା ତ ତୁ କିଛି ଭୁଲ କହିଲୁ ! ଏ ଗୁମର ଫିଟିବ କେମିତି ? ଏ ଗାଁର ଆଉ କେହି ତ କାହିଁ ଆଖିରେ ପଡ଼ୁନାହାନ୍ତି !

( ଖେଳ ପୁଣି ଫେରିଆସିଲେ )

ଖେଳ : କଣ···ପୁଣି କି ଫୁସ୍‌ଫାସ୍ ଚାଲିଚ ?

ଗୋପ : ନାହିଁ ଆଜ୍ଞା, ଏଇଟା ଆମ ନିଜ ନିଜ ଭିତର କଥା ।

ଭୋଳ : ଓ…ଘର କଥା ପରକୁ ଜଣାଇବେ ନାହିଁ—ଭଲ । ଧାମୁଣ୍ଡ ଦେଖିବେ ତ ଆସନ୍ତୁ ।

ଗୋପ ! ଧାମୁଣ୍ଡ ଆପଣଙ୍କ ଘୁହାଳରେ ଅଛୁ ?

ଭୋଳ : ହଁ ।

ଧଡ଼ : ଆଉ ଆପଣଙ୍କ ଭଣଜା ?

ଭୋଳ : କଣ ଭଣଜା ?

ଧଡ଼ : ଭଣଜାବାବୁ ଘରେ ଅଛନ୍ତି ?

ଭୋଳ : ମତେ ଆଗେ ତମେ କୁହ ଧଡ଼, ତମେ ପତର ଗୋଟେଇ ଆସିଚ ନା ଢୋଟା ମୂଳକଣ ଆସିଚ ? ଧାମୁଣ୍ଡରୁ ଭଣଜା ଉପରକୁ ଯାଉଚ କାହିଁକ ?

ଗୋପ : ଚାଲନ୍ତୁ ଆଜ୍ଞା, ଚାଲନ୍ତୁ ! ( ସମସ୍ତେ ଗାଁ ଭିତରକୁ ଗଲେ )

[ ଭୋଳାନାଥଙ୍କ ଗୃହ ସମ୍ମୁଖ ଭାଗ । ଏମାନେ ଆସି ପହଞ୍ଚିଲେ ]

ଭୋଳ : ଏଇଠି ଅପେକ୍ଷା କରନ୍ତୁ—ଏଇ ପିଣ୍ଡାରେ ବସନ୍ତୁ ।

ଗୋପ : ଏଇଟା ଆପଣଙ୍କ ଘର ?

ଭୋଳ : ହଁ ।

ଧଡ଼ : ତଳକୁ ଆଉ କେଇ ଖଣ୍ଡା ଅଛୁ ଆଜ୍ଞା ?

ଭୋଳ : ଧଡ଼ ବାବାଜୀ, ତେମେ ପୁଣି ଆଗଚାଲ ଢଙ୍ଗ ଧରୁଚ ! ଗାଈ ଗୋରୁ ଖଣ୍ଡାରେ ରହନ୍ତି ନାହିଁ…ଘୁହାଳରେ ରହନ୍ତି । (ଡାକିଲେ) ଆରେ ଶାମ…ଶାମ…

( ଡାକ ଡାକ ଚାଲିଗଲେ )

ଧଡ଼ : କଣ ଆଜ୍ଞା, ଇଏ ତ ମୋତେ ଧରିଛୁଆଁ ଦେଉନାହାନ୍ତି !

ଗୋପ : ହଁ…ଘର ଖଣ୍ଡିକ ବେଶ୍ ଢଙ୍ଗରେ କରିଚନ୍ତି ।

ଧଡ଼ : କରିଚନ୍ତି ତ ! ହେଲେ କନ୍ୟାଘରଟା କେଉଁଠି ସେ କଥା ଫିଟଉନାହାନ୍ତି ।

ଗୋପ : ସେଇ କଥା ତ !

ଧଡ଼ : ବସିବାକୁ ଖଣ୍ଡେ ଆସନ ନାହିଁ । ଏ ଖରାଟାରେ ଆମକୁ ଏ ପଥର ପିଣ୍ଡାରେ ବସିବାକୁ କହି ସିଏ ଧାମୁଣ୍ଡ ପାଇଁ ଗଲେଣି ନା କଣ ?

ଗୋପ : ଆରେ ବାବୁ, ଆମେ ତ ଏଯାଏଁ ଧାମୁଣ୍ଡ କଣା ଡାଳିକାରେ ଅଛୁ—ସେ ବେଳଟା କଟିଯାଉ—ତୁ ଟିକିଏ ଧୈର୍ଯ୍ୟ ଧରି ବସ ।

ଧଡ଼ : ପଥର ପିଣ୍ଡାଟା ତାତି ଖଇ ଫୁଟୁଚି…

ଗୋପ : ପିଣ୍ଡା ଏ ଧାରକୁ ଆ—କଲମି ଆମ୍ବଗଛ ଛାଇ ପଡ଼ୁଚି—ସେଇଠି ବସିବା ।

ଧଡ଼ : (କୁଣ୍ଠାର ସହିତ) ହଁ…ଉ । ( ଅନ୍ୟସ୍ଥଳକୁ ଗଲେ )

× × ×

[ ଭୋଳାନାଥଙ୍କ ଗୃହ ଅଗଣା । ଉପସ୍ଥିତ ଇନ୍ଦୁ, ମକୁ ଓ ମାଳା ]

ଇନ୍ଦୁ : ହଇରେ ମକୁ, ତୋ' ମାମୁ କୁଆଡ଼େ ଗଲେ କି ?

ମକୁ : ଏଇନେ ଦାଣ୍ଡପଟେ ତ ତାଙ୍କ ପାଟି ଶୁଭୁଥିଲା ! କାହିଁକି ?

ଇନ୍ଦୁ : ରାଜନାମା ଅଲଣାହାଟ ଯାଇଥିଲା ଯେ, କାହାଠୁ ଶୁଣି ଆସିଲା ଗୋପସୁନ୍ଦର ଦାସ କୁଆଡ଼େ ବରଘର ଦେଖିଆସିବେ ।

ମକୁ : (ଆଗ୍ରହରେ) କେଉଁଦିନ ଆସିବେ ? ଆଜି ?

ମାଳା : ତମେ ଏମିତି ତରଳଯାଉଚ କାହିଁକି ମକୁ ଭାଇ ?

ମକୁ : ଏଁ ! ସିଏ ଆସିଲେ ପୁଣି ତାଙ୍କ ଖବର ବୁଝିବାକୁ ପଡ଼ିବ ତ ? ନାହିଁ ମାଇଁ ?

ମାଇଁ : ପଚାରିବାକୁ ଅଛି !···ହେଲେ ସେ କେଉଁଦିନ ଆସିବେ କିଛି ଜଣା ପଡ଼ୁନାହିଁ ।

ମାଳା : ହଉ ଆଜି ଆସି ପହଞ୍ଚିଯିବେ ! ଆଜି ସକାଳେ ତ କାହିଁକି କାଉଟା ରାଉ ରାଉ ହଉଥିଲା ।

ମାଇଁ : କେଜାଣି ଲୋ ମା ! · ଆରେ ମକୁ, ତୁ ଗାଁ ମୁଣ୍ଡକୁ ଟିକେ ଗଲୁ—ଛକଡ଼ିଆ ନନା ଦୋକାନରେ କଣ ଭଲ ମିଠା ଥିବ ଆଣିବୁ । ଲକ୍ଷ୍ମୀପତର ପିଠା ପାଇଁ ତ ପୁର ଚକଟା ହେଉଚି—ପିଠାଉ ବଡା ହୋଇଚ ।···ତୋ' ପାଖରେ ଟଙ୍କା ଅଛିଟି ?

ମକୁ : ଅଛି । ମୁଁ ଯାଉଚି ମାଇଁ ! ( ଚାଲିଗଲା )

[ ଭୋଳାନାଥଙ୍କ ଗୃହ ସମ୍ମୁଖରେ ବାହାର ପଟୁ ଭୋଳାନାଥ ଆସିଲେ । ସଙ୍ଗେ ସଙ୍ଗେ ଗୋପ ଓ ଧଡ଼ି ଅନ୍ତଶାଳକୁ ଆସିଲେ । ]

ଭୋଳ : ଟିକିଏ ବାବୁ ଅପେକ୍ଷା କରନ୍ତୁ । ଦାମୁଡ଼ିଟା ନାଳ ସେ ପାଖକୁ ଚାଲି ଯାଇଚି—ଚାକର ଟୋକାକୁ ପଠେଇଚି ଆଣିବାକୁ । ( ମକୁ ଭିତରୁ ଆସିଲା ) ଆରେ ମକୁ !

ମକୁ : କଣ ମାମୁ ?

ଗୋପ : ଏଇ ପିଲାଟି କଣ ଆପଣଙ୍କ ଭଣଜା ?

ଭୋଳ : ହଁ ।

ଧଡ଼ି : ( ଖୁବ୍ ଖୁସିରେ ) ଭଲ—ଭଲ—ବେ ··ଶ୍ ଭଲ !

ଭୋଳ : କଣ ଭଲ—ହଇଏ ଧଡ଼ି ବାଶକ—କଣ ଭଲ ?

ଧଡ଼ି : ନାହିଁ ଆଜ୍ଞା·· ଆପଣଙ୍କ ଦାମୁଡ଼ି···

ଭୋଳ : କଣ ହେଲା ! ଦାମୁଡ଼ି କୋଉଠି—ତମେ କୋଉଠି—କାହାର କି ଭଲଟା ତମେ ଦେଖିଲ ?

ମକୁ : (ରାଗି) ସିଏ ପରା ମାମୁ ମତେ ଦେଖି କହୁଚନ୍ତି—ଦାମୁଡ଼ିଟା ଭଲ ।

ଗୋପ : ଗୁଡ଼୍ ବାବୁ, ତାର ଟିକିଏ ଆଗଚଳ ଢଙ୍ଗ ଅଛି ।

ମକୁ : ସ୍ୱା’ ବୋଲି ମତେ ଦେଖି କହିବେ ବାମୁଣ୍ଡ !

ଖେଳ : ହଉ, ହଉ ମକୁ—ଅଜ୍ଞାନ ଲୋକ ଏମାନେ—ତାଙ୍କ କଥା ଧରନା ।...ତୁ କୁଆଡ଼େ ଯାଉଛୁ ?

ମକୁ : ଛକଡ଼ିଆ ନନା ଦୋକାନକୁ- ମିଠା କିଣିବାକୁ ।

ଖେଳ : ହଉ ଯା । ( ମକୁର ପ୍ରସ୍ଥାନ )

ଗୋପ : ବାପେ ଆଜ୍ଞା, ଟିକିଏ ଶୁଣନ୍ତୁ ।

ଖେଳ : ବାମୁଣ୍ଡଟା ଆଗେ ଆସୁ— ତା’ପରେ ଦେଖାଦେଖି, ଶୁଣାଶୁଣି, କୁହାବୁଝା, ଯାହା କିଛି—ତା ଆଗରୁ କିଛି ଶୁଣିବି ନାହିଁ । (ଘର ଭିତରକୁ ଗଲେ)

ଗୋପ : ହଇରେ ଧଡ଼ୁ, ତୋର ଏ କି ଢଙ୍ଗ ?

ଧଡ଼ୁ : ମୁଁ କଣ କରିବି ? ତାଙ୍କର ତହଲତାହଲ ଚେହେରା ଦେଖି ମୋ ପାଟିରୁ ତ ହୁଁ କଥା ବାହାରିପଡ଼ିଲା ।...ହେଲେ ଆଜ୍ଞା ସେ ପଟ ହାଲ୍‌ଟା ଦେଖୁଚନ୍ତି ତ ! ମାମୁ ଘର ଭିତରକୁ ଗଲେ—ଭଣଜା ଦୋକାନକୁ ଗଲେ—ଆମେ ଏ ଦାଣ୍ଡ ପିଣ୍ଡାରେ ଏ ମିଠା କିଣା କାହାପାଇଁ ?

ଗୋପ : କଥାଟା ମତେ ବି କେମିତି ହେର୍ ଫେର୍ ଜଣାପଡ଼ୁଛି ।...ଆଉ ଘଡ଼ିଏ ବସି ଦେଖ୍ କଣ ହଉଚି ?

ଧଡ଼ୁ : ହଁ ଉ (ଅନ୍ତରାଳକୁ ଗଲେ)

× × ×

[ ଗାଁମୁଣ୍ଡ ବରଗଛ ତଳ । ମନ୍ଦର ଆସିଲେ । ]

ମନ୍ଦର : ଓହୋ ! କି ଖରା ହଉଚି ! ଏ ଗାଁମୁଣ୍ଡରେ ଏ ବରଗଛଟି ଯିଏ ଲଗେଇଚି, ତା’ର ଏକା ଖୁବ୍ ଧର୍ମ ହେବ ।

[ ଏହିକବେଳେ ହାତରେ ମିଠାପୁଡ଼ିଆ ଧରି ମକୁ ଆସିଲା ]

ହୋ ବାବୁ, ଟିକିଏ ଶୁଣିବ !

( ମକୁ ମନ୍ଦରଙ୍କ ନିକଟକୁ ଆସିଲା )

ମକୁ : କଣ ?

ମନ୍ଦର : ଏଇଟା ମହିଷାହ ଗାଁ ?

ମକୁ : ହଁ ।

ମନ୍ଦର : ଭୋଳାନାଥ ଦାସଙ୍କ ଘର ଏଇ ଗାଁରେ କି ?

ମକୁ : ( ଈଷତ୍ ଉତ୍କଣ୍ଠାର ସହିତ ) ହଁ···

ମନ୍ଦର : ଦାସେ ଘରେ ଥିବେ ?

ମକୁ : ( ଆଗ୍ରହର ସହିତ ) ଅଛନ୍ତି ଆଜ୍ଞା !

ମନ୍ଦର : (ମନକୁ ମନ ) ଆଜ୍ଞା ! ଆଜ୍ଞା କାହିଁକି ?

ମକୁ : ଆପଣ କିଏ···

ମନ୍ଦର : ଏ ···ହଁ, ମୁ ଆସିଚି କିଏ କି···ଦାସଙ୍କର ସମ୍ବନ୍ଧ ଗୋଟିଏ ··

(ମକୁ ଆଉ ଅପେକ୍ଷା ନକରି ମନ୍ଦରଙ୍କୁ ଭୂମିଷ୍ଠ ପ୍ରଣାମ କଲା)

ହଁା—ହଁା, ଇଏ କିଏ ? ଏକାବେଳକେ ଭୂମିଷ୍ଠ ପ୍ରଣାମ !···ତେମେ କିଏ ବାପ ?

ମକୁ : ମୁ ତ ତାଙ୍କ ଭଣଜା ।

ମନ୍ଦର : ଓ, ଭଲ—ଭଲ । ଖୁଉ ଖୁସି ହେଲି ତମକୁ ଦେଖି । ଆଜିକାଲି ଏମିତ ପିଲାଟିଏ କୋଟିକରେ ଗୋଟିଏ ବ ଦେଖିବାକୁ ମିଳିବ ନାହିଁ ।

ମକୁ : ଆପଣ ଆସନ୍ତୁ ମୋ ସାଙ୍ଗରେ ।

ମନ୍ଦର : ଚାଲ···କେମିତ ଚଞ୍ଚଳ ଚଞ୍ଚଳ କାମସାରି ମୁ ଘରକୁ ଫେରିବ । ତମ ଘରଟା କିଏ ?

ମକୁ : ଏଇ ସମ୍ନା—ଏଇ ଦିଶୁଚ ।

( ଦୁହେଁ ଘର ପାଖରେ ପହଞ୍ଚିଲେ )

ମକୁ : ଆସନ୍ତୁ ଆଜ୍ଞା, ଭିତରକୁ ଆସନ୍ତୁ !

( ଦୁହେଁ ଘର ଭିତରକୁ ଗଲେ । ଭିତରୁ ମକୁର କଥା ବାହାରକୁ ଶୁଭୁଥାଏ । )

ମକୁ : ଏଇ ଚୌକିରେ ବସନ୍ତୁ । ମୁଁ ମାମୁଙ୍କୁ ଡାକିଦେଉଚି ।

[ ସନ୍ତର୍ପଣରେ ଗୋପ ଓ ଧଡ଼ି ଅନ୍ତରାଳକୁ ଆସିଲେ । ଦୁହେଁ ଈଷତ୍ ନମ୍ରସ୍ୱରରେ କଥାବାର୍ତ୍ତା କରୁଥାନ୍ତି । ]

ଧଡ଼ି : ଗୋପବାବୁ, ଇଏ ପୁଣି କିଏ ?

ଗୋପ : ସିଏ ବ କିଏ ଆଉ ଦାମୁଙ୍କୁ କିଣିବାକୁ ଆସିଚନ୍ତି ?

ଗୋପ : ଗୁଡ଼ ବାବୁ, ତାର କିଛିଏ ଆଗଚଲା ଢଙ୍ଗ ଅଛି ।

ମକୁ : ସ୍ୱା' ବୋଲି ମତେ ଦେଖି କହିବେ ବାମୁଣ୍ଡି !

ଖେଳ : ହଉ, ହଉ ମକୁ—ଅଜ୍ଞାନ ଲୋକ ଏମାନେ—ତାଙ୍କ କଥା ଧରନା ।...ତୁ କୁଆଡ଼େ ଯାଉଚୁ ?

ମକୁ : ଛକଉଡ଼ିଆ ନନା ଦୋକାନକୁ- ମିଠା କିଣିବାକୁ ।

ଖେଳ : ହଉ ଯା । ( ମକୁର ପ୍ରସ୍ଥାନ )

ଗୋପ : ବାପେ ଆଜ୍ଞା, କିଛିଏ ଶୁଣନ୍ତୁ ।

ଖେଳ : ବାମୁଣ୍ଡଟା ଆଗେ ଅସୁ— ତା'ପରେ ଦେଖାଦେଖି, ଶୁଣାଶୁଣି, କୁହାବୁଲା, ଯାହା କଛୁ—ତା ଆଗରୁ କଛୁ ଶୁଣିବ ନାହିଁ । (ଘର ଭିତରକୁ ଗଲେ)

ଗୋପ : ହଇରେ ଧଡ଼ି, ତୋର ଏ କ ଢଙ୍ଗ ?

ଧଡ଼ି : ମୁଁ କଣ କରିବ ? ଜ୍ୱାଇଁଙ୍କ ତଉଲତାଉଲ ଚେହେରା ଦେଖି ମୋ ପାଟିରୁ ତ ହୁଁ କନା ବାହାରିପଡ଼ିଲା ।...ହେଲେ ଆଜ୍ଞା ସେ ପଠ ହାଲ୍‌ଟା ଦେଖୁଚନ୍ତି ତ ! ମାମୁ ଘର ଭିତରକୁ ଗଲେ—ଉଣେଜା ଦୋକାନକୁ ଗଲେ—ଆମେ ଏ ଦାଣ୍ଡ ପିଣ୍ଡାରେ ଏ ମିଠା କଣା କାହାପାଇଁ ?

ଗୋପ : କଥାଟା ମତେ ବ କେମିତ ହେଉ୍‌ ଫେର୍ ଜଣାପଡ଼ୁଚ ।...ଆଉ ଘଡ଼ିଏ ବସି ଦେଖ୍ କଣ ହଉଚ ?

ଧଡ଼ି : ହ · ଉ (ଅନ୍ତରାଳକୁ ଗଲେ)

× × ×

[ ଗାଁମୁଣ୍ଡ ବରଗଛ ତଳ । ମନ୍ଦର ଆସିଲେ । ]

ମନ୍ଦର : ଓହୋ ! କ ଖରା ହଉଚ ! ଏ ଗାଁମୁଣ୍ଡରେ ଏ ବରଗଛଟି ଯିଏ ଲଗେଇଚ, ତା'ର ଏକା ଖୁବ୍ ଧର୍ମ ହେବ ।

[ ଏତିକବେଳେ ହାତରେ ମିଠାପୁଡ଼ିଆ ଧରି ମକୁ ଆସିଲା ]

ହୋ ବାବୁ, କିଛିଏ ଶୁଣିବ !

( ମକୁ ମନ୍ଦରଙ୍କ ନିକଟକୁ ଆସିଲା )

ମକୁ : କଣ ?

ମନ୍ଦର : ଏଇଟା ମହିସାହ ଗାଁ ?

ମକୁ : ହଁ ।

ମନ୍ଦର : ଭୋଳାନାଥ ଦାସଙ୍କ ଘର ଏଇ ଗାଁରେ କି ?

ମକୁ : ( ଈଷତ୍ ଉତ୍କଣ୍ଠାର ସହିତ ) ହଁ···

ମନ୍ଦର : ଦାସେ ଘରେ ଥିବେ ?

ମକୁ : ( ଆଗ୍ରହର ସହିତ ) ଅଛନ୍ତି ଆଜ୍ଞା !

ମନ୍ଦର : (ମନକୁ ମନ ) ଆଜ୍ଞା ! ଆଜ୍ଞା କାହିଁକି ?

ମକୁ : ଆପଣ କିଏ···

ମନ୍ଦର : ଏ ···ହଁ, ମୁଁ ଆସିଚି କିଏ କି···ଦାସଙ୍କର ପରା ଗୋଟିଏ ··

(ମକୁ ଆଉ ଅପେକ୍ଷା ନକରି ମନ୍ଦରଙ୍କୁ ଭୂମିଷ୍ଠ ପ୍ରଣାମ କଲା)

ହାଁ—ହାଁ, ଇଏ କଣ ? ଏକାବେଳକେ ଭୂମିଷ୍ଠ ପ୍ରଣାମ !···ତେମେ କିଏ ବାପ ?

ମକୁ : ମୁଁ ତ ତାଙ୍କ ଭଣଜା ।

ମନ୍ଦର : ଓ, ଭଲ—ଭଲ । ଖୁବ୍ ଖୁସି ହେଲି ତମକୁ ଦେଖି । ଆଜିକାଲି ଏମିତି ପିଲାଟିଏ କୋଟିକରେ ଗୋଟିଏ ବି ଦେଖିବାକୁ ମିଳିବ ନାହିଁ ।

ମକୁ : ଆପଣ ଆସନ୍ତୁ ମୋ ସାଙ୍ଗରେ ।

ମନ୍ଦର : ଚାଲ···କେମିତି ଚଞ୍ଚଳ ଚଞ୍ଚଳ କାମସାରି ମୁଁ ଘରକୁ ଫେରିବି । ତମ ଘରଟା କିଏ ?

ମକୁ : ଏଇ ପରା—ଏଇ ଦିଶୁଚି ।

( ଦୁହେଁ ଘର ପାଖରେ ପହଞ୍ଚିଲେ )

ମକୁ : ଆସନ୍ତୁ ଆଜ୍ଞା, ଭିତରକୁ ଆସନ୍ତୁ !

( ଦୁହେଁ ଘର ଭିତରକୁ ଗଲେ । ଭିତରୁ ମକୁର କଥା ବାହାରକୁ ଶୁଭୁଥାଏ । )

ମକୁ : ଏଇ ଚୌକିରେ ବସନ୍ତୁ । ମୁଁ ମାମୁଙ୍କୁ ଡାକିଦଉଚି ।

[ ସନ୍ତର୍ପଣରେ ଗୋପ ଓ ଧଡ଼ି ଅନ୍ତରାଳରୁ ଆସିଲେ । ଦୁହେଁ ଈଷତ୍ ନିମ୍ନସ୍ୱରରେ କଥାବାର୍ତ୍ତା କରୁଥାନ୍ତି । ]

ଧଡ଼ି : ଗୋପବାବୁ, ଇଏ ପୁଣି କିଏ ?

ଗୋପ : ସିଏ ବି କଣ ଆଉ ଦାମୁଡ଼ି କିଣିବାକୁ ଆସିଚନ୍ତି ?

ଧନ୍ତୁ : ଦାମୁଡ଼ି କଣିବାବାଙ୍କ ପାଇଁ ପତ୍ର ଏଇ ତହଲ୍ଡନ୍ଦ ଚଳନ୍ତା ଦାଣ୍ଡଘିଣ୍ଡା ! ତାଙ୍କ ଘର ଭିତରେ ଚୌକି ହଉଥିଲେଣି ।

ଗୋପ : ସେଇ କଥା ତ ! ମାଧବ ଦାସେ କଣ ଆଉ···

ଧନ୍ତୁ : ହେଇଥିବ ଗୋପବାବୁ, ହେଇଥିବ । ମାଧବ ଦାସେ ଆମଠୁ ଆଗ ସ୍ୱାଙ୍କ ଘରେ ପ୍ରସ୍ତାବ ପକେଇଥିବେ ।

ଗୋପ : ନାଇଁ ନାଇଁ ଧନ୍ତୁ, ତୁ ସେଗୁଡ଼ା କହନାଇଁ । ଆଉ ଟିକଏ ଅପେକ୍ଷା କର ଦେଖ୍ କଣ ହଉଚ ।

ଧନ୍ତୁ : ହଁ··· ଉ !

( ଅନ୍ତରାଳକୁ ଗଲେ )

× × ×

[ ଭିତର ଅଗଣା । ଧଇଁସଇଁ ହୋଇ ମଲୁ ଆସିଲା ]

ମଲୁ : ମାଈଁ, ମାଈଁ !···ମାମୁ କୁଆଡ଼େ ଗଲେ ?

( ଖେଳ ଓ ଇନ୍ଦୁ ଆସିଲେ )

ଖେଳ } ଇନ୍ଦୁ } କଣ—କଣ—କଥା କଣ ?

ମଲୁ : ସିଏ...ସିଏ ଆସିଚନ୍ତି ମାମୁ !

ଖେଳ : କାହାନ୍ତି ? କୋଉଠି ?

ମଲୁ : ଦାଣ୍ଡଘରେ ବସିଚନ୍ତି ।

ଇନ୍ଦୁ : ଆରେ କିଏ ?

ଖେଳ : ଆରେ ସତେ ତ ! କାହା କଥା ତୁ କହୁଚୁ ?

ମଲୁ : ଗୋପସୁନ୍ଦର ଦାସ ।

ଇନ୍ଦୁ : ମୁଁ ଜାଣେ ପରା, ସିଏ ଆଜି ଆସିବେ ।

( ଖେଳ ଅନ୍ୟ ଘରଆଡ଼େ ଯିବାକୁ ଲଗିଲେ ) ମଲ ! ସିଏ ତ ଦାଣ୍ଡଘରେ ବସିଚନ୍ତି —ତମେ ଏଣେ କୁଆଡ଼େ ଯାଉଚ ?

ଖେଳ : ଡାଲକା···ଡାଲକାଟା ଆଣେ । ( ଚାଲିଗଲେ )

ଇନ୍ଦୁ : କଥା ଶୁଣ ! ସିଏତ ଘର ବର ଦେଖିଆସିଚନ୍ତି—ଏଇନେ ତାଲିକା କଣ ହବ ?

( ହାତରେ ତାଲିକା ଧରି ଖେଳ ଆସିଲେ )

ଖେଳ : ତାଲିକା ହେଲା ମୂଳ।···ହଁ, କଣ କରିବ କହୁଲ ? ମୁଁ ତ କିଛି ଜାଣିନି—କଣ ତାଙ୍କୁ କହିବ ? ମାଧବାଇ ନଥାସି ତାଙ୍କୁ ଏକା ପଠେଇଦେଲେ କେମିତି ? ଆଚ୍ଛା, ତାଙ୍କ ଖିଆପିଆ ?

( ଖେଳ ଖୁବ୍ ବ୍ୟସ୍ତ ହୋଇପଡ଼ୁଥାନ୍ତି )

ଇନ୍ଦୁ : ସେ କଥା ମୁଁ ବୁଝୁଚ । ତମେ ଯାଅ ।—ମଲ୍ଲ—ମଲ୍ଲ—ମଲ୍ଲ—ଲୁଗାଟା ସମାଲ ପିନ୍ଧ !

ଖେଳ : ଓ, ହିଁ ହିଁ ! ( ଗଲେ )

ଇନ୍ଦୁ : ମଲୁ, କଣ ଆଣିଲୁ କହୁଲୁ ?

ମଲୁ : ସବୁ ଆଣିଚ ମାଈଁ—ଲଡ଼ୁ, ରସଗୋଲା, କଲବ, ଆଳୁଚପ୍ ।

( ମାମୀ ଆସିଲା )

ଇନ୍ଦୁ : ଆଲୋ ମାମୀ !

ମାମୀ : ମୁଁ ତାଙ୍କୁ ଦେଖିଆସିଲିଣି ଅପା ! ଗୋପସୁନ୍ଦର ମୋଟେ ସୁନ୍ଦର ନୁହନ୍ତି ।

ମଲୁ : ସିଏ ସୁନ୍ଦର ନହେଲେ କଣ ହେଲା ? ମାଈଁ ତ କହୁଥିଲେ ପାଣ୍ଡୀ ଖାଲି ସୁନ୍ଦର ।

ମାମୀ : (ହସି) କଣ ଯେ ତମକୁ ମୁଁ କହନ୍ତି···

ଇନ୍ଦୁ : ହଉ ମା', ରୁ ଥାଳ ବାସନ ଆଣିଲୁ—ମୁଁ ଜଳଖିଆ ସଜାଡ଼େ ।

× × ×

[ ଦାଣ୍ଡଘର । ମନ୍ଦର ବସିଚନ୍ତି । ଖେଳ ଆସିଲେ । ]

ଖେଳ : ପ୍ରଣାମ ଆଜ୍ଞା !

ମନ୍ଦର : ପ୍ରଣାମ—ପ୍ରଣାମ ।

ଖେଳ : କି ଭାଗ୍ୟ ମୋର ! ଆପଣ ମୋ ଘରକୁ ଆସିଲେ ।

( ମନ୍ଦର ଏଭଳି ଆଡମ୍ବରର ମର୍ମ କିଛି ବୁଝିପାରୁନଥାନ୍ତି । )

ମନ୍ଦର : ଏଁ !

ଖେଳ : ଆପଣଙ୍କର ସବୁ କୁଶଳ ତ ?

ମନ୍ଦର : କୁଶଳ···ହଁ ହଁ—ଅବୁ କୁଶଳ ।···ମୁଁ ଆସିଥିଲି—

ଖେଳ : ଜାଣେ, ସବୁ ଜାଣେ । ମୋର ଗୋଟାଏ ଲକ୍ଷଣ, ମୁଁ ମୁହଁ ଦେଖି ମଣିଷ ଚହ୍ନିପାରେ । କେବେ ଆଗରୁ ଆପଣଙ୍କୁ ଦେଖିନ—ହେଲେ ଏଇ ଦେଖୁ ଦେଖୁ ଚହ୍ନିଗଲି—ଜାଣିଗଲି ।

( ମାମା ଆସନ ଓ ପାଣି ନେଇ ଆସିଲା );

କଏ, ମାମା—ହଁ ସେଇଠି ଆସନ ପକା ।

( ମାମା ଆସନ ପକେଇ, ପାଣି ରଖି ଭିତରକୁ ଗଲା । )

ମନ୍ଦର : ମୁଁ କହୁଥିଲି ଆଜ୍ଞା···

ଖେଳ : ଟିକଏ ଚୌକ ଗ୍ରୁଡ଼ ଆସନରେ ବସନ୍ତୁ ଆଜ୍ଞା !

ମନ୍ଦର : କାହିଁକି ? ( ମାମା ଜଳଖିଆ ଥାଳ ଆଣି ରଖିଦେଇଗଲା )

ଖେଳ : ଏଇ ସାମାନ୍ୟ ଟିକଏ ଜଳଯୋଗ ।

ମନ୍ଦର : ନା—ନା—ଏସବୁ କଣ ?

ଖେଳ : ମନା କରନ୍ତୁନି ମହାଶୟ—ମତେ ବନ୍ଧୁଦ୍ରୋହୀ କରନ୍ତୁନି ।

[ ନିଜେ ମନ୍ଦରଙ୍କ ହାତ ଧରି ଉଠେଇ ଆଣି ଆସନରେ ବସେଇଦେଲେ । ]

ମନ୍ଦର : ମୁଁ କିଛୁ ବୁଝିପାରୁନି !

ଖେଳ : ହାତ ଚଳନ୍ତୁ ଆଜ୍ଞା—ହାତ ଚଳନ୍ତୁ ।

( ମନ୍ଦର ମନ୍ଦର ଖାଇବା ଆରମ୍ଭ କଲେ )

ହଁ, ମୁଁ ଏଥର ତାଲିକାଟା ପଢ଼େ ।

ମନ୍ଦର : ତାଲିକା ?

ଖେଳ : ମୋରି ପକ୍କା କାମ । ଆଠଦିନ ହେଲା ତାଲିକା ସମାପ୍ତ କରି ରଖିଲିଣି ।

ମନ୍ଦର : ଆପଣଙ୍କର ଆଜ୍ଞା କେତୋଟି କି ?

ଖେଳ : କଣ କେତୋଟି ?

ମନ୍ଦର : ମୁଁ ତ ଶୁଣିଲି ଆପଣଙ୍କର ଗୋଟିଏ ଦାମୁଡ଼ ଅଛୁ—ଆପଣ କଣ ତାଲିକା ତାହାର କଲେଣି ? ଆପଣଙ୍କର କେତୋଟି · କଣ ଶଏ ପଚିଶ ?

ଖେଳ : ଆପଣ···ଅପଣ ଦାମୁଡ଼ କଣି ଆସିଛନ୍ତି ?

ମନ୍ଦର : ହଁ ତ ।

ଷୋଳ : ଏ' କ କଥା କହୁଚନ୍ତି ଆପଣ ! ଗୋପସୁନ୍ଦର ଦାସଙ୍କ ଭଳି ଲୋକ ମୂର୍ଖଙ୍କୁ···

ମନ୍ଦର : ଗୋପସୁନ୍ଦର ଦାସ ପୁଣି କିଏ ? ମୋ ନାଁ ତ ମନ୍ଦରଧର ଦାସ—ଗୋପସୁନ୍ଦର ଦାସ କିଏ ?

ଧଡ଼ି : (ବାହାରୁ ବଡ଼ପାଟିରେ) ଆଜ୍ଞା ଏଇଠି !

ଷୋଳ : କିଏ ?

ଧଡ଼ି : (ବାହାରୁ) ଗୋପସୁନ୍ଦର ଦାସ ।

ଗୋପ : (ବାହାରୁ) ହଁ ଆଜ୍ଞା, ଏ ଅଧମ ଏ ଦାଣ୍ଡପହଣ୍ଡରେ ସେବକବେଲୁ ଖଟରେ ପଡ଼ି ସିଝୁଛି ।

ଧଡ଼ି : (ବାହାରୁ) ଆଜ୍ଞା, ଏଣେ ଅସଲ ଦଅଁ ଅପୂଜା ପଡ଼ିଛନ୍ତି; ତେଣେ ଅକର୍ମଶିଳା ପାଖରେ ଭୋଗରାଗର ଧୂମ୍ ଚାଲିଛି ।

ଷୋଳ : ହେ ଭଗବାନ୍ ! ଆରେ ମକୁ, ତୁ କାହାକୁ ଆଣି ଏଠି ବସେଇଚୁ !

( ମନ୍ଦର ଆସନରୁ ଉଠି ବାହାରକୁ ପଳେଇଗଲେ )

ଷୋଳ : ହେଇଟ, ଶୁଣିଲଣି !

( ଇନ୍ଦ୍ର ଆସିଲେ )

ଇନ୍ଦ୍ର : (ରାଗି) ସବୁ ଶୁଣିଚ । ମୁହଁ ଦେଖି ମଣିଷ ଚହ୍ନୁଚ, ନା ? ତାଲିକା ଲେଖା ଚାଲିଚ, ତାଲିକା । ଯାଉନ, ତାଲିକା ପଢ଼େଇବ ।

( ଷୋଳ ନବୋଧଙ୍କ ଭଳି ଠିଆହୋଇଥାନ୍ତି )

ଠିଆ ହେଲ କାହିଁକି, ଯାଅ—ସମୁଦ୍ରଙ୍କୁ ଡାକ ।

ଷୋଳ : ସମୁଦ୍ର !

[ ଇନ୍ଦ୍ର ଭିତରକୁ ଗଲେ । ଗୋପ, ଧଡ଼ି ଓ ପଛରେ ମନ୍ଦର ଆସିଲେ ]

ଆସନ୍ତୁ ସମୁଦ୍ର—ଆସନ୍ତୁ !

ମନ୍ଦର : ଆଜ୍ଞା ମୋ' କଥା ?

ଷୋଳ : ବୁଝନ୍ତୁ ଆପଣ । ଆପଣଙ୍କର ଏ କ ଅକଲ ? ଚୁନହୋଇ ବସିଯାଇଚନ୍ତି !

ମନ୍ଦର : ଆଉ କଣଥା'ନ୍ତି କଣ ? ମତେ ଆପଣମାନେ କଣ କେଉଁ କଥା ବୁଝାଇଦେଲେ ? ମକୁ ତ ଏକାବେଳକେ ସାଷ୍ଟାଙ୍ଗ ପ୍ରଣାମ । ଆପଣ ତ ରସଗୋଲା ଉପରେ ଲଡ଼ୁ ଖୁଆଇଲେ ।

ଗୋପ : ହେଇଥାଏ ଆଜ୍ଞା ! ଏମିତି ଦେଖାଦେଖି ଘଟଣାରେ ଏମିତ ଟିକିଏ ବୁଦ୍ଧି ଶିଖିବାକୁ ପଡ଼ିଥାଏ ।

ଭୋଳ : ଏଇ ସେପଟେ ଦାମୁଡ଼ ଆସିଲଣି । ଯା'ନ୍ତୁ, ଦେଖିବେ ଯା'ନ୍ତୁ । (ମନ୍ଦର ବାହାରକୁ ଚାଲିଗଲେ)

ଇନ୍ଦ୍ର : (ଭିତରୁ) ଶୁଭୁଛୁ, ସମୁଦ୍ରଙ୍କୁ ଆମର ଗଣ୍ଡା ଭିତରକୁ ଡାକିଆଣ ।

ଭୋଳ : ଆସନ୍ତୁ ସମୁଦ୍ର, ଆପଣଙ୍କ ସମୁଦ୍ରୁଣୀଙ୍କ ଡାକରା ପଡ଼ିଲାଣି ।···ଅଚ୍ଛା ସମୁଦ୍ର, ଆପଣ ବି କେମିତି·· ଏ ଯାଏଁ ଚନ୍ଦା ଦଉନାହାନ୍ତି !

ଗୋପ : ଚନ୍ଦା ଦେଇଥିଲେ ଆପଣ ସେତେବେଳେ ଯାହା କହୁଥିଲେ—ସେଇ ମହାଭାରତ ସୃଷ୍ଟି କେମିତି ହେଇଥାନ୍ତା ?

ଭୋଳ : (ହସି ହସି) ମହାଭାରତ ନୁହେଁ ସମୁଦ୍ର—ମହାବିଭ୍ରାଟ !!

□□□

# ଡାକ୍ତର ଜ୍ୱାଇଁ

**ଚରିତ୍ର**

ଡାକ୍ତରବାବୁ : ବୟସ ପ୍ରାୟ ୪୦।୪୨

କମ୍ପାଉଣ୍ଡର : ମଧ୍ୟବୟସ୍କ

ପରଶୁରାମ : ମଧ୍ୟବୟସ୍କ ଗୃହସ୍ଥ

କୃଷ୍ଣ : ଯୁବକ

ବିଶି : ନାପିତ

ଲତା : ଅବିବାହିତା ତରୁଣୀ

ବୋହୂ : ଲତାର ବୋହୂ

[ ମଫସଲ ଅଞ୍ଚଳର ଏକ ଗ୍ରେଷ୍ଠ ସହରରେ ଡାକ୍ତରବାବୁଙ୍କ ଘରୋଇ ଡାକ୍ତରଖାନା । ସମୟ ମଧ୍ୟାହ୍ନ । ଉପସ୍ଥିତ ଡାକ୍ତରବାବୁ ଓ କମ୍ପାଉଣ୍ଡର୍‌ବାବୁ । ]

ଡାକ୍ତର : ଆଉ କେହି ରୋଗୀ ନାହାନ୍ତି ତ ?

କମ୍ପାଉଣ୍ଡର : ନା ସାର୍ ! ଆଉ କେହି ନାହାନ୍ତି ।

ଡାକ୍ତର : ବାବ୍‌ବା ! ଦିନ ଆସି ଦୁଇଟା ବାଜିଲାଣି । ଆଜି ଏ ବେଳା ଅନେକ ରୋଗୀ ଦେଖିଲି—ତିରିଶି ଜଣରୁ ବେଶି ।

କମ୍ପାଉଣ୍ଡର : ଠିକ୍ କହୁଛନ୍ତି ଆଜ୍ଞା ! ଆମ ଏ ଡାକ୍ତରଖାନାରେ ଦିନକୁ ଦିନ ରୋଗୀ ସଂଖ୍ୟା ଯେମିତି ବଢ଼ୁଛନ୍ତି ନା···

ଡାକ୍ତର : ରୋଗ ବଢ଼ିଲେ ରୋଗୀ ବଢ଼ିବେ, ଏଇଟା ଆଉ ନୂଆ କଥା କଣ ?

କମ୍ପାଉଣ୍ଡର : ନୂଆ କଥା ହେଲା ସାର୍, ଆମର ଏଇ ଡାକ୍ତରଖାନା; ଆମର ଏଠିକି ରୋଗୀମାନେ ଯେମିତି ଆସୁଛନ୍ତି, ଆଉ ଏଠୁ ଯେମିତି ଫେରୁଛନ୍ତି···

ଡାକ୍ତର : ରହିବାର ବ୍ୟବସ୍ଥା ଏଠି ଯେତେବେଳେ ନାହିଁ, ସେମାନେ ଫେରିବେ ହିଁ ଫେରିବେ ।

କମ୍ପାଉଣ୍ଡର : ମୁଁ ସେକଥା କହୁନାହିଁ ଆଜ୍ଞା ! ସବୁକଥା ଦେଖି ମୋର ମନେହଉଚ, ଏଇଟା ଆମର ଗୋଟାଏ ଡାକ୍ତରଖାନା ନୁହେଁ ।

ଡାକ୍ତର : ମାନେ ?

କମ୍ପାଉଣ୍ଡର : ଏଇଟା ଗୋଟାଏ ମିଠେଇ ଦୋକାନ ।

ଡାକ୍ତର : ( ହସି ) ଆପଣ କଣ ଦିନକୁ ଦିନ ପିଲା ହୋଇଯାଉଚନ୍ତି କି କମ୍ପାଉଣ୍ଡରବାବୁ ?

କମ୍ପାଉଣ୍ଡର : ହଁ ଆଜ୍ଞା ! ପିଲାମାନେ ଯେମିତି ମିଠେଇ ଦୋକାନରେ ଭିଡ଼ ଜମେଇ, ହାତରେ ମିଠେଇପୁଡ଼ା ଧରି ମନଖୁସିରେ ଘରକୁ ଫେରନ୍ତି, ଆମ ରୋଗୀମାନେ ଏଠୁ ଫେରିଲାବେଳେ ଦେଖିବେ ସମସ୍ତଙ୍କ ମୁହଁରେ ଯେମିତି ହସ ଖୁସି—ସେମିତି ଆଶା ଆଶ୍ୱାସନା । ସମସ୍ତଙ୍କ ମୁହଁରେ ସେଇ ଗୋଟିଏ କଥା—ଏ ଡାକ୍ତରବାବୁ ହଉଚନ୍ତି ଜଣେ ଅମୃତହସ୍ତା ଡାକ୍ତର !

ଡାକ୍ତର : ଶୁଣନ୍ତୁ, ଶୁଣନ୍ତୁ । ମୁଁ ଏଠି ଆସି ଡାକ୍ତରଖାନା ଖୋଲିଲା ଦିନୁ ଆପଣଙ୍କ ମୁହଁରେ ମୋର ଏମିତ ପ୍ରଶଂସା ମୁଁ ଶୁଣିଆସୁଚ । ( ଉଠି ପଦଚାରଣ କଲେ )

କମ୍ପାଉଣ୍ଡର : ହେଲେ ସେଗୁଡ଼ାକ ତ ଆଜ୍ଞା ମୋ ନିଜର ଧନ ନୁହେଁ ! ମୋର ଏତେ ବଡ଼ ଭଣ୍ଡାର କାହିଁ ? ପ୍ରଶଂସାର ସୁଅ ସେ ତରଫରୁ ବହିଆସୁଚ । ମୁଁ ମଝିରେ ନମିତ୍ତ ମାତ୍ର ।

ଡାକ୍ତର : ଜଣେ ଡାକ୍ତର ହିସାବରେ ମୋର ଯାହା କର୍ତ୍ତବ୍ୟ, ମୋର ଶକ୍ତିମତେ ମୁଁ ତାହା କରୁଚ ।...କିନ୍ତୁ କମ୍ପାଉଣ୍ଡର୍ ବାବୁ...

କମ୍ପାଉଣ୍ଡର : ଆଜ୍ଞା !

ଡାକ୍ତର : ଏଠିକି ଯେତେ ରୋଗୀ ଆସୁଚନ୍ତି, ସମସ୍ତେ ଯେ ଭଲ ହଉଚନ୍ତି—କେହି ମରୁ-ନାହାନ୍ତି—ଏ କଥା ତ ଆପଣ କହିପାରିବେନାହିଁ ।

କମ୍ପାଉଣ୍ଡର : ନାଇଁ ଆଜ୍ଞା, ସେ କଥା ମୁଁ କହିବ କାହିଁକି ? ଯାହାର ମରିବାର କଥା ସେ ମରୁଚ । ହେଲେ ସେ ମରିବାରେ ବି ଅମର ବାହାଦୂରି ଅଛି ।

ଡାକ୍ତର : ( ହସି ) ରୋଗୀ ମରିବାରେ ଅମର ବାହାଦୂରି ! କଣ ଆପଣ କହୁଚନ୍ତି ?

କମ୍ପାଉଣ୍ଡର : ସତକଥା କହୁଚ ସାର୍, ମୋ' କଥା ଆପଣ ବିଶ୍ୱାସକରନ୍ତୁ । ମୋ' ନିଜ ଅଭିଜ୍ଞତାରୁ ମୁଁ ଏ କଥା କହୁଚ ।

ଡାକ୍ତର : କଣ ଶୁଣେ ! ( ଚୌକିରେ ବସିଲେ )

କମ୍ପାଉଣ୍ଡର : ଧରନ୍ତୁ ଆପଣଙ୍କ ପାଖକୁ ଜଣେ ରୋଗୀ ଆସିଲା—ଟାଇଫଏଡ଼ ରୋଗୀ । ଆପଣ ଚିକିତ୍ସା କଲେ—କିନ୍ତୁ ତା'ର ଦୁର୍ଭାଗ୍ୟ ସେ ମଲା । ( କଥାର ମୋଡ଼ ବଦଳାଇ ) ଭଗବାନ କରନ୍ତୁ, ଆଉ ଯଦି କେହି ଟାଇଫଏଡ଼ ରୋଗୀ ଆସେ, ସେ ଭଲହୋଇଯାଉ, ଆପଣଙ୍କ ହାତଯଶ ରହୁ... ( ପୁଣି ପୂର୍ବପର ) କିନ୍ତୁ ସାର୍, ଧରନ୍ତୁ ଯଦି ଏମିତ କେହି ଦୁର୍ଭାଗା...

ଡାକ୍ତର : କୁହନ୍ତୁ ଆପଣ କଣ କହୁଚନ୍ତି ।

କମ୍ପାଉଣ୍ଡର : ସେ ଦୁର୍ଭାଗା ମଲା ! କିନ୍ତୁ ସାର୍ ସେ କେଉଁ ରୋଗରେ ମଲା ?

ଡାକ୍ତର : ଟାଇଫଏଡ଼ ରୋଗୀ—ଟାଇଫଏଡ଼ରେ ମଲା ।

କମ୍ପାଉଣ୍ଡର : ସେଇକଥା ! କିନ୍ତୁ ସାର୍, ମୁଁ ଏମିତ ରୋଗୀ ଦେଖିଚ—ଏମିତ ଡାକ୍ତର ଦେଖିଚ—ଏମିତ ଡାକ୍ତରଖାନା ଦେଖିଚ—ଯେଉଁଠିକି ଟାଇଫଏଡ଼ ରୋଗୀ ଆସିଚ—ଟାଇଫଏଡ଼ ରୋଗର ଚିକିତ୍ସା ହୋଇଚ—କିନ୍ତୁ ସେ ରୋଗୀ ମରିଚ... ମେଲେରିଆରେ ।

ଡାକ୍ତର : (ଜୋର୍ ରେ ହସିଉଠି) କମାଣ୍ଡର ବାବୁ ! ନାଃ ! ଆପଣଙ୍କ କଥା ଶୁଣି ଆମୋଦ ଲାଭକରୁଥିଲେ ବ ଶୁଣିବାକୁ ଆଉ ବେଳ ନାହିଁ । ବନ୍ଦବାନ୍ଦ କରନ୍ତୁ, ଯିବା ।

କମାଣ୍ଡର : କଲି ଆଜ୍ଞା, ବନ୍ଦକଲି । ବନ୍ଦ୍ କରିବା ତ ମିନିଟ୍‌କର କାମ—ଖୋଲିବାକୁ ଯିନା ଡେରି ।

[ କଥା କହିବା ଅବସରରେ ଡାକ୍ତରଖାନା ବନ୍ଦ୍ କରୁଥାନ୍ତି । ]

ଡାକ୍ତର : ହଁ ବନ୍ଦ୍ କରନ୍ତୁ । ଚଞ୍ଚଳ ବସାକୁ ଯାଇ କେମିତ ଟିକିଏ ବିଶ୍ରାମ ନବା । (ହାଇମାରି) ଖୁବ ଦୁର୍ବଳ ଲାଗୁଛୁ ।

କମାଣ୍ଡର : ଆପଣଙ୍କର ତ ଗାଧୁଆପାଧୁଆ ଶେଷହୋଇଯାଇଚ ?

ଡାକ୍ତର : ହଁ !

କମାଣ୍ଡର : ତେବେ ଆଉ ବସାକୁ କାହିଁକି ଯିବେ ?

ଡାକ୍ତର : କି ଆଶ୍ଚର୍ଯ୍ୟ ! ବସାକୁ ଯିବନାହିଁ କଣ ଦିନସାରା ଏଇଠି ବସିରହିବ ? ଖାଇବ କଣ ?

କମାଣ୍ଡର : ଏତେ ବଡ଼ କଥାଟାଏ କହିଲେ ଆଜ୍ଞା ?

ଡାକ୍ତର : କି କଥା ?

କମାଣ୍ଡର : ସବୁ ଭୁଲିଗଲେ ?

ଡାକ୍ତର : କଣ—ହୋଇଚ କଣ—କୁହନ୍ତୁ ତ !

କମାଣ୍ଡର : ଆପଣଙ୍କ ପୁଝାରି ଟୋକା ପରା ଏ ବେଳାଟା ଛୁଟି ନେଇଚ ?

ଡାକ୍ତର : ଓହୋ ! ସତରେ ଏକା ଭୁଲିଯାଇଚ । ଏ ବେଳା ମୋର ରୋଷେଇବାସ ବନ୍ଦ୍—ଏ ବେଳା ଆପଣଙ୍କ ଘରେ ଖାଇବା କଥା । ଆଉ ତା'ହେଲେ ବସାକୁ ଯିବ କାହିଁକି ? ଏଇଠୁ ଆପଣଙ୍କ ଘରକୁ ଯିବ ।

କମାଣ୍ଡର : ମୋ ଭାଗ୍ୟ !

ଡାକ୍ତର : ନା ନା, ଭାଗ୍ୟ ଆପଣଙ୍କର ନୁହେଁ, ଇଏ ମୋର ସୌଭାଗ୍ୟ । ଆପଣ ବିଶ୍ୱାସ କରନ୍ତୁ—ମୁଁ ଆଜି ସକାଳୁ ଉଠି ପ୍ରଥମେ ଗୋଟାଏ ଭଦଭଦଳିଆ ଚଢ଼େଇ ଦେଖିଚ ।

କମାଣ୍ଡର : ପୁଣି ଗୋଟାଏ ଏତେ ବଡ଼ କଥା କହିଲେ !

ଡାକ୍ତର : କାହିଁକି···ଭୁଲ କଛୁ କହିନ ।

କମାଣ୍ଡର : ବେଳାଟାଏ ପୁଝାରି ରହିଲା ନାହିଁ ବୋଲି ଆପଣ ମୋ' ଘରେ ଖାଇବେ । ମୋ ଘର ନ ଥିଲେ ହୋଟେଲ୍‌ରେ ଖାଇଥାନ୍ତେ । ଏଥିରେ ପୁଣି କହୁଚନ୍ତି କଣ ନା—ସୌଭାଗ୍ୟ ! ( କମାଣ୍ଡର ଯେମିତ ଟିକିଏ ଗମ୍ଭୀର ହୋଇପଡ଼ିଛନ୍ତି )

ଡାକ୍ତର : ବୁଝିଲି ଆପଣଙ୍କର ଇଙ୍ଗିତ ! କିନ୍ତୁ କମ୍ପାଉଣ୍ଡର ବାବୁ, ଏ ଆଲୋଚନା କରି ଆଉ ଲାଭ କଣ କୁହନ୍ତୁ !

କମ୍ପାଉଣ୍ଡର : ଲାଭ ନାହିଁ ?

ଡାକ୍ତର : ନାଁ, ଲାଭ ନାହିଁ । ସରକାରୀ ଚାକିରି କରିବନାହିଁ ବୋଲି ସ୍ଥିରକଲି—କଲି ନାହିଁ । ସେମିତି ସ୍ଥିର କଲି, ବିବାହ କରିବନାହିଁ । ଆଉ ବିବାହ ଯେତେବେଳେ କରିନି—ନିଜର ଘରସଂସାର ବୋଲି ଯେତେବେଳେ ସେମିତି କିଛି ନାହିଁ— ସେତେବେଳେ ଜୀବନଟା ଏମିତି କଟିବ ହିଁ କଟିବ । ଏ ପ୍ରସଙ୍ଗ ନେଇ ଆଲୋଚନା କରି ଲାଭ କଣ ?

କମ୍ପାଉଣ୍ଡର : କିନ୍ତୁ ଆଜ୍ଞା ! ନିଜର ସଂସାର ନିଜର ପରିବାର ଥିଲେ ଜୀବନର ଅତି ସାମାନ୍ୟ ସୁଖ-ସ୍ୱାଚ୍ଛନ୍ଦ୍ୟ ଟିକକ ଯେ ସ୍ୱର୍ଗସୁଖଠାରୁ ବଳିଯାଏ—ଏ କଥା କଣ ଆପଣ ଅସ୍ୱୀକାର କରିବେ ?

ଡାକ୍ତର : ନା ନା, ମୁଁ ଅସ୍ୱୀକାର କରିବି କାହିଁକି ? ମୋର ଜଞ୍ଜାଳ ନାହିଁ ବୋଲି ମୁଁ କଣ କହିବି—ଏ ସାରା ସଂସାରରେ ସମସ୍ତଙ୍କର ଜଞ୍ଜାଳ କଟାହେଉ ! ଏଇ ତ, ଆଖି ଆଗରେ ଆପଣଙ୍କୁ ଦେଖୁଛି—ଘରସଂସାର କରି କି ଆରାମରେ ଆପଣ ଅଛନ୍ତି !

କମ୍ପାଉଣ୍ଡର : ମୁଁ ଆରାମରେ ଥାଏ ନଥାଏ, ଆପଣ ମୁହେଁ ମୁହେଁ ଯେ ଏ କଥାଟା ମାନି ନେଉଛନ୍ତି ସେଇ ଯଥେଷ୍ଟ ।

ଡାକ୍ତର : ମୁଁ ତ କହୁଚି—ସତକଥାଟା ସ୍ୱୀକାର କରିବାରେ ମୋର ଆଦୌ ଆପତ୍ତି ନାହିଁ; କିନ୍ତୁ ସେଥିରେ ମୋର ବା ଆପଣଙ୍କର କାହାରି କିଛି ବୋଧହୁଏ ଲାଭନାହିଁ ।

କମ୍ପାଉଣ୍ଡର : ଲାଭ କଥା କହିବାକୁ ଆମେ କିଏ ଆଜ୍ଞା ? ଯିଏ ଆମ ଜୀବନକୁ ନେଇ ବେପାର ବଣିଜ କରୁଚି, ଏକା ସେଇ ଜାଣେ ଲାଭ କାହାର କ୍ଷତି କାହାର । ସେଇ ପରମବ୍ରହ୍ମ ପରମେଶ୍ୱର ଯଦି ଦୃଷ୍ଟି ଫେରାଇବେ···

ଡାକ୍ତର : (ହସି) ତାଙ୍କର ସେ ଶୁଭଦୃଷ୍ଟି ମୋ ଉପରେ ପଡ଼ିବାର ଆଉ କୌଣସି ସମ୍ଭାବନା ନାହିଁ । ମୁଁ ତାଙ୍କର ଦୃଷ୍ଟି ସୀମା ଅତିକ୍ରମ କରିଗଲିଣି । ଅତଏବ ଏ ଆଲୋଚନା ଏଇଠି ବନ୍ଦକରି ଆସନ୍ତୁ ଯିବା ।

କମ୍ପାଉଣ୍ଡର : ପ୍ରଭୁ ହେ !

ଡାକ୍ତର : କାହିଁକି ମିଛରେ ପ୍ରଭୁଙ୍କୁ ଡାକୁଚନ୍ତି ? ଆସନ୍ତୁ ଯିବା ।

କମ୍ପାଉଣ୍ଡର : ଚାଲନ୍ତୁ ।

ଡାକ୍ତର : ହଁ, କମ୍ପାଉଣ୍ଡର ବାବୁ ! ସାଇକେଲଟା ମୋର ଏଇଠି ଥାଉ ।; ସାଇକେଲଟା ମିଛରେ ନେବ କାହିଁକି ?

କମ୍ପାଉଣ୍ଡର : ନାହିଁ ଆଜ୍ଞା, ସାଇକେଲଟା ଆଣିଥାନ୍ତୁ ।

ଡାକ୍ତର : କାହିଁକି ?

କମ୍ପାଉଣ୍ଡର : ଖାଇସାରି କିଛିଏ ବିଶ୍ରାମ ନେଇ ଆମେ ଯିଆଡ଼େ ଯିଅନ୍ତେ ବକପୁର ଯିବା ।
ଡାକ୍ତର : କୋଉ ବକପୁର ?
କମ୍ପାଉଣ୍ଡର : ଏଇ ଆଜ୍ଞା, ଆମ ସଦେଇପୁର ପାଖ ବକପୁର—ଏଠୁ ମୋଟେ ବାଟ ତନି ଚାରି ମାଇଲ୍ ।
ଡାକ୍ତର : ବକପୁର ଯିବା କାହିଁକି ?
କମ୍ପାଉଣ୍ଡର : ବକପୁର ପର୍ଶୁରାମ ବାବୁଙ୍କ ଘର—ତାଙ୍କ ନାଁ ଆପଣ ଶୁଣିଥିବେ । ବେଶ୍ ଘରୁଆ ଘର ।
ଡାକ୍ତର : ନା, ମୁଁ ଶୁଣିନାହିଁ କି ତାଙ୍କୁ ଜାଣିନାହିଁ ।
କମ୍ପାଉଣ୍ଡର : ଖୁବ୍ ଖାନ୍‌ଦାନ୍ ଘର । ତାଙ୍କ ସେ ଅଞ୍ଚଳରେ ତାଙ୍କର ବେଶ୍ ନାଁ ଡାକ୍, ଯାହାକୁ କହନ୍ତି ଭଦ୍ରଲୋକ ।
ଡାକ୍ତର : ସେ କାଳେ ଆସିଥିଲେ ?
କମ୍ପାଉଣ୍ଡର : ନା, ଲୋକ ପଠେଇଥିଲେ ।
ଡାକ୍ତର : କେତେବେଳେ ?
କମ୍ପାଉଣ୍ଡର : ଆପଣ ଯେତେବେଳେ ପୋଷ୍ଟମାଷ୍ଟର ବାବୁଙ୍କ ଘରକୁ ଯାଇଥିଲେ ।
ଡାକ୍ତର : ମୁଁ ଯିବାପାଇଁ ଆପଣ ତାଙ୍କୁ ଜବାବ୍ ଦେଇଚନ୍ତି ?
କମ୍ପାଉଣ୍ଡର : ଆଜ୍ଞା ।
ଡାକ୍ତର : ମୋତେ ନ ପଚାରି ଜବାବ୍ ଦେଲେ କାହିଁକି ?
କମ୍ପାଉଣ୍ଡର : ଆପଣ ତ ନଥିଲେ—ଏଣେ ଏଠି ରୋଗୀ ଭର୍ତ୍ତି !
ଡାକ୍ତର : ମୁଁ ଆପଣଙ୍କୁ କହିଥିଲି ନା, ମତେ ନ ପଚାରି କୋଉଠି ଭିଜିଟ୍‌ରେ ଯିବାପାଇଁ ଆପଣ କାହାକୁ ଜବାବ ଦେବେନାହିଁ ।
କମ୍ପାଉଣ୍ଡର : ପରଶୁରାମ ବାବୁ ଅତମାହାରେ ଭଦ୍ରଲୋକ···
ଡାକ୍ତର : ମୋ' ଦୃଷ୍ଟିରେ ମୋର ସବୁ ରୋଗୀ ଭଦ୍ରଲୋକ; କିନ୍ତୁ ଗୋଟାଏ ଭିଜିଟ୍‌ରେ ଯିବାପାଇଁ ମୋର ସୁବିଧା ଅସୁବିଧା ଅଛି—ମୋର ଆଉ କୋଉଠିକି ଯିବାର ଅଛି କି ନାହିଁ···
କମ୍ପାଉଣ୍ଡର : ମୁଁ ଡାଏରୀ ଦେଖିଛି ସାର୍, ଆଜି ଆପଣଙ୍କର ଆଉ କୋଉଠିକି ଭିଜିଟ୍‌ରେ ଯିବାର କିଛି ପ୍ରୋଗ୍ରାମ ନାହିଁ ।
ଡାକ୍ତର : ରୋଗୀ କିଏ ? କାଳେ ପରଶୁରାମ ବାବୁ ! ( କମ୍ପାଉଣ୍ଡର ନିରୁତ୍ତର ) କଣ, ପରିଚୁପ ପରି ଆପଣଙ୍କୁ ?
କମ୍ପାଉଣ୍ଡର : ଆ··ଜ୍ଞା ?
ଡାକ୍ତର : କିଏ ରୋଗୀ, ତା' ବି ଜାଣନ୍ତିନାହିଁ !! ବେଶ୍ ! ଭଲ କରିଚନ୍ତି । ଆପଣ ତାଙ୍କୁ କଥା ଦେଇଚନ୍ତି, ଆପଣ ବୁଝନ୍ତୁ । ମୁଁ ଯିବିନାହିଁ ।

କମ୍ପାଉଣ୍ଡର : ଆଜ୍ଞା, ଆପଣଙ୍କ ଉପରେ ଭରସା ରଖି ମୁଁ ତାଙ୍କୁ ଜବାବ ଦେଇଛି । ନଚେତ୍
ମୁଁ ମିଛୁଆ ହୋଇଯିବି ।
ଡାକ୍ତର : ଆରେ ବାବୁ ମୁଁ ଯିବ କାହିଁକି ? କାହାକୁ ଦେଖିବାକୁ ଯିବି ?
କମ୍ପାଉଣ୍ଡର : ଆଜ୍ଞା—ପରଶୁରାମ ବାବୁଙ୍କ ଝିଅକୁ ।
ଡାକ୍ତର : ସେଇଆ ତ କହୁଚ, ଥଙ୍ଗଥଙ୍ଗ ହଉଚନ୍ତି କାହିଁକି ? କଣ ହୋଇଚି ତାଙ୍କର ?
ଖୁବ୍ ସିରସ୍ୟାସ୍ କେଶ୍ ?
କମ୍ପାଉଣ୍ଡର : ଆଜ୍ଞା···
ଡାକ୍ତର : ତା' ମଧ୍ୟ ଜାଣନ୍ତି ନାହିଁ ? କଣ ରୋଗ—ଅବସ୍ଥା କେମିତି—କିଛି ନଜାଣି
ଆପଣ ଭଜନ୍ ପାଇଁ ବ୍ୟସ୍ତ ହୋଇଗଲେ ?
କମ୍ପାଉଣ୍ଡର : ଆପଣ ନିଜ ଆଖିରେ ଦେଖିଲେ ସବୁ ବୁଝିପାରିବେ ।
ଡାକ୍ତର : ବୁଝିଲେ କମ୍ପାଉଣ୍ଡର ବାବୁ—ଆପଣଙ୍କର ସବୁ ଭଲ; କିନ୍ତୁ ମଝିରେ ମଝିରେ
ଏଇସବୁ ଯେ ଅଦ୍ଭୁତ ଖିଆଲ ଦେଖାଦିଏ (ଟିକିଏ ଭାବି) ଆଚ୍ଛା ଆଚ୍ଛା, ମୋର
ମନେ ପଡ଼ୁଚି, ଆପଣ ଆଉ ଥରେ କେବେ ମତେ ବଜପୁର ଯିବାକୁ କହିଥିଲେ ।
ମୁଁ ଅବଶ୍ୟ ଗଲିନାହିଁ । କଣ ଏଇ ପର୍ଶୁରାମ ବାବୁଙ୍କ ଘରକୁ ?
କମ୍ପାଉଣ୍ଡର : (ଖୁବ୍ ଖୁସିରେ) ଆଜ୍ଞା !
ଡାକ୍ତର : ତା'ପରେ କଣ ହେଲା ମୁଁ ତ ଜାଣିନାହିଁ ! କଣ ରୋଗ ଆପେ ଆପେ ଭଲ
ହୋଇଗଲା ?
କମ୍ପାଉଣ୍ଡର : ବୋଧହୁଏ ।
ଡାକ୍ତର : ଏଥର ବି ସେମିତି ଆପେ ଆପେ ଭଲ ହୋଇଯିବ ।
କମ୍ପାଉଣ୍ଡର : ନାହିଁ ଆଜ୍ଞା, ଆଜି ନ ଗଲେ ମୋ ମୁଣ୍ଡ ରହିବନାହିଁ ।
ଡାକ୍ତର : ଆପଣଙ୍କ ସାଥିରେ ତାଙ୍କର ସୁସମ୍ପର୍କ ଅଛି ବୋଧହୁଏ ?
କମ୍ପାଉଣ୍ଡର : ଏମିତି···ଟିକେ ଟିକେ ··
ଡାକ୍ତର : ଶୁଣନ୍ତୁ, ମୁଁ ଆପଣଙ୍କୁ କହିରଖୁଚି—ଭବିଷ୍ୟତରେ ଏ ଭଳି ଭୁଲ ଯେପରି ଆଉ
ଆପଣଙ୍କର ନ ହୁଏ । ଯଦି ହୁଏ, ଆପଣଙ୍କ କଥା ଆପଣ ବୁଝିବେ ।
କମ୍ପାଉଣ୍ଡର : ଆଜ୍ଞା !
ଡାକ୍ତର : ହଉ, ଆସନ୍ତୁ, ସାଇକେଲଟା ତେବେ ନବାକୁ ପଡ଼ିବ ।
କମ୍ପାଉଣ୍ଡର : ହଁ ଆଜ୍ଞା ! ଚାଲନ୍ତୁ । (ନମ୍ର ଗଳାରେ) ପ୍ରଭୁ ହେ, ଜଗନ୍ନାଥ ଶେଷେଶ୍ୱର···
ଡାକ୍ତର : କମ୍ପାଉଣ୍ଡର ବାବୁ !
କମ୍ପାଉଣ୍ଡର : ପ୍ରଭୁ ବଟ ଗୋପାଳ···ମା' କୁଚାମଚଣ୍ଡୀ···
ଡାକ୍ତର : କମ୍ପାଉଣ୍ଡର ବାବୁ !
କମ୍ପାଉଣ୍ଡର : ଚାଲନ୍ତୁ ଆଜ୍ଞା, ଚାଲନ୍ତୁ ।

ଡାକ୍ତର : ଅରେ ଏ କଥା କଣ କୁହନ୍ତି !

କମାଣ୍ଡର : କ କଥା ଅଜ୍ଞା ?

ଡାକ୍ତର : ଡାକ୍ତର ମୁଁ—ଟଙ୍କା ନେଇ ରୋଗୀ ଦେଖି ଯିବ ଏଥିରେ ଆପଣ କ ଗଡ଼ କଥିଲେ ଯେ ଏମନ୍ତରେ ଗଦ୍‌ଗଦ୍ ହୋଇ ଅତ ଭକ୍ତିର ସହିତ ଦେବଦେବୀଙ୍କୁ ସ୍ମରଣ କରୁଛନ୍ତି ? କଥା କଣ ?

କମାଣ୍ଡର : କଛୁ ନୁହେଁ ଅଜ୍ଞା—ଅସନ୍ତୁ । ତେଣେ ଅନ୍ୟ ପ୍ରତ୍ତିକ ଶୁଣି ଚଣା-ଗୁଡ଼ଳ ହେଇଯିବଣି । ସାଇକେଲଟା ମୁଁ ଧରୁଛୁ—ଅସନ୍ତୁ ।

× × ×

[ ବଳପୁର । ପରଶୁରାମ ବାବୁଙ୍କ ଦାଣ୍ଡଘର । ସମସ୍ତ ଅପରାହ୍ଣ । ପଲ୍ଲୀ ଅଞ୍ଚଳର ଏକ ଅବସ୍ଥାସମ୍ପନ୍ନ ଗୃହସ୍ଥ ଘରର ଉପଯୋଗୀ ଉପକରଣମାନ ରହିଛ । ପରଶୁରାମ ବାବୁ ଓ ତାଙ୍କ ପୁତୁରା କୃଷ୍ଣ ଟିକଏ ଉଦ୍‌ବେଗ ଅବସ୍ଥାରେ କାହାର ଅପେକ୍ଷାରେ ରହିଛନ୍ତି । ]

ପରଶୁ : ଆରେ କୃଷ୍ଣ !

କୃଷ୍ଣ : ମଉସା !

ପରଶୁ : ବେଳ ତ ଆସି ହେଇଗଲା ।

କୃଷ୍ଣ : ହଁ ମଉସା, ବେଳ ହେଇଗଲା !

ପରଶୁ : କାହାନ୍ତି ସେମାନେ ?

କୃଷ୍ଣ : ଆସୁଥିବେ ।

ପରଶୁ : କଣ ତୋତେ କହିଥିଲେ ?

କୃଷ୍ଣ : କହିଥିଲେ ସାଢ଼େଚାରଟା ବେଳେ ଆସି ପହଞ୍ଚିବେ ।

ପରଶୁ : ସାଢ଼େ ଚାରଟା ତ ଆସି ବାଜିଲା ।

କୃଷ୍ଣ : ଆସି ପହଞ୍ଚିଲେଣି କ କଣ—ମୁଁ ଦେଖେଁ । (ଯାଉଥିଲା)

ପରଶୁ : ଆସିଲେ କଣ ଆମେ ଜାଣିପାରବା ନାହିଁ ଯେ ତୁ ଯାଉଚୁ ଦେଖିବାକୁ !...ଶୁଣ !

କୃଷ୍ଣ : କଣ ?

ପରଶୁ : ସେ ଡାକ୍ତରବାବୁଙ୍କ ନାଁ କଣଟି ?

କୃଷ୍ଣ : ନାଁ ? ତାଙ୍କ ନାଁ ତ ମୁଁ ଜାଣି ନାହିଁ ମଉସା !

ପରଶୁ : ଜାଣିନୁ ବୋଲି ପଚ୍ଚାରି ଆସି ପାରିଲୁ ନାହିଁ ?

କୃଷ୍ଣ : କାହାକୁ ପଚାରିବି ? ସେଠି ତ ସମସ୍ତେ ତାଙ୍କୁ ଡାକନ୍ତି ଡାକ୍ତରବାବୁ !

ପରଶୁ : ତାଙ୍କ କମ୍ପାଉଣ୍ଡର ବାବୁଙ୍କୁ ପଚାରି ପାରିଲୁ ନାହିଁ ?

କୃଷ୍ଣ : ବୁଝିଲ ମଉସା, ନିଜେ କମ୍ପାଉଣ୍ଡରବାବୁ ବି ଅନ୍ୟମାନଙ୍କ ଭଳି ତାଙ୍କ ଡାକ୍ତରବାବୁଙ୍କ ନାଁ ଜାଣିନଥିବେ ।

ପରଶୁ : ଏଇଟା ତୋ'ର ଖାଲି ମନଗଢ଼ା କଥା ।

କୃଷ୍ଣ : ହେଲେ ମଉସା, ନାଁରୁ କଣ ମିଳିବ ? ନାଁଟା ଜାଣିବା କଣ ବଡ଼ କଥା ?

ପରଶୁ : ତା' ଠିକ୍ ଯେ, ହେଲେ ଆଜି ଯେତେବେଳେ···(ଟିକିଏ ଭାବିଯାଇ) ଆରେ ହଁ, କୃଷ୍ଣ, ତୁ ଯେତେବେଳେ ଗଲୁ, ଡାକ୍ତରବାବୁ ଥିଲେ କୋଉଠି ? ତାଙ୍କ ବସାରେ ନା ଡାକ୍ତରଖାନାରେ ?

କୃଷ୍ଣ : ଡାକ୍ତରବାବୁ ମୋଟେ ନଥିଲେ—କୁଆଡ଼କୁ ଯାଇଥିଲେ ।

ପରଶୁ : ତୁ ତା'ହେଲେ କାହା ସାଙ୍ଗରେ କଥାବାର୍ତ୍ତା ହୋଇ ଆସିଲୁ ?

କୃଷ୍ଣ : ତାଙ୍କ କମ୍ପାଉଣ୍ଡର ବାବୁଙ୍କ ସାଙ୍ଗରେ ।

ପରଶୁ : ଡାକ୍ତର ତା'ହେଲେ ଏକଥା କିଛି ଜାଣିନାହାନ୍ତି ?

କୃଷ୍ଣ : ଜାଣି ନ ଥିବେ କେମିତି ? କମ୍ପାଉଣ୍ଡର ଯେତେବେଳେ ଜାଣିଲେ, ଡାକ୍ତର ତ ବଳେ ଜାଣିବା କଥା ।

ପରଶୁ : ତୁ କଣ ମତେ ବୁଝେଇବୁ କ'ରେ କୃଷ୍ଣ ? ( ଡାକିଲେ ) ଅହେ ଶୁଣୁଚ ! ଶୁଣିବଟି ଏଣେ ।
(ବୋଉ ଆସିଲେ)

ବୋଉ : କଣ ?

ପରଶୁ : କୃଷ୍ଣ କଥା ଶୁଣିଲଣି ? ଡାକ୍ତରବାବୁଙ୍କ ସାଙ୍ଗରେ ତା'ର ମୋଟେ ଦେଖା ହୋଇନି ।

ବୋଉ : ମୁଁ ଜାଣେଚି ।

ପରଶୁ : କଣ ହେଲ ? ତମେ ସବୁ ଜାଣି ଚୁପ୍‌ଚାପ୍ ବସିଚ ! ମତେ ବି କିଛି କହୁନ !

ବୋଉ : କହିଥା'ନ୍ତି କଣ ଶୁଣେ ? ଏ ସବୁ କଥାରେ କଣ କିଏ ନିଜେ କିଛି କରେ ? ସବୁ କାମ ମଝିରେ ଆଉ ଜଣକଦ୍ୱାରା ହୁଏ ।

ପରଶୁ : ଏଇ ଆଉ ଜଣକ ହେଲେ କମ୍ପାଉଣ୍ଡର ବାବୁ, ନାହିଁ ମାଉସୀ ?

ବୋଉ : ତୋ' ମଉସାଙ୍କୁ ସେ କଥା ବୁଝେଇଦେ' ।

ପରଶୁ : ହଁ, ବୁଝିଲି । ଆଚ୍ଛା, ଡାକ୍ତରଙ୍କର ଆସିବା ବେଳ ତ ହେଇଗଲା—ତମର ଏଣେ କେତେଦୂର ଗଲା ?

ବୋଉ : ରନ୍ଧାବଢ଼ା ସବୁ ସରିଲାଣି—ଖାଲି ଲୁଚି ଦି'ଖଣ୍ଡ ଛଣାହେବ ।

ପରଶୁ : ଲୁଚି ବରାଦ କାହିଁକି କଲ ଶୁଣେ ?

ବୋଉ : ଆଉ କ'ଣ କରିଥାନ୍ତି ?

ପରଶୁ : ହାକ୍ତର ମଣିଷ ସେ—ଆଜ ସିନା ହଣପୁରରେ ଆସି ରହିଲେ । ନ ହେଲେ କେବେଠୁ ତାଙ୍କର ସହରର ବଜାରରେ କାରବାର । ତାଙ୍କୁ କଣ ଲୁଚ ପୁଣର ଅଭାବ ଅଛି ?

ବୋଉ : ତମକୁ ଯେବେ ଅଭାବ ଥିଲା, ମତେ ସେ କଥା କହିଲ ନାହିଁ ?

ପରଶୁ : ଅଭାବ କଥା ମୁଁ କହୁ ନାହିଁ, ମୁଁ କହୁଥିଲି ଆମ ଦେଶୀ ଢଙ୍ଗରେ ଛତ୍ରପତ୍ର କ ସରୁଚକୁଲି କ ମାଲପୁଆ—ଏମିତି କିଛି କରିଥିଲେ ତାଙ୍କ ମନକୁ ପାଇଥାନ୍ତା ।

ବୋଉ : ନାହିଁ ନାହିଁ, ଚକୁଲି ଚଡ଼ଉ କଥା ନୁହେଁ । ସେଥିରେ ସେ ଆମ କୁ କଳିଯିବେ । କହିବେ, ଏଗୁଡ଼ାକ କହାଠ ମରହଟ୍ଟିଆ-- ସ୍ୱାଦ୍ କିଛି ମାଲୁମ ନାହିଁ ।

ପରଶୁ : ହଇରେ କୃଷ୍ଣ, ଏ କଥା କହିବେ ଯେ ?

କୃଷ୍ଣ : ସିଏ କଣ କହିବେ ନକହିବେ···କଣ ଖାଇବେ ନଖାଇବେ—ସେ କଥା ମାଉସୀ ବୁଝିବେ, ଆପଣ ସେଥିରେ ମୁଣ୍ଡ ପୂରାଉଛନ୍ତି କାହିଁକି ?

ବୋଉ : ହଁ, ସେ କଥା ମୋ'ଠକ ଛାଡ଼ିଦିଅ ।

ପରଶୁ : ଆଚ୍ଛା, ଛାଡ଼ିଦେଲି । ହଁ···ଆରେ କୃଷ୍ଣ, ସିଏ ଆଜି ଅସୁଛନ୍ତି ବୋଲି ଗାଁରେ କେହି ଜାଣିଛନ୍ତି କି ? କାହାକୁ କହିଚୁ ?

କୃଷ୍ଣ : ନା, କାହାକୁ କହିନି । କେହି ଜାଣନ୍ତିନି ।

ପରଶୁ : ଭଲ—କାହାକୁ କହିବା ଦରକାର କଣ ? କେତେବେଳେ କୋଉ କଥା !

ବୋଉ : ସେ ବୁଦ୍ଧି କୃଷ୍ଣର ଅଛି ।

ପରଶୁ : ନିଶ୍ଚୟ ଅଛି ।···ହ, ମୁଁ କଣ କହୁଥିଲି କି···ଶୁଣ, ପାଖକୁ ଆସ ।

( କୃଷ୍ଣ ବାହାରକୁ ଚାଲିଗଲା )

ବୋଉ : କହୁନ କଣ କହୁଚ···ମତେ ଶୁଭୁଚ ।

ପରଶୁ : ଇ···ସ୍ନେ···

ବୋଉ : କଏ ?

ପରଶୁ : ଲତା ! ଲତା କଣ କରୁଚ ?

ବୋଉ : ଶୋଇଥିଲା···ଏଇନେ ବସିଚ ।

ପରଶୁ : କାନ୍ଦୁଚ କି ?

ବୋଉ : ଯୁଗକୁ ଯୁଗ ବଦଳିଲା, ହେଲେ ତମର ସେ ମରହଟ୍ଟିଆ ଢଙ୍ଗ ବଦଳିଲା ନାହିଁ । କଓ, ସେ କାନ୍ଦିବ କାହିଁକି ? ସେମିତିକା ଝିଅ ସେ ନୁହେଁ ।

ପରଶୁ : ମୁଁ କଣ ଜାଣିନାହିଁ କି ? ଜାଣିଚି । ଝିଅ ଆମର ସେମିତିକା ନୁହେଁ ।···କାନ୍ଦୁନାହିଁ ତେବେ ?

ବୋଉ : ପୁଣି ?···

ପରଶୁ : ମନ ଭଲ ଅଛି ?

ବୋଉ : ହେଇଚ, ତେମେ ଏମିତ ଖୁଣ୍ଟିନାଣ୍ଟି କଥା ମତେ ପଚ୍ଚରନାଇଁ । ଏ ବେଳରେ କାହା ମନ ଭଲ ନ ଥାଏ କ ଖରାପ ନ ଥାଏ । ଏଇଟା ପର ଯାହା କହନ୍ତି, ଗୋଟାଏ ଜୀବନ ମରଣ ଘାଟି । ଯାହା ତା' ଭାଗ୍ୟରେ ଥିବ, ଘଟିବ ।

ପରଶୁ : ଠିକ୍, ଠିକ୍—ଠିକ୍ କହୁଚ । ଭାଗ୍ୟର ଲିଖନ କେ କରିବ ଆନ ।

( କୁଞ୍ଜ ଆସିଲା )

କୁଞ୍ଜ : ଆଇଲେଣି—ଆଇଲେଣି ମଉସା—ଆସିଗଲେ ।

ପରଶୁ : ରୁ ଯା—ତାଙ୍କୁ ପାଛୋଟି ଆଣି ଘରେ ବସା । ମୁଁ ଟିକଏ ପରେ ଆସିବି ।··· ହେଇଚ, ତେମେ ଆଉ ଏଠି ଠିଆହେଇ ରହିଲ କାଇଁକି ? ଅସ !

ବୋଉ : ରୁହ, ଟିକଏ ଦେଖେଁ ।

ପରଶୁ : ଦେଖିବା ବେଳ କଣ ଗୁଲିଯାଉଚ ? ଆଗେ ତେଣେ ଯାଇ ତମ ବଗ୍ରଦ କର ।

ବୋଉ : ରଖେଇ ଦେବେ ନାଇଁ ମତେ ଇଏ ଏଠି । ( ଦୁହେଁ ଭିତରକୁ ଗଲେ । )

( ଡାକ୍ତର ଓ କମ୍ପାଉଣ୍ଡର ଦାଣ୍ଡ ପାହାଚ ଉପରକୁ ଉଠିଲେ )

କୁଞ୍ଜ : ଧୂଅନ୍ତୁ ଆଜ୍ଞା—ଗୋଡ଼ ଧୂଅନ୍ତୁ—ଏଇ ପାହାଚ ଉପରକୁ ଆସନ୍ତୁ ।···ଆରେ ବଗିଆ, ପାଣିଗାଲଟା ବାବୁଙ୍କୁ ଦେ ।

ଡାକ୍ତର : ଗୋଡ଼ ଧୋଇବ ? କାହିଁକି ? ଗୋଡ଼ ମୋର କିଛି ହେଇନ ।

କୁଞ୍ଜ : ଏଇଟା ପର ଗୋଟାଏ ଅମର ବ୍ୟଧି—ଆପଣ କଣ ଜାଣିନଥିବେ ?

ଡାକ୍ତର : ଜାଣେ । କିନ୍ତୁ ଏଠିକି ମୁଁ ବ୍ୟଧିରକ୍ଷା କରିବାକୁ ଆସିନ, ମୁଁ ଆସିଚି ମୋ କାମରେ । ପାଦରେ ମୋର ମୋଜା ଜୋତା—ଧୋଇବା ଦରକାର କ'ଣ ?

କୁଞ୍ଜ : ହେଲେ ଆଜ୍ଞା···

କମ୍ପାଉଣ୍ଡର : କୁଞ୍ଜବିହାରୀ !

କୁଞ୍ଜ : ଆଜ୍ଞା !

କମ୍ପାଉଣ୍ଡର : ଥାଉ—ଗୋଡ଼ ଧୋଇବାର କିଛି ଆବଶ୍ୟକତା ନାହିଁ ।

( ଦୁହେଁ ଘର ଭିତରକୁ ଆସିଲେ )

ଡାକ୍ତର : ଏ ଘର ଭିତରେ ଜୋତା ପିନ୍ଧି ବସିବାରେ କିଛି ବାଧା ନାହିଁ ତ ?

କୁଞ୍ଜ : ନାଇଁ ଆଜ୍ଞା, କିଛି ବାଧା ନାହିଁ । ଜୋତା ପିନ୍ଧି ରୋଷେଇଘର ଭିତରେ ପଶିଲେ ବି ଆପଣଙ୍କୁ କେହି ବାଧାଦେବେନାହିଁ ।···ବସନ୍ତୁ ଆଜ୍ଞା, ବସନ୍ତୁ ।

ଡାକ୍ତର : ହଁ । ( ଡାକ୍ତର ଓ କମ୍ପାଉଣ୍ଡର ଦୁହେଁ ବସିଲେ )

କମ୍ପାଉଣ୍ଡର : ପରଶୁରାମବାବୁ କାହାନ୍ତି ?

କୁଞ୍ଜ : ଅଛନ୍ତୁ—ଡାକବଙ୍ଗଳା । (ଭିତରକୁ ଗଲା)

ଡାକ୍ତର : (ହସି) "ଜୋତା ପିନ୍ଧି ବେଡ୍‌ରୁମ୍ ଭିତରେ ପଶିଲେ ବି କେହି ବାଧା ଦେବନି "…ଡାକ୍ତରମାନଙ୍କ ପାଇଁ ବୋଧହୁଏ ଏ ସବୁ ବିଶେଷ ସୁବିଧା…ନା କଣ କହୁଛନ୍ତି କମ୍ପାଉଣ୍ଡରବାବୁ ! (କମ୍ପାଉଣ୍ଡର ଆଖିବୁଜି କଣ ଭାବୁଥାନ୍ତି )

ଡାକ୍ତର : କମ୍ପାଉଣ୍ଡରବାବୁ !

କମ୍ପାଉଣ୍ଡର : ଏଁ .. ସାର୍ ?

ଡାକ୍ତର : କଣ ହେଉଛି ଆପଣଙ୍କର ? ଏମିତି ଅନ୍ୟମନସ୍କ ହୋଇପଡ଼ୁଛନ୍ତି ଯେ ?

କମ୍ପାଉଣ୍ଡର : ନାହିଁ ଆଜ୍ଞା, ମୁଁ ଭାବୁଥିଲି…

ଡାକ୍ତର : କଣ ଭାବୁଥିଲେ ?

କମ୍ପାଉଣ୍ଡର : ମୁଁ ଭାବୁଥିଲି…ଏଇ ପରଶୁରାମବାବୁଙ୍କ କଥା ।

ଡାକ୍ତର : ପରଶୁରାମବାବୁଙ୍କ ଘରକୁ ଆମେ ଆସିଛୁ—ତାଙ୍କ କଥା ନ ଭାବି ଆଉ ଅନ୍ୟ କାହା କଥା ଆପଣ ଭାବିବେ ବା କାହିଁକି ?

କମ୍ପାଉଣ୍ଡର : ସେଇ କଥା ସାର୍ !

ଡାକ୍ତର : ଘରଦ୍ୱାରରୁ ଯାହା ଜଣାଯାଉଛି, ପରଶୁରାମବାବୁଙ୍କ ଅବସ୍ଥା… ମନ୍ଦ ନୁହେଁ ।

କମ୍ପାଉଣ୍ଡର : ନାହିଁ ଆଜ୍ଞା, ମନ୍ଦ ନୁହେଁ । ବେଶ୍ ନାଁ-ଡାକ ଘର । (ପରଶୁରାମ ଆସିଲେ) ଏଇ ତ ପରଶୁରାମବାବୁ ଆସିଲେଣି ।…ନମସ୍କାର ଆଜ୍ଞା !

ଡାକ୍ତର : ନମସ୍କାର ।

ପରଶୁ : ନମସ୍କାର—ନମସ୍କାର । ଆଉ ସବୁ ଭଲ ତ ? ବାଟରେ କିଛି ଅସୁବିଧା…

(ଅର୍ଥପୂର୍ଣ୍ଣ ଦୃଷ୍ଟିରେ କମ୍ପାଉଣ୍ଡରଙ୍କୁ ଚାହିଁଲେ)

କମ୍ପାଉଣ୍ଡର : ଅସୁବିଧା… (ଡାକ୍ତରଙ୍କୁ ଚାହିଁଲେ)

ଡାକ୍ତର : ନା—ନା - ଏମିତି କିଛି ଅସୁବିଧା ହୋଇନି । ତେବେ କମ୍ପାଉଣ୍ଡରବାବୁ ଯାହା କହୁଥିଲେ ତିନି ଚାରି ମାଇଲ ବାଟ, ପ୍ରକୃତରେ ବୋଧହୁଏ ହରିପୁରଠୁ ଆପଣଙ୍କ ଗାଁ ଛ' ସାତ ମାଇଲ ବାଟ ହବ ।

ପରଶୁ : କାହିଁକି—କାହିଁକି ? ଆପଣ କୋଉ ବାଟେ ଆସିଲେ କି କମ୍ପାଉଣ୍ଡରବାବୁ ?

କମ୍ପାଉଣ୍ଡର : ସଡ଼କ ବାଟଟା ଟିକିଏ ଦୂରୁଆ ଜଣାପଡ଼ିଲା । ନାଳବନ୍ଧରେ ବୁଲି କରି ଆସିଲୁ ।

ପରଶୁ : ହେଇଥିବ । ନାଳବନ୍ଧ ବାଟଟା ଟିକିଏ ବୁଲଣି ।

ଡାକ୍ତର : ତେବେ ଅସୁବିଧା ସେମିତି କିଛି ହୋଇନି ।

ପରଶୁ : ଆଉ ସବୁ ଭଲ ତ ? ଦେହ ମୁଣ୍ଡ ଭଲ ଅଛି ତ ?

( ପରଶୁରାମଙ୍କର କୃତକୃତ୍ୟ ଭବ । ଡାକ୍ତର ଟିକିଏ ବସ୍ମିତ ହୋଇପଡ଼ିଲେ । )

ଡାକ୍ତର : କାହା ଦେହ-ମୁଣ୍ଡ କଥା ପଚାରୁଛନ୍ତି ?

ପରଶୁ : ଏଇ ବାବୁ ତମର କଥା—ତମ ଦେହ ମୁଣ୍ଡ କଥା ପଚାରୁଛି । ସବୁ ଭଲ ତ ?

( ଡାକ୍ତରଙ୍କ ମୁହଁରେ ହସ )

ଡାକ୍ତର : ବାପ୍, ମୁଁ ଆପଣଙ୍କ ଘରକୁ ଆସିଲି—ଆଉ ଆପଣ ମୋ ଦେହ ମୁଣ୍ଡ କଥା ପଚାରୁଛନ୍ତି !···ଶୁଣୁଛନ୍ତି ତ କମ୍ପାଉଣ୍ଡର ବାବୁ !···କମ୍ପାଉଣ୍ଡରବାବୁ ।

କମ୍ପାଉଣ୍ଡର : ଏଁ···ସାର୍··· ।

ଡାକ୍ତର : କଣ ହୋଇଛି ଆପଣଙ୍କର ? ଏଠିକି ଆସିବା ପରଠୁ ଆପଣ ବରାବର ଅନ୍ୟମନସ୍କ ହୋଇପଡ଼ୁଛନ୍ତି ।

କମ୍ପାଉଣ୍ଡର : ନାହିଁ ଆଜ୍ଞା, ମୁଁ ଭାବୁଥିଲି···ଭାବୁଥି··

ଡାକ୍ତର : ପୁଣି କଣ ଭାବୁଥିଲେ ?

କମ୍ପାଉଣ୍ଡର : ଭାବୁଥିଲି···

ଡାକ୍ତର : ପୁଣି କ'ଣ ଭାବୁଥିଲେ ?

[ କୁନ୍ତଳକୁ ଭିତରକୁ ଆସୁଥିବାର ଦେଖି କମ୍ପାଉଣ୍ଡର ଯେମିତି ବାହା ଖୋଜି ପାଇଲେ । କୁନ୍ତଳ ଓ ବଣି ଆସିଲେ । ]

କମ୍ପାଉଣ୍ଡର : କୁନ୍ତଳଦେବୀ, କଣ ଆଣିଲ···ଚା' ପାନ ସିଗାରେଟ୍ । ହଉ, ରଖ ଏଠି ।

( ଚା' ପ୍ରଭୃତି ଯଥାସ୍ଥାନରେ ରଖି ବଣି ଚାଲିଗଲେ ),

କୁନ୍ତଳ : ମଉସା, ଆପଣ ଆସନ୍ତୁ ।

ପରଶୁ : କାହିଁକି ?

କୁନ୍ତଳ : ଆସନ୍ତୁ ନା ।

ପରଶୁ : କଥା କିଛି ନାହିଁ, ଖାଲି ଆସନ୍ତୁ ।

କୁନ୍ତଳ : କଥା ଅଛି ।

ପରଶୁ : କି କଥା କହ । (କୁନ୍ତଳର ଇତସ୍ତତଃ ଭାବ) କରେ କହନ୍ତୁ !

କମ୍ପାଉଣ୍ଡର : ସେ ଆପଣଙ୍କ କାନରେ କହିବେ ।

ପରଶୁ : ଓ··(କୁନ୍ତଳ କାନରେ କହୁଥାଏ)···ହଁ, ବେଶ୍ ବେଶ୍·· ବୁଝିଲି · ଆଚ୍ଛା ଆଚ୍ଛା—ଏ ? ନା ନା, ସେ କଥା ନୁହେଁ ।

କୃଷ୍ଣ : ଆପଣ ତା'ହେଲେ ଆସନ୍ତୁ ।

ପରଶୁ : ହଉ, ଚାଲ । ମୁଁ ଟିକଏ ଭିତରୁ ଆସୁଚି କମ୍ପାଉଣ୍ଡର ବାବୁ !

( ପରଶୁରାମ ଓ କୃଷ୍ଣ ଭିତରକୁ ଗଲେ )

ଡାକ୍ତର : କମ୍ପାଉଣ୍ଡରବାବୁ !

କମ୍ପାଉଣ୍ଡର : ଚା' ଖା'ନ୍ତୁ ଆଜ୍ଞା ! ( ଦୁହେଁ ଚା' କପ୍ ଉଠାଇଲେ )

ଡାକ୍ତର : କଣ ସେତେବେଳେ ଆସିଥିଲେ ?

କମ୍ପାଉଣ୍ଡର : କେତେବେଳେ ଆଜ୍ଞା ?

ଡାକ୍ତର : ଏଇ ଚା' ଆସିବା ପୂର୍ବରୁ ?

କମ୍ପାଉଣ୍ଡର : ଭୁଲିଗଲଣି !

ଡାକ୍ତର : ଏଇ କରୁଣା କ୍ଷୀରରେ ତିଆରି ଚା'ର ବାସ୍ନାରେ ବୋଧହୁଏ ଭୁଲିଗଲେ !

କମ୍ପାଉଣ୍ଡର : ଚା'ଟା ଖୁବ୍ ଚମତ୍କାର ହୋଇନି ସାର୍ ? ଖାଣ୍ଟି ଗୋ-ଦୁଗ୍ଧ । ଟୋପେ ବି ପାଣି ମିଶିନି ।

ଡାକ୍ତର : ମତେ ଆଗେ କୁହନ୍ତୁ ତ...

କମ୍ପାଉଣ୍ଡର : କଣ ଆଜ୍ଞା ?

ଡାକ୍ତର : ଏଇଟା କଣ ରୋଗୀ ଘର ?

କମ୍ପାଉଣ୍ଡର : ସାର୍ !

ଡାକ୍ତର : ମୁଁ ପଚାରୁଛି, ଏଇଟା କଣ ରୋଗୀ ଘର ?

କମ୍ପାଉଣ୍ଡର : ଆ...ଜ୍ଞା ?

ଡାକ୍ତର : ମୋ ପ୍ରଶ୍ନଟା କଣ ବୁଝିପାରୁନାହାନ୍ତି ?

କମ୍ପାଉଣ୍ଡର : ବୁଝୁଚି ସାର୍ !

ଡାକ୍ତର : ବୁଝୁଚନ୍ତି ଯଦି କିଛି କହୁନାହାନ୍ତି କାହିଁକି ? ମୋ କଥାର ଉତ୍ତର ଦିଅନ୍ତୁ ।

କମ୍ପାଉଣ୍ଡର : ଆଜ୍ଞା, ଏ ଦୁନିଆରେ ସବୁ ଘର ହେଉଚି ରୋଗୀ ଘର । ଏମିତି ଭଲା କିଏ କୋଉଠି ଘର କରିଚି ଯୋଉଠି ରୋଗ ନାହିଁ ?

ଡାକ୍ତର : ଆପଣଙ୍କର ଏ ଦାର୍ଶନିକ ତଥ୍ୟ ଥାଉ—ଆପଣ ମତେ ସିଧାସଳଖ ଉତ୍ତର ଦିଅନ୍ତୁ । ଛ' ସାତ ମାଇଲ ଅଙ୍କାବଙ୍କା ବାଲି କାଦୁଅ ରାସ୍ତାରେ ସାଇକଲ୍ ଠେଲି ମୁଁ ଏଠିକି ଆସିଚି କାହିଁକି ?

କମ୍ପାଉଣ୍ଡର : ଲତାକୁ ଦେଖିବାକୁ ।

ଡାକ୍ତର : ଲତା ?

କମ୍ପାଉଣ୍ଡର : ପରଶୁରାମବାବୁଙ୍କ ଝିଅ ।

ଡାକ୍ତର : ବେଶ୍... କିନ୍ତୁ ଲତା କାହିଁ ? ଏଠି ଏ କ ଫାର୍ଶ ଚ୍ୱଲିଚ ? ସା'ନ୍ତ କୁଣିଆ ଢଙ୍ଗରେ ଗୋଡ଼ ଧୋଇବାର ଉପକ୍ରମ, କୁଶଳ ସମାଚ୍ୱର—ଆଲ ଭର୍ତ୍ତି ଚ୍ୱ', ପାନ, ସିଗ୍ରେଟ୍—କାନରେ ଫୁସ୍ ଫାସ୍ କଥା !! ଏ ଘରେ ଯେ ଜଣେ ରୋଗୀ ଅଛୁ ଯାହାଙ୍କୁ ଦେଖିବାପାଇଁ ଏତେ ପରିଶ୍ରମ କରି ଜଣେ ଡାକ୍ତର ଆସିଚ—ତା'ର ସୂଚନା ତ କାହିଁ କିଛି ମିଳୁନ ।

କମ୍ପାଉଣ୍ଡର : ସୂଚନା...ମୁଁ ଭାବୁଥିଲ (ଭିତରକୁ ଚ୍ୱହିଁ) କଏ ? କୁନ୍ତବହାଷ୍ଣ ?

ବଣି : ନାହିଁ ଆଜ୍ଞା, ମୁଁ ବଣି ବାଲକ । ( ବଣି ଆସିଲ )

କମ୍ପାଉଣ୍ଡର : ଏ ସବୁ କଣ ?

ବଣି : ପାଣି, ସାବୁନ, ତଉଲିଆ—ହାତ ଧୋଇବେ ।

ଡାକ୍ତର : ଓ ! ହଁ ବଣି, ବାହାରେ ମୋ ସାଇକଲରୁ ମୋ ବ୍ୟାଗ୍‌ଟା ନେଇଆସ ତ ! (ବଣି ବାହାରକୁ ଗଲା) ହୁଁ ! ଅପରିଷ୍କାର ହାତରେ ରୋଗୀ ଦେଖିବା ଉଚିତ ନୁହେଁ--ଏତକ ଜ୍ଞାନ ଏମାନଙ୍କର ତାହେଲେ ଅଛି । (ହାତ ଧୋଇ) ଆପଣ ଧୋଇବେ ନାହିଁ ?

କମ୍ପାଉଣ୍ଡର : ଧୋଉଚ ।

ଡାକ୍ତର : (ଡାକିଲେ) ବଣି । (ବଣି ଆସିଲା)

ବଣି : ଆଜ୍ଞା !

ଡାକ୍ତର : ତମ ବାବୁଙ୍କ କୁହ—ଲତା ଦେଈଙ୍କି ମୁଁ ଦେଖିବ । କଣ ହେଲ, ମୋ ମୁହଁକୁ ଏମିତ ଆଁ କରି ଅନେଇଚ କାହିଁକି ? ମୋ' କଥା ଶୁଭିଲ ତ ?

ବଣି : ହଁ ଆଜ୍ଞା ! ଆପଣେ ଦେଖିବାକୁ ଆସିଚନ୍ତି ଯେତେବେଳେ...

ଡାକ୍ତର : ଯେତେବେଳେ ସେତେବେଳେ ନୁହେଁ—ମୋର ବେଳ ନାହିଁ—ମୁଁ ଏଇ ସାଥେ ସାଥେ ଦେଖିବ, ଯାଇ କୁହ ।

ବଣି : ଯାଉଚ ଆଜ୍ଞା ! (ଭିତରକୁ ଯାଉଥିଲା)

ଡାକ୍ତର : ଆରେ, ବ୍ୟାଗ୍‌ଟା ଆଣିଲ ନାହିଁ ?

ବଣି : ବେଗ୍ ତ ନାହିଁ ଆଜ୍ଞା !

ଡାକ୍ତର : ନାହିଁ ?

ବଣି : ନାହିଁ । ସାଇକଲ୍ ଦ'ଟା ଥୁଆ ହେଇଚ—ବେଗ୍ ନାହିଁ ।

ଡାକ୍ତର : କି ଆଶ୍ଚର୍ଯ୍ୟ କଥା ? ବ୍ୟାଗ୍ ତେବେ କଣ ହେଲା ?

ବଣି : ମୁଁ ଯାଉଚ ଆଜ୍ଞା...ବାବୁଙ୍କୁ ଖବର ଦେବ । (ଚ୍ୱଲିଗଲା)

ଡାକ୍ତର : କମ୍ପାଉଣ୍ଡରବାବୁ !

କମ୍ପାଉଣ୍ଡର : ଆଜ୍ଞା !

ଡାକ୍ତର : ବ୍ୟାଗ୍‌ଟା କଣ ସାଇକେଲରୁ ଖୋଲି କିଏ ନେଇଗଲା ? କିଛି ବୁଝିହେଉନି ।
( କମ୍ପାଉଣ୍ଡର ନିକଟରେ ) କମ୍ପାଉଣ୍ଡରବାବୁ !

କମ୍ପାଉଣ୍ଡର : ମୁଁ ଭାବୁଥିଲି ସାର୍...

ଡାକ୍ତର : ବ୍ୟାଗ୍ ତ ନାହିଁ—ଆଉ ଭାବୁଚନ୍ତି କଣ ?

କମ୍ପାଉଣ୍ଡର : ମୁଁ ଭାବୁଥିଲି—ବ୍ୟାଗ୍ ଆଦୌ ଆସିନି ।

ଡାକ୍ତର : ମାନେ ?

କମ୍ପାଉଣ୍ଡର : ବ୍ୟାଗ୍‌ଟା ଆମ ଘରେ ରହିଯାଇଚି ।

ଡାକ୍ତର : ଘରେ ରହିଲା କେମିତି ?

କମ୍ପାଉଣ୍ଡର : ହଁ ଆଜ୍ଞା, ଘରେ ରହିଯାଇଚି ।

ଡାକ୍ତର : ଆପଣ ଆପଣଙ୍କ ସାଇକେଲରେ ଆଣିବେ ବୋଲି ପରା ବ୍ୟାଗ୍‌ଟା ମୋ'ଠୁ ନେଲେ ?

କମ୍ପାଉଣ୍ଡର : ନେଇଚି ସତ; କିନ୍ତୁ ଆଣିନାହିଁ—ଘରେ ଛାଡ଼ିଦେଇ ଆସିଚି ।

ଡାକ୍ତର : ମୁଁ ବୁଝି ପାରୁନି ଆପଣ କଣ କହୁଚନ୍ତି ? ଆପଣ ରୋଗୀ ଦେଖି ଆସିଲେ—
ଅଥଚ ବ୍ୟାଗ୍‌ଟା ଛାଡ଼ିଦେଇ ଆସିଲେ ? ମୋ ହାତ ଗୋଡ଼ ଆପଣ ବାନ୍ଧିଦେଲେ
କିନା ! ବ୍ୟାଗ୍‌ରେ ଔଷଧ, ଇଞ୍ଜେକ୍‌ସନ୍, ଥର୍ମୋମିଟର ତ ଥିଲା—ମୋ ଷ୍ଟେଥେସ୍-
କୋପ୍‌ଟା ବି ବ୍ୟାଗ୍‌ରେ ଥିଲା । ମୁଁ ଏବେ କରିବି କଣ ? ରୋଗୀ ଦେଖିବି କେମିତି ?

କମ୍ପାଉଣ୍ଡର : ସେଇ କଥା ମୁଁ ଭାବୁଚି ସାର୍...

ଡାକ୍ତର : କଣ ଭାବୁଚନ୍ତି ?

କମ୍ପାଉଣ୍ଡର : ବ୍ୟାଗ୍‌ଟା ଛାଡ଼ିଦେଇ ଆସିଲି କେମିତି ?

ଡାକ୍ତର : ଏଥିରେ ଆପଣଙ୍କର କିଛି ଭାବିବାର ନାହିଁ ଯେ, ସେ। ପରେ ସବୁଯାକ ଭାବନା—
ଚିନ୍ତା ମୋର । ଆପଣ ଚୁପ୍ ହୋଇ ଆରାମରେ ବସନ୍ତୁ । କାହିଁ...ବଣିବାଲିକ ଯେ
ଭିତରକୁ ଯାଇଚି—ଯାଇଚି । ଏମାନଙ୍କର ବି କାହାରି ଦେଖା ଦର୍ଶନ ନାହିଁ ।

( ଚିନ୍ତିତ ଅବସ୍ଥାରେ ବସି ରହିଲେ )

[ ପରଶୁରାମ ବାବୁଙ୍କ ଘରର ଭିତର ପ୍ରସ୍ଥ । ପରଶୁରାମ, କୁନ୍ତ, ବଣି ଓ ବୋଉଙ୍କ
ଉପସ୍ଥିତିରେ ଆଲୋଚନା ଚାଲିଛି । ]

ବୋଉ : ଶୁଣୁଚ, ବଣି କଣ କହୁଚି ?

ପରଶୁ : କ'ଣ ରେ ବଣି ?

ବଣି : କହୁଚନ୍ତି—ମୋର ଦେଲି ନାହିଁ—ଲିଡା ଦେଇକି ମୁଁ ଏଇସାତେ ଦେଖିବି । କି
ଅଲଜୁକ କଥା !

କୁଞ୍ଜ : ର ଘର ପଣ୍ଡ ତ ହେଇଗଲୁଣି ! ଦେଖିବାକୁ ଆସିଚନ୍ତି, ଦେଖିବେ—ଏଥିରେ ଅଳଜୁକ କଥା କଣ ରହିଲା ?

ବଂଶୀ : ମତେ ଜାଣିକ ଘର ଲଜମାଡ଼ିଲା ।

ପରଶୁ : ଆଗେ ତା'ହେଲେ ଖାଇବେ ନା ଲତାକୁ ଦେଖିବେ ?

କୁଞ୍ଜ : ନାହିଁ ନାହିଁ, ଅ‌ାଗେ ଖାଇପାରନ୍ତୁ—ଖାଇ ପାରିଲେ ମନଟା ତାଙ୍କର ଟିକିଏ ଭଲ ଅ‌ାଡ଼କୁ ଯିବ ।

ବୋଉ : ରୁ କଣ କହୁଚୁ ବା କୁଞ୍ଜ ! ଆଗେ ଖା'ନ୍ତୁ କ ପଛେ ଖା'ନ୍ତୁ, କ ମୋଟେ ନ ଖା'ନ୍ତୁ—ମୋ' ଝିଅ ପୁଣି ତାଙ୍କର ପସନ୍ଦ ହବନାହିଁ ? ଏମିତ କ ଡାକ୍ତର ହେଇଚନ୍ତି କ ସେ ? ଏଇ କାନରେ ଗଣ୍ଡି ପଡ଼ିଲା—ଲତାକୁ ଦେଖିଲା କ୍ଷଣି ସେ କହିବେ ମୁଁ ଏଇଠି ବାହାହେବି—ହେଲା ?

ପରଶୁ : ହଁ ହେଲା । ତା'ହେଲେ ଅ‌ାଗେ ଖାଇ ପଛରେ କନ୍ୟା ଦେଖିବେ ।

ବୋଉ : ଏ ଯାଏଁ ତ ମୁଁ ତାଙ୍କୁ ଟିକିଏ ଦେଖିପାରିଲି ନାହିଁ ?

ପରଶୁ : ଦେଖିଲବେଳ କଣ ଗ୍ଭଲିଗଲଣି ? ତେମେ ଏମିତ ଉଚ୍ଛନ୍ନ ହଉଚ କାହିଁକି ? ତେମେ ଯାଅ—ବଢ଼ାବଢ଼ି କର ।

ବୋଉ : ବଢ଼ାବଢ଼ି ସବୁ ହେଇଚି—ଖାଲି ନେଇ ପରଷିବା କଥା ।

ପରଶୁ : କିଏ ପରଷିବ—ଲତା ?

ବଂଶୀ : ନାହିଁ ନାହିଁ, ଛି ! କହୁ କୁଅ‌ାଡ଼ି ହେଇନାହିଁ, ଦେଈ କେମିତି ଯାଇ ପରଷିବେ ?

ବୋଉ : ମୁଁ ନେଇ ପରଷନ୍ତି ଯେ, ମତେ କେମିତି ମାଡ଼ି ମାଡ଼ି ପଡ଼ୁଚି ।

କୁଞ୍ଜ : କାହାର ଯିବା ଦର୍କାର ନାହିଁ—ମୁଁ ନେଇ ପରଷିବି ।

ପରଶୁ : ଠିକ୍ କଥା—ଖାଇଲବେଳେ ଆଉ କେହି ରହିଲେ ତାଙ୍କୁ ବ ମାଡ ମାଡ଼ ପଡ଼ିବ ।

କୁଞ୍ଜ : ହାତ ଧୋଇବାକୁ ପାଣି ଦେଇଚୁଟି ବଂଶୀ ?

ବଂଶୀ : ହଁ, ହେଲେ ହାତ ଧୋଇଲା ବେଳେ କଣ କହୁଥିଲେ··· ରୋଗୀ ଦେଖିବା ଅ‌ାଗରୁ ହାତ ଧୋଇ ସଫା କରିବା ଭଲ ।

ବୋଉ : ରୋଗୀ ! ମୋ ଘରେ ପୁଣି ରୋଗୀ କୁଆଡ଼ୁ ଆସିଲା ? ହଇଏ ?

ପରଶୁ : କଣ ତେମେ ସେଥିରୁ ପାଇବ ? ଡାକ୍ତର ମଣିଷ ସିଏ । ତାଙ୍କର କଥା କଥାକେ ରୋଗୀ ।···କୁଞ୍ଜ ରୁ ଯା !

କୁଞ୍ଜ : ଗଲି ମଉସା ।      (ପ୍ରସ୍ଥାନ)

[ ଡାଣ୍ଡଘରର ଦୃଶ୍ୟ । ଡାକ୍ତର ଓ କମ୍ପାଉଣ୍ଡରଙ୍କ ମଧ୍ୟରେ କଥାବାର୍ତ୍ତା ଚାଲିଛି । ]

ଡାକ୍ତର : ଏଠି କଣ କ ପାଇଁ ଚାଲିଛି ? ମୁଁ ଚୁପ୍‌ଚାପ୍ ବସି ରହିଲି—ଆପଣ ଏମିତି ଚାଲକୁ ଅନେଇ ବସି ରହିଛନ୍ତି ।

କମ୍ପାଉଣ୍ଡର : ନାହିଁ ଆଜ୍ଞା !

ଡାକ୍ତର : ଆପଣଙ୍କୁ ଦେଖି ମୁଁ ବୁଝିପାରୁଛି ଯେ ଆପଣ ବରାବର ଅନ୍ୟମନସ୍କ ହଉଛନ୍ତି । କଣ ହୋଇଛି ଆପଣଙ୍କର ? ବ୍ୟାଗ୍‌ଟା ହଜେଇ ଦେଇଛନ୍ତି ?

କମ୍ପାଉଣ୍ଡର : ନାହିଁ ଆଜ୍ଞା, ବ୍ୟାଗ୍ ହଜିବ କାହିଁକି ?

ଡାକ୍ତର : ତା'ହେଲେ ଏମିତି ଚୁପ୍‌ଚାପ୍ ବସିଛନ୍ତି କାହିଁକି ? କାହିଁକି ମତେ ଏମିତି ହଇରାଣ କରୁଛନ୍ତି ? ମୋର ସମୟର ମୂଲ୍ୟ ଅଛି ନା ନାହିଁ ? ଯାଇ ଦେଖନ୍ତୁ ତେଣେ କଣ ହେଲା । ନହେଲେ ଭିତରକୁ ଖବର ପଠାନ୍ତୁ । ଏଇ...ପୁଣି ଚାଲକୁ ଅନେଇ ବସିଲେ ?

କମ୍ପାଉଣ୍ଡର : ନାଁ ଆଜ୍ଞା, ମୁଁ ଭାବୁଥିଲି...କଏ...କୁଞ୍ଜବିହାରୀ ? ଏ ସବୁ କଣ ?

( ଜଳଖିଆ ସାମଗ୍ରୀ ନେଇ କୁଞ୍ଜ ଓ ବଣି ଆସିଲେ )

କୁଞ୍ଜ : ସାମାନ୍ୟ ଟିକେ ଜଳଯୋଗ ।

ଡାକ୍ତର : ଜଳଯୋଗ !

କମ୍ପାଉଣ୍ଡର : ହଉ, ରଖ ବାବୁ ରଖ—ଗୋଟାଏ ଥାଳ ସେଠି ଆଉ ଗୋଟାଏ ଥାଳ ଏଠି । ( ଥାଳ ରଖି ବଣି ଚାଲିଗଲା )

ଡାକ୍ତର : କମ୍ପାଉଣ୍ଡର ବାବୁ, କ'ଣ କିଛି କହୁନାହାନ୍ତି ଯେ ?

କୁଞ୍ଜ : ସିଏ ଆଉ କଣ କହିବେ ?

ଡାକ୍ତର : ତା'ହେଲେ ଆପଣ କୁହନ୍ତୁ—ଆମେ କଣ ଏଠିକି ଆସିଚୁ ଖାଲି ଏମିତି ଗୁ' ଜଳଖିଆ ଖାଇବା ପାଇଁ ?

କୁଞ୍ଜ : ନାହିଁ ଆଜ୍ଞା...ଏ କଥା କଏ କହିଲା ? ଅସଲ ଗୁରୁତର କାମ ଆପଣଙ୍କ ମୁଣ୍ଡ ଉପରେ ।

ଡାକ୍ତର : ତା'ହେଲେ ଏ ସବୁ କଣ ହଉଛି ? ( ପାଣି ନେଇ ବଣି ଆସିଲା )

କୁଞ୍ଜ : କିଛି ନାହିଁ ଆଜ୍ଞା...ଏ ଗୋଟାଏ ବାଧ୍ୟ । ପିଇବା ପାଣି ଦେଲୁ ବଣି !

ବଣି : ଦେଲି ଆଜ୍ଞା ।

କୁଞ୍ଜ : ହଉ, ଚ ଆ । ( ଦୁହେଁ ଚାଲିଗଲେ )

ଡାକ୍ତର : ଆରେ ଆପଣ ଚାଲି ଯାଉଛନ୍ତି ଯେ ? କୁଞ୍ଜବାବୁ ? କି ଆଶ୍ଚର୍ଯ୍ୟ ? କମ୍ପାଉଣ୍ଡରବାବୁ ?

କମାଣ୍ଡର : ଆଜ୍ଞା !

ଡାକ୍ତର : ମୋର ଅନୁମାନ ତା'ହେଲେ ଠିକ୍ ?

କମାଣ୍ଡର : କୋଉ କଥା ?

ଡାକ୍ତର : ଏ ଘରେ କେହି ରୋଗୀ ନାହାନ୍ତି ।

କମାଣ୍ଡର : ନାହାନ୍ତି ବୋଲି କିଏ କହିଲା ?

ଡାକ୍ତର : ଲତାର କେଶ୍ ତେବେ ପ୍ରକୃତରେ ସିରିୟସ୍ ନୁହେଁ ?

କମାଣ୍ଡର : ସି-ରି-ୟ-ସ— (ଡାକ୍ତରଙ୍କ ଆଡ଼କୁ କରୁଣଦୃଷ୍ଟିରେ ଚାହିଁ କନେ ଖାଇ ବସିଲେ )

ଡାକ୍ତର : ଆପଣ ଦୟାକରି ରୋଗୀକୁ ଡାକନ୍ତୁ—ମୁଁ ଦେଖେ । ଓ, ଆପଣ ଖାଇବା ଆରମ୍ଭ କରିଦେଲେଣି ! ଅଚ୍ଛା ।

(ଭିତର ପ୍ରସ୍ଥ । ଉପସ୍ଥିତ ବୋଉ, କୁଞ୍ଜ ଓ ବଣି । ପରଶୁ ଆସିଲେ ।)

ବୋଉ : କୁଞ୍ଜ କହୁଚ ସିଏ ଏମିତ ଚଢ଼ଚଢ଼ ହଉଚନ୍ତି କାହିଁକି ?

କୁଞ୍ଜ : ଠିକ୍ ଚଢ଼ଚଢ଼ ନୁହେଁ ମ—ସିଏ ଗୋଟାଏ ବାହାନା । ଯିଏ କନ୍ୟା ଦେଖି ଆସନ୍ତି ସିଏ ଏମିତ ଟିକେ ଗୋଡ଼ ଲମ୍ବାନ୍ତି···ନାହିଁ ମଉସା ?

ପରଶୁ : ହଁ, ଏଥର ଲତାକୁ ସେଠିକି ନେବା କଥା । କିଏ ନେବ ? କୁଞ୍ଜ ତୁ ?

କୁଞ୍ଜ : ନାହିଁ ନାହିଁ ମଉସା, ମୁଁ ସବୁ କଲି—ଏ କାମଟି ମୋ' ଦେଇ ହୋଇପାରିବ ନାହିଁ !

ବୋଉ : ମୁଁ ବ ତ ଲତାକୁ ତାଙ୍କ ପାଖକୁ ନେଇଯିବା ଠିକ୍ ହବନାହିଁ ।

କୁଞ୍ଜ : ନା ।

ବୋଉ : ସେ ପୁଣି କୁଆଡ଼େ ଚଢ଼ଚଢ଼ ହଉଚନ୍ତି । ମୁଁ ଏ ପାଖେ କବାଟ ଉତାଳରେ ଥାଇ ଦେଖିବି ।

ପରଶୁ : ତା'ହେଲେ ମୁଁ ?

କୁଞ୍ଜ : ହଁ ମଉସା, ତମ ସାଙ୍ଗରେ ଲତା ଗଲେ ଠିକ୍ ହବ ।

ପରଶୁ : ଲତା ଲୁଗାପଟା ପିନ୍ଧିଲାଣି ?

ବୋଉ : ହଁ ।

ପରଶୁ : ହଉ ଯାଅ, ତାକୁ ଏଠିକି ଆଣ । ( ବୋଉ ଗଲେ ଓ ଶାଢ଼ି ଗହଣାରେ ଯଥାସମ୍ଭବ ସୁସଜ୍ଜିତା ଲତାକୁ ନେଇ ଆସିଲେ । )

କୁଞ୍ଜ : ଏ କଣ ମାଉସୀ, ତାକୁ ଗୋଟାଏ ସିଲକ୍ ଶାଢ଼ି ଦେଲନାହିଁ ?

ବୋଉ : ମନାକଲା ପରା !

ବର୍ଗୀ : ଯୋଉ ଶାଢ଼ି ପିନ୍ଧିଲେ ବି ଦେଖ ଆମର ପଣ୍ଟମେଣ୍ଟ୍ରେ ସୁନ୍ଦର—ତାଙ୍କୁ ପୁଣି ବାଛୁବ କଏ ?

ପରଶୁ : ହଉ ଆ' ମା'—ଅ' । ( ଲତାର କଲୁ କୁଣ୍ଠିତ ଭାବ )

ଲୁଞ୍ଜ : ଏ' କଣ···ଆଜକାଲ ଯୁଗରେ ଏ ସବୁ ଡଙ୍ଗ କଣ ଆଉ ଅଛି ? ଥଙ୍ଗ ଥଙ୍ଗ ହଉଚୁ କାହିଁକି ? ମଉସାଙ୍କ ସାଥିରେ ସିଧା ଚାଲିଯା । ମଫସଲ୍ ଝିଅ ହେଲେ ବି ରୁ ମାଟି କୁ ପାଣ୍ କରେ ।

ବୋଉ : ନାହିଁ, ନାହିଁ, ମାଟି କୁ ପାଣ୍ କରେଚ ବୋଲି କଣ ଠେଙ୍ଗ୍ ଠେଙ୍ଗ୍ ଚାଲିଯିବ ? ନା···ମୁଣ୍ଡଟା ଟିକିଏ ନୁଆଁଇ କରି ଯା—ସେଠି ତାଙ୍କ ଆଗରେ ସେମିତ ମୁଣ୍ଡ-ନୁଆଁଇ ବସିବୁ ।

ପରଶୁ : ଆ' ମା—ଆ' । ( ପରଶୁରାମ ଓ ଲତା ଦୁହେଁ ଗଲେ )

ବୋଉ : ହେ' ମା ମଙ୍ଗଳା !

× × ×

[ ଡାକ୍ତରଖାନା । ଡାକ୍ତର ଓ କମ୍ପାଉଣ୍ଡରଙ୍କ ଖିଆପିଆ ଶେଷହୋଇଚି । ]

ଡାକ୍ତର : କମ୍ପାଉଣ୍ଡରବାବୁ ···

କମ୍ପାଉଣ୍ଡର : ନାହିଁ ଆଜ୍ଞା, ମୁଁ ଆଉ କିଛି ଖାଉନାହିଁ ।

ଡାକ୍ତର : ଆଉ ଦର୍କାର କ'ଣ ? ସେ କାମଟା ତ ମୋ' ଉପରେ ଛାଡ଼ିଦେଇ ଆପଣ କମ୍ପାନ୍ରେ ଖାଇପିଇ ବସି ସିଗ୍ରେଟ୍ ଟାଣୁଚନ୍ତି ।

କମ୍ପାଉଣ୍ଡର : ନାହିଁ ଆଜ୍ଞା···ଆରେ ପରଶୁରାମ ବାବୁ, ଆସନ୍ତୁ ! (ପରଶୁ ଓ ଲତା ଆସିଲେ)

ପରଶୁ : ବସ ମା'···ବସ ।

ଡାକ୍ତର : କଣ ହେଇଚି ? ଚାଲିପାରୁନାହାନ୍ତି···ଆପଣ ତାଙ୍କୁ ଧରି ଧରି ଆଣୁଚନ୍ତି···

କମ୍ପାଉଣ୍ଡର : ବସ ମା' ଲତା···ଏଇ ଚୌକିରେ ବସ । ସଙ୍କୋଚ କରୁଚ କାହିଁକି ? ବସ । (ଲତା ବସିଲା) ହଁ, ଆରେ ପରଶୁରାମବାବୁ ! ଚାଲିଯାଉଚନ୍ତି ଯେ ?

ପରଶୁ : ଆପଣ ତ ଅଛନ୍ତି···ମୁଁ ଆସୁଚି । (ପ୍ରସ୍ଥାନ)

ଡାକ୍ତର : କଣ ହେଇଚି ତମର ? ମୁଣ୍ଡ ତଳକୁ କରି ବସିଚ କାହିଁକି ? ସିଧା ହେଇ ବସ । ···କଣ ଭାରି କଷ୍ଟ ହେଉଚି ? ମୁଣ୍ଡ ସିଧା କରି ବସି ପାରୁନ ? ମୁଣ୍ଡ ଭାରି ଭାରି ଲାଗୁଚି ?···ବେକଷଣ୍ଡାରେ ଯନ୍ତ୍ରଣା ହେଉଚି···କୁହ । କିଛି ନ କହିଲେ ମୁଁ ତମ ମନ ଭିତର କଥା ଜାଣିବି କେମିତି ? କୁହ ।···କି ମୁସ୍କିଲ ! କମ୍ପାଉଣ୍ଡରବାବୁ ! ଇଏତ କିଛି କହୁନାହାନ୍ତି ।···କମ୍ପାଉଣ୍ଡରବାବୁ !···କଣ ? ଆପଣ ବି ବୋକା ପାଲଟିଗଲେଣି ।···ଶୁଣ ଲତା ! ଏଠି ତ ଆଉ କେହି ନାହାନ୍ତି—ମୁଁ ଅଛି,

ତମ କମାଣ୍ଡରଙ୍କ ମଣ୍ଟେସା ଅଛନ୍ତି । ଲଜ୍ଜା ସଙ୍କୋଚ ନକରି—କିଛି ନ ଲୁଚାଇ—ତମର ସବୁ କଥା ମତେ ପରିଷ୍କାର ଖୋଲି କୁହ···କୁହ ।

( ଲତା କିଛି କହୁନଥାଏ । ଡାକ୍ତର ହତାଶ ହୋଇପଡ଼ିଲେ । )

ଡାକ୍ତର : କମାଣ୍ଡରବାବୁ !

କମାଣ୍ଡର : ସାର୍ !

ଡାକ୍ତର : ସିଏ ଚୁପ୍—ଆପଣ ଚୁପ୍—ମୁଁ କ'ଣ କରିବ ମତେ ଦୟାକରି କିଛି ବୁଝାଇ ବତାନ୍ତୁ ।

କମାଣ୍ଡର : ଆପଣ ତ ତାକୁ ଦେଖୁଚନ୍ତି !

ଡାକ୍ତର : ମୁଁ ତ, ମୁଁ ସ୍ୱୟଂ ଅଶ୍ୱିନୀକୁମାର ହେଲେ ଭଲ ଏମିତ ଦେଖି ଦେଖି କିଛି ଜାଣି ପାରିବେ ? ଆଚ୍ଛା, ଆପଣ ଏ କେଶ୍‌ର ହିଷ୍ଟ୍ରି କିଛି ଜାଣନ୍ତି ?

କମାଣ୍ଡର : ନା ସାର୍ !

ଡାକ୍ତର : କିଛି ଜାଣନ୍ତି ନାହିଁ ?

କମାଣ୍ଡର : ମୁଁ ଖାଲି ଏତିକି ଜାଣେ ଯେ ବଜପୁର ପରଶୁରାମବାବୁଙ୍କ ଝିଅ ଲତା—ମାଟ୍ରିକ୍ ପାଶ୍ କରିଚ—ଯେମିତ ସୁନ୍ଦରୀ ସେମିତ ବୁଦ୍ଧିମତୀ—ରନ୍ଧାବଢ଼ା ଘରକାମ ସବୁଥିରେ ଧୂରନ୍ଧର—ଏମିତ ଆଉ କେତେଟା କଥା ଛଡ଼ା ଆଉ କିଛି ମୁଁ ଜାଣେନା ।

ଡାକ୍ତର : କିନ୍ତୁ···କିନ୍ତୁ ଏଥିରୁ ତାଙ୍କର କି ବେମାରି ହୋଇଚ ମୁଁ ବୁଝିବି କିପରି ? କି ବିପଦରେ ଯେ ଆଣି ଆପଣ ମତେ ପକେଇଲେ ? ବୁଝିଲ ଲତା—ମୁଁ ତମକୁ ସ୍ପଷ୍ଟ କହି ଦଉଚ—ତମେ ରୋଗୀ—ମୁଁ ଡାକ୍ତର । ( ଲତା ଉଠି ଠିଆହେଲା ) କଣ ହେଲା ? ଉଠୁଚ କୁଆଡ଼େ ? ବସ । (ଜୋର୍‌ରେ) ବସ କହୁଚ । (ଲତା ପୁଣି ବସିଲା) ଦେଖି ତମ ହାତଟା—ନାଡ଼ି ଦେଖେଁ । ହାତ ଲୁଚାଅ ନାହିଁ—ବାହାରକର କହୁଚ ।

× × ×

[ ଭିତର ପ୍ରଷ୍ଠ । ଝରକା ଫାଙ୍କରେ ବୋଉ, କୁଞ୍ଜ ଓ ପରଶୁ ବାଣ୍ଡ ଘରର ଦୃଶ୍ୟ ଦେଖୁଚନ୍ତି । ]

ବୋଉ : ଏଇଲେ ମା' ! ଲତାର ହାତକୁ କଣ ସେ ଧରଲେଣି !

କୁଞ୍ଜ : ମୁଦ ପିନ୍ଧେଇବେ କି କଣ !

ପରଶୁ : ଲତା ତା' ହାତକୁ ଝିଙ୍କିନଉଚ ।

କୁଞ୍ଜ : ସିଏ ପୁଣି ଟାଣିଆଣୁଚନ୍ତି ।

ଘରଣୁ : ଲତା ପୁଣି ହିଁ ଙ୍କି ନଦ୍ଧଚ...
କୃଷ୍ଣ : ସିଏ ପୁଣି ଟାଣ ଆଣୁଚନ୍ତ...
ବୋଉ : ଦ୍ଧଇଏ, ସିଏ କଣ ବୁଢ଼ାଟାଏ...
ଘରଣୁ : ବୁଢ଼ା କଣ ? କ ବୁଢ଼ା ?
ବୋଉ : ତାକୁ ସ୍ୱକଶି କ ପଇଁସ୍ୱକଣ ବର୍ଷ ହେବ ।
କୃଷ୍ଣ : ଡାକ୍ତର ମଣିଷ—ବୟସ ହେଲେ କଣ ହେଲା ?
ଘରଣୁ : ତମେ ତ ଖାସ୍ ମୋ ସାଙ୍ଗରେ ଲଗେଇଲ—ଡାକ୍ତର ଜ୍ୱାଇଁ କରବ ।
ବୋଉ : ସ୍ୱା ବୋଲି ପଇଁସ୍ୱଲଣ ବର୍ଷର ବୁଢ଼ା—ବାଳ ପାଚ ଆସିଲଣି...
କୃଷ୍ଣ : ସ୍ୱଲଣ ପଇଁସ୍ୱଲଣରେ କେହ୍ ବୁଢ଼ା ହ'ନ୍ତ ନାହିଁ—ସେ ପୁଣି ଡାକ୍ତର ।
ବୋଉ : ଦେଇଥ...ସିଏ କଣ ଲତାର ନାଡ଼ୀ ଦେଖିଲଣି ?
କୃଷ୍ଣ : ହ ତ, ନାଡ଼ୀ ଦେଖୁଚନ୍ତ ।
ଘରଣୁ : ଲତା ଗ୍ରଞ୍ଚିପିଞ୍ଚି ହଉଚ ।
କୃଷ୍ଣ : ଆଖି ପତା, ଜଭ, ନାକପୁଡ଼ା...ସବୁ ଦେଖିଲେଣି ।
ବୋଉ : ଏଡ଼େ ଦେଖିଲବାଲା ସିଏ ? ମୋ ଝିଅକୁ କଣ ରୋଗ ବେମାର ହୋଇଚ । ଡାକ୍-ଡାକ୍ ସେ କମ୍ପାଉଣ୍ଡରକୁ । କୁଆଡ଼ୁ ଗୋଟାଏ କାହାକୁ ଆଣି ଜୁଟାଇ ଦେଲ—ଡାକ୍ତର ବୋଲି ମୋ' ଝିଅକୁ ସେ ରୋଗୀ କର ଗ୍ରଡ଼ବ ? ମୋ ଝିଅର କ ବେମାର ହେଇଚ ବୋଲି ସିଏ ତା' ନାଡ଼ୀ ଦେଖିଲା ? ସାଇ ଭଇରେ ଏ କଥା ଜାଣିଲେ—
କୃଷ୍ଣ : ହେଇଥ, ଲତା କାନ୍ଦ କାନ୍ଦ ଉଠିଆସିଲଣି । ( ଲତା ଆସିଲା । ସେ କାନ୍ଦୁଚ )
ବୋଉ : ମୋ ମା'ଟା...ମୋ ମା'ଲୋ ! ( ଝିଅକୁ କୁଣ୍ଢାଇଧର କାନ୍ଦବାକୁ ଲଗିଲେ )

× × ×

[ ଦାଣ୍ଡଘର । ଉପସ୍ଥିତ ଡାକ୍ତର ଓ ବଣି ]

ଡାକ୍ତର : ବଣି !
ବଣି : ଆଜ୍ଞା !
ଡାକ୍ତର : ଗିଲାସେ ପାଣି ମତେ ଦେଇପାରବ ?
ବଣି : ଦେଲ ଆଜ୍ଞା...ନଅନ୍ତୁ । ( ପାଣି ଦେଲ )
ଡାକ୍ତର : ( ପାଣି ପିଇ) କୁଆଡ଼େ ସବୁ ଗଲେ ଏମାନେ ? ବହେ କନ୍ଦାକଟା ପାଟିତୁଣ୍ଡ ପରେ ସବୁ ଶୁନଶାନ୍ । ମୁଁ ଏଠି ଏକା ବସିରହିଚ । ଘରଣୁରାମବାବୁ କଣ କରୁଚନ୍ତ ?
ବଣି : ତାଙ୍କ ପେଟ ଟାଣୁଚ ବୋଲି କହିଲେ ।
ଡାକ୍ତର : କୃଷ୍ଣବାବୁ ?
ବଣି : ତାଙ୍କ ମୁଣ୍ଡ ବନ୍ଧୁଚ ।

ଡାକ୍ତର : ମା ?

ବଶୀ : ତାଙ୍କ ବାନ୍ତମୂଳ ଧକ ଧକ ହଉଚ ।

ଡାକ୍ତର : ଲତା ?

ବଶୀ : ଶୋଇଚନ୍ତି ।

ଡାକ୍ତର : କମ୍ପାଉଣ୍ଡରବାବୁ ?

ବଶି : ଗାଲ୍‌ରେ ହାତଦେଇ ଆଁ କରି ଅନେଇଁବସି କଣ ଭାବୁଚନ୍ତି ।

ଡାକ୍ତର : ମୋ' ପାଖକୁ ଆସିବାକୁ କେହି ରାଜି ନୁହନ୍ତି ?

ବଶୀ : ନାଇଁ ଆଜ୍ଞା—କେହି ଆସିବେ ନାଇଁ ।

ଡାକ୍ତର : ବେଶ୍, ତେବେ ଚାଲ ମୁଁ ଯିବି ।

ବଶୀ : ଆପଣ ଖଞ୍ଜା ଭିତରକୁ ଯିବେ ?

ଡାକ୍ତର : ହଁ ଯିବି । ତମେ ଯାଇ ସେମାନଙ୍କୁ ଆଉଥରେ କୁହ । ସେମାନେ ନ ଆସିଲେ ମୁଁ ବାଧହୋଇ ଖଞ୍ଜା ଭିତରକୁ ଯିବି ।

ବଶୀ : ହଁ ଆଜ୍ଞା ।

[ ବଶୀ ଭିତରକୁ ଗଲା । କିଛିକ୍ଷଣ ପରେ ପରଶୁ, କୁଞ୍ଜ, କମ୍ପାଉଣ୍ଡର ଓ ବୋଉ ଆସିଲେ । ସମସ୍ତେ ଯେମିତି ଲାଜ ପଡ଼ିଚନ୍ତି । ]

ଡାକ୍ତର : ଦେଖନ୍ତୁ—ରୋଗ ବାହାନା କରି ଆପଣମାନେ ଏମିତି ଲୁଚି ଛପି ରହିଲେ ଚଳିବ ନାହିଁ । ଏ ଘଟଣାର ଗୋଟାଏ ସମାଧାନ ଦରକାର ।

ପରଶୁ : କଣ—ଆଉ କ ସମାଧାନ କରିବେ ?

ଡାକ୍ତର : କମ୍ପାଉଣ୍ଡର ଆପଣମାନଙ୍କୁ ମୋ କଥା କଣ କହିଥିଲେ ?

କୁଞ୍ଜ : କହିଥିଲେ—ଡାକ୍ତରବାବୁ ଅବିବାହିତ—ଏଠି ବାହାହେବାକୁ ତାଙ୍କର ଇଚ୍ଛା । ସେ କନ୍ୟା ଦେଖି ଆସିବେ ।

ଡାକ୍ତର : ଏ କଥା କଣ ସତ୍ୟ କମ୍ପାଉଣ୍ଡର ବାବୁ ?

କମ୍ପାଉଣ୍ଡର : ସତ । ଘର ସଜାଡ଼ି ନକରି ଆପଣ ଯୋଉ ହଇରାଣ ହଉଚନ୍ତି ସେଥିପାଇଁ ଭାବିଲି ଏମିତି ଗୋଟାଏ ଫାନ୍ଦ ପାତିଲେ ଯଦି ସୁଫଳ ଫଳେ !

ଡାକ୍ତର : ଅଥଚ ମତେ କହିଚନ୍ତି ଯେ, ବଙ୍ଗଳୁରରୁ କଲ୍ ଆସିଚ—ପରଶୁରାମ ବାବୁଙ୍କ ଝିଅ ଲତାକୁ ଦେଖିବାକୁ ଯିବାକୁ ହେବ ।

କୁଞ୍ଜ : ଏ କଥା ସତ କମ୍ପାଉଣ୍ଡର ବାବୁ ?

କମ୍ପାଉଣ୍ଡର : ସତ । ଡାକ୍ତରବାବୁଙ୍କ ମୁଁ ଜାଣେ—ସେଥିପାଇଁ କନ୍ୟା ଦେଖିବା କଥାଟା ନ କହି ଖାଲି ଲତାକୁ ଦେଖିଯିବା କଥାଟା କହିଥିଲି । ଏଇ ଦେଖିଯିବାଟା ଦୁଇ ଅର୍ଥକୁ ବୁଝାଏ ।

ଡାକ୍ତର : ସେଥିପାଇଁ ଜାଣିଶୁଣି ବ୍ୟାଗ୍‌ଟା ଛାଡ଼ିଆସିଲେ ?

କମ୍ପାଉଣ୍ଡର : ବ୍ୟାଗ୍ ଆଣିଥିଲେ ଲାଭ କଣ ହୋଇଥାନ୍ତା ? ଏଠି ତ ରୋଗୀ କେହି ନାହାନ୍ତି !

ଡାକ୍ତର : ମା' କଣ କହୁଚନ୍ତି ?

ବୋଉ : ମୁଁ ଆଉ କଣ କହିବି ପୁଅ···ଡାକ୍ତର କ୍ୱାଇଁ କରିବ ବୋଲି ଲୋଭ କରିଥିଲି···

ଡାକ୍ତର : ଅଥଚ କନ୍ୟା ଦେଖି ଆସିଲା ମୋ ପରି ଜଣେ ବନ୍ଧୁସ୍ଥ ଡାକ୍ତର ।

ବୋଉ : ନାଇଁ ପୁଅ—ଦସ୍ତୁର କଥା ନୁହେଁ । ତମର ଏମିତି ଆଉ କ ବସ୍ତୁର ହେଉଚ କି ? ବାହାଘରର । ନହେଲେ ସାଇ-ଭାଇରେ ଆମେ ଲୋକହସା ହେଇଯିବୁ ।

ଡାକ୍ତର : କିନ୍ତୁ ମୋର ଏ ବସ୍ତୁରରେ ବାହାହେଲେ ମୁଁ ଯେ ଲୋକହସା ହେବ !

କମ୍ପାଉଣ୍ଡର : ସେ ଦସ୍ତୁର ଅପଣ କରନ୍ତୁ । ଗୋଟାଏ ଝିଅ ଲୋକହସା ହବା ଆଉ ଆପଣ ଲୋକହସା ହବା···

ଡାକ୍ତର : ଅଚ୍ଛା, ଲତାକୁ ଡାକନ୍ତୁ । ( ବୋଉ ଯାଇ ଯାଇ ଯାଇ ଲତାକୁ ଆଣି ଆସିଲେ )

ଡାକ୍ତର : ହାତଟା ଦେଖି ।

କମ୍ପାଉଣ୍ଡର : କଣ ପୁଣି ନାଡ଼ୀ ଦେଖିବେ ?

ଡାକ୍ତର : ନାଇଁ, ମୁଦ ପିନ୍ଧେଇବ ।

କୁଞ୍ଜ : ( ଖୁବ୍ ଖୁସିରେ ) କଣ ମୁଁ ସେତେବେଳେ କହୁଥିଲି···ମୁଦ ନିଶ୍ଚେ ପିନ୍ଧେଇବେ ।

ଡାକ୍ତର : ଏଇଟା ମୋ ବୋଉ ମୁଦ ହାତର । (ନିଜ ଆଙ୍ଗୁଳିରୁ ମୁଦ ବାହାର କରି ଲତାକୁ ପିନ୍ଧାଇଲେ )···ଅଚ୍ଛା, ମୁଁ ତ କନ୍ୟା ଦେଖିଲି—ପସନ୍ଦ କଲି—ଆପଣମାନେ ବରକୁ ଦେଖିବେ ନାହିଁ ?

ପରଶୁ : ବର··ବର ପୁଣି ଅଛି କଏ ?

ଡାକ୍ତର : ଏଇ, ଦେଖନ୍ତୁ । (ପକେଟ୍‌ରୁ ଗୋଟିଏ ଲଫାପା କାଢ଼ି ତା'ଭିତରୁ ଗୋଟିଏ ଫଟୋ ବାହାରକଲେ )

କୁଞ୍ଜ : କାହାର ଏ ଫଟୋ ? ଏକାବେଳକେ ରାଜପୁତ୍ର ଭଳି ଦେଖାହେଉ !

ଡାକ୍ତର : ମୋ' ସାନଭାଇ···ସେ' ବି ଡାକ୍ତର । ଏମ୍. ବି. ବି. ଏସ୍. ପାଶ୍ କରି ପାଟନାରେ ଏମ୍. ଡି. କରୁଚି ।

କମ୍ପାଉଣ୍ଡର : ସାର୍—ସାର୍—ଆପଣ ସାର୍ ମଜେ କହୁଥିଲେ ସେ ଆପଣଙ୍କ ସାନଭାଇ ଆପଣଙ୍କଠୁଁ ଭିନ୍ନେ ହୋଇଗଲେ ବୋଲି ଆପଣ ଆପଣଙ୍କର ସବୁ ପୈତୃକ ସମ୍ପତ୍ତି ତାଙ୍କୁ ଦେଇ, ନିଜେ ସରକାରୀ ଚାକିରି ଛାଡ଼ି ଏଠି ହରିପୁରରେ ଆସି ଡାକ୍ତରଖାନା ଖୋଲିଲେ !

ଡାକ୍ତର : ଜୀବନରେ ମୁଁ ବିବାହ କରିବି ନାହିଁ ବୋଲି ଠିକ୍ କରିବାରୁ ସେ ମୋ' ଉପରେ ଅଭିମାନ କରି ମୋ'ଠୁଁ ଦୂରେଇ ଯାଇଥିଲା । ତା'ପରେ ନିଜେ ତା' ଭୁଲ ବୁଝି ପାରି ମୋ ପାଖକୁ ପୁଣି ଫେରିଆସିଛି । ଆଜି ଡାକରେ ତା' ଚିଠି—ଏ ଫଟୋ ସବୁ ପାଇଲି । ଏଣିକି ତା' ବିବାହ, ତା' ଭଲମନ୍ଦ, ତା' ଭବିଷ୍ୟତ ସବୁ ସେ ମୋ' ଉପରେ ଛାଡ଼ିଦେଇଛି ।

ବୋଉ : ମୋ କ୍ୱାଇଁ ତା'ହେଲେ ଡାକ୍ତର ?

ଡାକ୍ତର : ହଁ—ଆମ କମ୍ପାଉଣ୍ଡରବାବୁ ଏ ସବୁର କର୍ତ୍ତା । ମୁଁ ରୋଗୀ ଦେଖି ଆସି କନ୍ୟା ଦେଖିଲି ।

କମ୍ପାଉଣ୍ଡର : ଆଉ ମା' ଆମର ପାଇଲେ ଡାକ୍ତର କ୍ୱାଇଁ ।

□□□